# ବିଦ୍ୟାବନ୍ତେ ଶୁନ

ଚିତ୍ତରଞ୍ଜନ ଦାସ




ଭୁବନେଶ୍ୱର

# ବିଦ୍ୟାବନ୍ତେ ଶୁନ

ଲେଖକ

**ଚିତ୍ତରଞ୍ଜନ ଦାସ**

ପ୍ରକାଶକ

**ଶିକ୍ଷାସନ୍ଧାନ**

ଏ/୧୨, ହାଉସିଂ ବୋର୍ଡ଼ କଲୋନୀ, ବରମୁଣ୍ଡା,

ଭୁବନେଶ୍ୱର ୭୫୧୦୦୩, ଫୋନ୍ : ୦୬୭୪ ୨୫୫୦୬୫୬

ମୁଦ୍ରଣ :

**ଶିକ୍ଷା ପ୍ରକାଶନୀ**

୨୬୬, ରୋଡ଼ ୧, ଜଗନ୍ନାଥ ବିହାର, ବରମୁଣ୍ଡା

ଭୁବନେଶ୍ୱର ୭୫୧୦୦୩, ଫୋନ୍ : ୦୬୭୪ ୨୫୫୨୦୨୪

ପ୍ରଥମ ପ୍ରକାଶନ : ଏପ୍ରିଲ୍ ୧, ୨୦୦୬

ମୂଲ୍ୟ : ଟ.୧୦୦/- ମାତ୍ର

ଆଇ.ଏସ.ବି.ଏନ୍ : ୮୧-୮୭୯୮୨-୨୩-୩

---

**Bidyabante Suna**

*By*

**Chittaranjan Das**

*Published by*

**Sikshasandhan**

A-12, Baramunda, Housing Board Colony

Bhubaneswar 751003, Ph : 0674 2550656

*Printed at :*

**Siksha Prakasani**

266 Road 1, Jagannath Vihar, Baramunda

Bhubaneswar 751003, Ph : 0674 2552024

*First Edition*

First April, 2006

Price : Rs. 100/-only

ISBN : 81-87982-23-3

# ସୂଚୀପତ୍ର

# ଚାକିରି ଏତେ, ଚାକର କାହାନ୍ତି ?

ଆଗେ ଆମ ଦେଶରେ ଯେତେ ଚାକିରି ଥିଲା, ଏବେ ତା'ର ହୁଏତ ଶହେଗୁଣ ଅଧିକ ଚାକିରି ହେଲାଣି । ପାଠ ପଢ଼ି ଚାକିରି କରିବାକୁ ଯେଉଁଠାରେ ପାଠର ପରମପଦ ଲାଭ ବୋଲି ଧରି ନିଆଯାଏ, ସେଠାରେ ଆମ ଦେଶର ଯୋଗ୍ୟତମ ମଣିଷମାନେ ସେହି ଚାକିରି ଭିତରେ ହିଁ ଅବଶ୍ୟ ରହିବେ । ଯିଏ ଚାକିରି କରନ୍ତି, ତାଙ୍କୁ ଚାକିରିଆ ବୋଲି କୁହାଯାଏ । ଆମ ଦେଶରେ କେତେ ନୂଆ ନୂଆ ସିରସ୍ତା ଖୋଲିଲାଣି, ସେହି ଅନୁସାରେ ସେଥିପାଇଁ ଭଳି ଭଳି ପାଠ ଖଞ୍ଜା ହୋଇ ରହିଲାଣି ଏବଂ ସେହି ଅନୁସାରେ ଭଳି ଭଳି ଚାକିରିଆ ମଧ୍ୟ ବାହାରିଲେଣି । ଦେଶରେ ଦରଦାମ ବଢ଼ୁଥିବା ସଙ୍ଗେ ସଙ୍ଗେ ଏହି ଚାକିରିଆମାନଙ୍କର ଦରମା ମଧ୍ୟ ବଢ଼ିବାରେ ଲାଗିଛି । ଦେଶରେ ହୁଏତ ମୋଟ ଯେତେ ପଇସା ଖର୍ଚ୍ଚ ହେଉଛି, ତାହାର ଏକ ମୋଟା ଅଂଶ ଏହି ଚାକିରିଆମାନଙ୍କ ଦରମା ବାବଦରେ ହିଁ ଖରଚ ହେଉଛି । ହୁଏତ ଏହି ଚାକିରିଆମାନେ ରହିଛନ୍ତି ବୋଲି ଆମ ଦେଶଟା ରହିଛି, ଦେଶଟାଯାକ ବୁଦ୍ଧିରେ ଚାଲିଛି ।

ଏହି ଚାକିରିଆମାନେ ଦେଶର କାମ କରିବାକୁ ଅଛନ୍ତି, ଦେଶ ସେମାନଙ୍କୁ ସେହିସବୁ କାମ ତୁଲାଇବା ପାଇଁ ନିଯୁକ୍ତ କରି ରଖିଛି । ଦରମା ଦେଇ ରଖିଛି । ଆମେ ସେମାନଙ୍କୁ ଦରମା ଦେଇ ରଖିଛୁ । ଆମର କାମ କରିବା ଲାଗି ଆମେ ସେମାନଙ୍କୁ ରଖିଛୁ । କିନ୍ତୁ ଦେଶର ସମଗ୍ର ବ୍ୟବସ୍ଥାଟିରେ କେଉଁଠି କି ଭୂତ ପଶିଯାଇଛି କେଜାଣି, ଏହି ଚାକିରିଆମାନେ ନିଜକୁ ଆଉ ମୋଟେ ଚାକର ବୋଲି ଭାବୁନାହାନ୍ତି । ନିଜକୁ ଗୋଟାସୁଦ୍ଧା ବାବୁ ବୋଲି ହିଁ ଭାବୁଛନ୍ତି । ଯିଏ ଯେତେ ଅଧିକ ଦରମା ପାଉଛି, ଆପଣାକୁ ସିଏ ସେତେବଡ଼ ବାବୁ ବୋଲି ଭାବୁଛି । ସବାବେଶୀ ଦରମା ପାଉଥିବା ଚାକିରିଆ ନିଜକୁ ସବାବଡ଼ ବାବୁ ବୋଲି ଭାବୁଛି ତ ସବାତଳେ ରହିଥିବା ଚାକିରିଆ ମଧ୍ୟ ସେହି ଅନୁସାରେ ନିଜକୁ ସାନ ବାବୁଟିଏ ବୋଲି ଭାବୁଛି । ସାନ ବାବୁଟିଏ ବୋଲି ତା'ର ବିଷ ଓ ବାହାଦୂରୀଗୁଡ଼ାକ ଆଦୌ କୌଣସି ଗୁଣରେ କମ୍ ନୁହେଁ ।

ଯେଉଁଠା ଗଢ଼ିଥାରେ, ସିଏ ବଡ଼ ହୋଇଥାଉ କି ସାନ ହୋଇଥାଉ, ସିଏ ସତେଅବା ସେତେ ବଡ଼ ତମ୍ପସାପ ପରି ବାହାଦୂରୀ ଦେଖାଉଛି । ବାବୁ ହୋଇ ବସିଛି । ଆମ ଉପରେ ବାବୁ ହୋଇ ବସିଛି । ସତେ ଯେପରି ଆମ ପ୍ରତି ଦୟା ଦେଖାଇ ସିଏ ଆମର କାମ କରୁଛି । ସିଏ ଆମର ଚାକର ହୋଇ ରହିଛି, ଆମରି ପଇସାରୁ ଦରମା ପାଉଛି ବୋଲି ଆମେ ଦେଶବାସୀମାନେ ମଧ୍ୟ ପ୍ରାୟ ଗୋଟାସୁଦ୍ଧା ପାସୋରି ସାରିଲୁଣି ।

ଚାକର ଯେତେବେଳେ ବାବୁ ହୋଇ ବସେ, ସେତେବେଳେ ସିଏ ସତେଅବା ସତ ବାବୁମାନଙ୍କୁ ମଧ୍ୟ ବଳିଯାଏ । ଆମ ଦେଶଟାଯାକ ଏବେ ଏହି ଭଳିକି ଭଳି ମିଛ ବାବୁମାନଙ୍କ ଦ୍ୱାରା ଚାଳିଛି । ତେଣୁ ସତକୁ ସତ ମୋଟେ ଚାଲୁନାହିଁ । ଯୋଉଠି ଥିଲା, ସେଇଠି ରହିଛି । ବାବୁମାନଙ୍କର ଲୁଗାରେ ଫେର ହୋଇ ରହିଛି । ତୁମେ ଯେଉଁ କାମ କରିବାକୁ ରହିଛ, ଆଗ ସେହି କାମଟିକୁ କରିଦିଅ, ତା'ପରେ ଛଇ ଦେଖାଇ ହେଉଥାଅ, ସେଥିରେ ଆମର କିଛି କହିବାର ନାହିଁ । କିନ୍ତୁ ଆମଠାରୁ ଦଶହାତ ଉଞ୍ଚରେ ସତେଅବା ଆଉ କେଉଁ ଉଞ୍ଚ ଗହନରୁ ଆସିଥିବା ପରି ଆମର କାମ କରୁଥିବା ବାହାନାରେ ଆମକୁ ଖତେଇ ହେବାରେ ଲାଗିଥିବା ଏବଂ ତାହାକୁ ହିଁ ସଂସାରରେ ସବାବଡ଼ ବାହାଦୂରୀ ବୋଲି ମନେ କରୁଥିବା, –ସତେଅବା ତାହାହିଁ ଆମ ବାବୁମାନଙ୍କର ଧର୍ମ ହୋଇସାରିଲାଣି । ସତେଅବା ସେମାନେ ଆମର ଚାକର ନୁହନ୍ତି, ସେମାନେ ଆମର କାମ କରିବାକୁ ନାହାନ୍ତି, – ବରଂ ଆମେ ତାଙ୍କ ପଛରେ ଗୋଡ଼ାଇବାକୁ ରହିଛୁ, ତାଙ୍କର ଉଦରକୁ ଖୁସି କରିବା ପାଇଁ ରହିଛୁ, ସେମାନେ ପ୍ରାୟ ସେହିପରି ବ୍ୟବହାର କରୁଛନ୍ତି । ଦେଶଟାକୁ ଆମର ଏଠୁ ଏକାବେଳେକେ ଆଉ କେଉଁଠାକୁ ନେଇ ଚମ୍ପଟ କରିବେ ବୋଲି ସତେଅବା ପାଞ୍ଚ କରି ବସିଛନ୍ତି । ଆମ ଅପାଠୁଆଙ୍କ ଭିତରେ ପାଠୁଆ ମାନଙ୍କର ଏକ ସଇତାନସାହୀ ତିଆରି କରି ଅଲଗା ସେମାନଙ୍କର ସତର ପ୍ରକାରର ଛଇ ଦେଖାଇବେ ବୋଲି ରହିଛନ୍ତି । ସେମାନେ ଯେଉଁସବୁ କୋଠାଘରେ କାମ କରୁଛନ୍ତି, ସେଗୁଡ଼ାକ ସତେଅବା ଗୋଟାଏ ଗୋଟାଏ ସଇତାନ - ବଗିଚା ପରି ଦିଶିଲାଣି । ଦେଶଟା ସମେତ ଆମ ସମସ୍ତଙ୍କୁ ହୁରୁଡ଼ାଇ ଭୁରୁଡ଼ାଇ ବାବୁମାନେ ଆମଠାରୁ ବହୁଦୂରରେ ସତେଅବା ଗୋଟାଏ ଅଲଗା ମଞ୍ଚା ବାନ୍ଧି ଅଲଗା ବସିଥିବା ପରି ମନେ ହେଉଛି ।

ଚାକିରିଆମାନଙ୍କ ସମେତ ଆମେ ସମସ୍ତେ ଏହି ଦେଶର ସନ୍ତାନ । ଏହି ଦେଶ ଆମ ସମସ୍ତଙ୍କର । ଆମେ କେତେକେ ମଣିଷ ପଲେ ମାଙ୍କଡ଼ ପରି ଯଦି ଏହି ତୋଟାକୁ ନିଜର ତୋଟା ବୋଲି ଭାବି ଏହାକୁ ଉଜାଡ଼ି ଦେବାରେ ଲାଗିଥିବା, ତେବେ ତାହା ଏକ ଅଲଗା କଥା । ମାତ୍ର, ଆମେ ଇଚ୍ଛା କଲେ ଏହି ଦେଶକୁ ଏକ ବଗିଚା

ବୋଲି ମଧ୍ୟ ଅନୁଭବ କରିପାରିବା ଏବଂ ସେହି ବଗିଚାରେ ଜଣେ ଜଣେ ମାଳି ହୋଇ ରହିପାରିବା । ତେବେ ନିଜକୁ ଏହି ଦେଶର ଚାକର ବୋଲି କହିବାକୁ ଆମକୁ ସେତେବେଳେ ଆଉ ଆଦୌ କୌଣସି ଲାଜ ଲାଗିବ ନାହିଁ । ଆମେ ଏଠି ପରସ୍ପରର ଚାକର ହୋଇ ରହିବା ଓ ତାହାକୁ ହିଁ ପରସ୍ପର ସହିତ ଏକତ୍ର ହୋଇ ଜୀବନ ବଞ୍ଚିବାର ଏକ ଗୌରବମୟ ସନ୍ତକରୂପେ ଗ୍ରହଣ କରିପାରିବା । ତେବେ ଏହି ଦେଶ ଆମର ଆଖିକୁ ସେତେବେଳେ ଗୋଟାସୁଦ୍ଧା ଅଲଗା ଦେଖାଯିବ । ଆମେ ପରସ୍ପରର ଆଖିରେ ଏକାବେଳେକେ ଅଲଗା ହୋଇ ଦିଶିବା । ଏହି ବଗିଚାଟି ଆମକୁ ସଂପୂର୍ଣ୍ଣ ଭାବରେ ଏକାନ୍ତ ଆପଣାର ହୋଇ ଦିଶିବ । ସିଏ ଏକ ଅନ୍ୟ ଦେଶ । ତାହା ବାବୁମାନଙ୍କର ଦେଶ ନୁହେଁ; ସେଠାରେ ଉପେକ୍ଷାର କୌଣସି ଥାନ ନାହିଁ, କେବଳ ପାରସ୍ପରିକତା ନିମନ୍ତେ ଥାନ ଅଛି । ସିଏ ହେଉଛି ସତକୁ ସତ ଏକ ଆହ୍ୱାନ, ଏକ ଅନ୍ୟ ଅହ୍ୱାନ ।

ବର୍ତ୍ତମାନ ଆମର ଚତୁର୍ଦ୍ଦିଗରେ ମେଳାମେଳା ଚାକିରି ଏବଂ ସେହି ଅନୁସାରେ ମେଳାମେଳା ଚାକିରିଆ । କିନ୍ତୁ ଚାକରମାନେ ଗଲେ କୁଆଡ଼େ, ଏହି ଘରଟିକୁ ସତକୁ ସତ ନିଜର ଘର ବୋଲି ଗ୍ରହଣ କରୁଥିବା ମନୁଷ୍ୟମାନେ ଗଲେ ଗୁଆଡ଼େ ? ମାଳିମାନେ ଗଲେ କୁଆଡ଼େ ? କେବଳ ମାଳିମାନେ ହିଁ ଏଠୁ ମାଙ୍କଡ଼ମାନଙ୍କୁ ତଡ଼ିପାରିବେ, ଏଠାରେ ସତକୁ ସତ ବଗିଚାଟିଏ ସମ୍ଭବ କରିପାରିବେ । ସେତେବେଳେ ଏଠାରେ ନିଜକୁ ବାବୁ କହିବାକୁ ଭାରି ଲାଜ ମାଡ଼ିବ; ମିଛ ଦୂରତାଗୁଡ଼ାକୁ, ଉପେକ୍ଷାଗୁଡ଼ାକୁ ସବୁଠାରୁ ଅଧିକ ଡ଼ର ମାଡ଼ିବ । ଚାକର ହେବା, ସନ୍ତାନ ହେବା ସେତେବେଳେ ଏଠି ମଣିଷର ସର୍ବଶ୍ରେଷ୍ଠ ଗୌରବ ହୋଇ ରହିବ ।

୨୪/୪/୮୮

# ମଣିଷ ବନାମ ଗଛ

ଅନେକ ବିପ୍ଲବ ଖତରା ହୋଇଗଲା ପରେ ପୃଥିବୀକୁ ଏକାବେଳେକେ ଏବେ ଯେଉଁ ନୂଆ ବିପ୍ଲବଟି ଫନ୍ଦାହୋଇ ଆସିଛି, ସେହି ଅନ୍ୟତମ ବିପ୍ଲବର ବାବୁମାନେ ଗଛମାନଙ୍କ କଥା ବେଶୀ କହୁଛନ୍ତି, ମଣିଷମାନଙ୍କ କଥା ମୋଟେ କହୁ ନାହାନ୍ତି । ସେମାନଙ୍କୁ ସତେଅବା ଆଉ ମୋଟେ ମଣିଷ ଦିଶୁ ନାହାନ୍ତି, ଖାଲି ଗଛମାନେ ଦିଶୁଛନ୍ତି । ଏହି ବାବୁମାନଙ୍କର ଉତ୍ସାହ ଦେଖି ମନେ ହେଉଛି, ମଣିଷମାନଙ୍କୁ କଦାପି ଦେଖିବେ ନାହିଁ ବୋଲି ସତେଅବା ଶପଥ ଗ୍ରହଣ କରିଥିବା ସେମାନେ ଏଣିକି ସମ୍ଭବ ହେଉଥିବା ପର୍ଯ୍ୟନ୍ତ କେବଳ ଗଛମାନଙ୍କୁ ଦେଖିବେ ବୋଲି

ସ୍ଥିର କରି ନେଇଛନ୍ତି । ଗଛମାନଙ୍କ କଥା ବେଶୀ କହି ପାରୁଥିବା ନୂଆ ବିପ୍ଳବର ଏହି ସଜ୍ଜନମାନଙ୍କୁ ଏବେ ଭଳିକି ଭଳି ପୁରସ୍କାର ଏବଂ ପାରିତୋଷିକ ମଧ୍ୟ ମିଳିଲାଣି । ମଣିଷମାନଙ୍କର କଥା କହିବା ଅପେକ୍ଷା ଗଛମାନଙ୍କର କଥା କହିବା ସମ୍ଭବତଃ ଅଧିକ ନିରାପଦ ବୋଲି ବହୁ ଶୋଷଣ ଏବଂ ବହୁ ଉପେକ୍ଷା ଉପରେ ସଦର୍ପ ଛିଡ଼ାହୋଇ ରହିଥିବା ପୃଥିବୀର ପୁରୁଣା ସମାଜଟା ଏବେ ଭୟଙ୍କର ବୃକ୍ଷପ୍ରୀତି ଦେଖାଇବାକୁ ଆରମ୍ଭ କଲାଣି ।

ଏକଦା ପୁରୁଣା ସମାଜ ବଦଳି ଏକ ନୂଆ ସମାଜ ଗଢ଼ାହେବ ବୋଲି ଉପରୁ ଥାଇ ବିପ୍ଳବର ଚିନ୍ତା କରୁଥିବା ବାବୁମାନେ ଭାରି କହୁଥିଲେ । ପୃଥିବୀରୁ କ୍ଷୁଧା ଯିବ, ସୁବିଧାବାଦୀ ସ୍ୱାର୍ଥମାନଙ୍କ ଶୋଷଣର ଅବସାନ ଘଟିବ, ସବୁ ମଣିଷ ମଣିଷ ହେବା ଲାଗି ସୁଯୋଗ ପାଇବେ, ସମସ୍ତେ ମଣିଷର ସମ୍ମାନ ପାଇବେ, ଇତ୍ୟାଦି, ଇତ୍ୟାଦି । ଏହିସବୁ ସ୍ୱପ୍ନକୁ ସତରେ ପରିଣତ କରିବା ଲାଗି ବହୁ ରାଜନୀତିକ ତଥା ସାମାଜିକ ବିପ୍ଳବର ଚିନ୍ତା କରାଯାଇଥିଲା । ସେହିସବୁ ବିପ୍ଳବ କେତେ କ'ଣ ସଫଳ ହେଲା କି ନାହିଁ କେଜାଣି, ବଡ଼ମାନେ ହିସାବ କରି ହଠାତ୍ ଦେଖିବାକୁ ପାଇଲେ ଯେ, ଜଙ୍ଗଲମାନଙ୍କରୁ ଆଖିବୁଜା ଗଛ କାଟି ଦିଆଯାଉଛି, ଗଛ ଗଲେ ମାଟି ଧୋଇ ହୋଇଯିବ, ଜଳବାୟୁ ବଦଳିଯିବ, ମରୁଭୂମି ମାଡ଼ିଯିବ, ଇତ୍ୟାଦି, ଇତ୍ୟାଦି । ତା'ପରେ ସତେଅବା ଏହି ପୃଥିବୀଟାଯାକ ବିପ୍ଳବର ଭାଷା ବଦଳିଗଲା । ଆଉ ରାଜନୀତିକ ଅଥବା ସାମାଜିକ ବିପ୍ଳବ କଥା ପ୍ରାୟ କେହି କହିଲେ ନାହିଁ । ସମସ୍ତେ ତେଣିକି ଗଛମାନଙ୍କ କଥା କହିଲେ । ଯେଉଁମାନେ ରାଜନୀତିକ ଓ ସାମାଜିକ ବିପ୍ଳବର କଥା କହି ଆସୁଥିଲେ, ସେମାନଙ୍କ ଭିତରେ ସତେଅବା କେଉଁ କ୍ଳାନ୍ତି ବା ପରାଜୟବୋଧ ସେମାନଙ୍କୁ କ୍ରମେ ବୁଢ଼ା କରି ପକାଉଥିଲା କେଜାଣି, ସେମାନେ ମଧ୍ୟ ବୃକ୍ଷପ୍ରେମୀ ଉପରବାଲାଙ୍କ ଦ୍ୱାରା କିଣି ହୋଇଗଲେ ।

ଆମ ପୃଥିବୀରେ ରାଜନୀତିକ ଏବଂ ସାମାଜିକ ହୀନସ୍ତାଗୁଡ଼ିକ ଯେମିତି ଥିଲା ସେମିତି ରହିଥିବ, ଅର୍ଥନୀତିକୁ ବହୁ ମଣିଷଙ୍କର ଜୀବନଗତ ଅନର୍ଥସାଧନର ନାନା ଫିକର ରୂପେ ବ୍ୟବହାର କରାଯାଉଥିବ, ଥୋକାଏ ମଣିଷ ସବୁ କ୍ଷମତାକୁ ଆତ୍ମସାତ୍ କରି ମଣିଷର ବାଟକୁ ଓଗାଳି ଠିଆ ହୋଇଥିବେ, ତେଣେ ତୁମେ ଗଛ ଲଗାଉଥିବ, ବୃକ୍ଷର ସ୍ତୁତି କରୁଥିବ, ବୃକ୍ଷ ହିଁ ମନୁଷ୍ୟର ପରମବନ୍ଧୁ ବୋଲି ସାଧୁବାଣୀ ଶୁଣାଉଥିବ, – ସେକଥା ମୋତେ ହେବନାହିଁ । ସବୁଠାରୁ ବଡ଼ ବିଡ଼ମ୍ବନା ହେଉଛି ଯେ, ଆମର ଏହି ପୃଥିବୀକୁ ନାନାଭାବେ ଅସୁସ୍ଥ ଓ ଅସୁନ୍ଦର କରି ରଖିଥିବା ଶାସକମାନେ ଏବେ

ଗଛମାନଙ୍କର ସୁରକ୍ଷା ଲାଗି ତୁମେ ଯେତେ ମାଗିବ ସେତେ ଟଙ୍କା ଖରଚ କରିବାକୁ ବାହାରିଲେଣି । ଗଛ କଥା କହି ମନ ଭୁଲାଇ ସେମାନେ ସଂସାରର ମାନବିକ ଅନ୍ୟାୟ ଗୁଡ଼ାକୁ ଆହୁରି କେତେଦିନ ସ୍ଥାୟୀକରି ରଖିବେ ଓ ମଣିଷର ଅସଲ କ୍ରୋଧ ତଥା ଅସନ୍ତୋଷଗୁଡ଼ାକୁ ଯଥାସମ୍ଭବ ଶାନ୍ତକରି ରଖିପାରିବେ ବୋଲି ପ୍ରାୟ ଏକ ଆନ୍ତର୍ଜାତିକ ଯୋଜନା ତିଆରିକରି ସାରିଲେଣି ।

ଗଛମାନଙ୍କର ତତ୍ତ୍ୱ ନିଆଯାଉନାହିଁ ବୋଲି ଯେ ଗଛମାନଙ୍କର ଲୋପ ଘଟିବାକୁ ଯାଉଛି ସେକଥା ମୋଟେ ନୁହେଁ । ବହୁ ମଣିଷଙ୍କୁ ଅଲକ୍ଷଣା ଏବଂ ଅବହେଳିତ କରି ରଖି ଅଳପ ମଣିଷ କ୍ଷମତା ବଳରେ, ଚତୁରତା ବଳରେ ଏହି ପୃଥିବୀକୁ କେବଳ ଏକା ଭୋଗ କରିବେ ବୋଲି ଆଣ୍ଠ କରି ଆସିଛନ୍ତି ବୋଲି ପୃଥିବୀରେ ଯାବତୀୟ ନରଖରର ଭିଆଣ ହୋଇଛି । ସେହି ନରଖରର କାରଣ ସର୍ବପ୍ରଥମେ ସାମାଜିକ ଓ ରାଜନୀତିକ । ପୃଥିବୀର ରାଜନୀତି ଓ ସମାଜବ୍ୟବସ୍ଥା ବଦଳିଲେ ଯାଇ ଅସଲ ସ୍ୱାସ୍ଥ୍ୟ ଓ ଅସଲ ପରିବର୍ତ୍ତନ ସମ୍ଭବ ହେବ । କ୍ଷମତା ପାଇଁ ନୁହେଁ, ମଣିଷ ପାଇଁ ରାଜନୀତି ଓ ସମାଜ-ବ୍ୟବସ୍ଥା ଚାଲିଲେ ଯାଇ ପୃଥିବୀ ରହିବ ଏବଂ ପୃଥିବୀ ରହିଲେ ଗଛମାନେ ଅବଶ୍ୟ ରହିବେ । ମଣିଷର ଭାଗ୍ୟକୁ ଶାର୍ଦ୍ଦୂଳ ଓ ରାକ୍ଷସମାନଙ୍କ ହାତରେ ଛାଡ଼ିଦେଇ ଗଛକୁ ହିଁ ମଣିଷର ସର୍ବଶ୍ରେଷ୍ଠ ରକ୍ଷକ ବୋଲି କହୁଥିବା ପର୍ଯ୍ୟନ୍ତ ଆମେ ଶାର୍ଦ୍ଦୂଳମାନଙ୍କ ଦ୍ୱାରା କିଣା ହୋଇଯିବାରେ ଲାଗିଥିବା ।

ମହାତ୍ମା ଗାନ୍ଧୀ ଏ ଦେଶରେ ଗଛମାନଙ୍କ ଆଗରୁ ମଣିଷମାନଙ୍କର କଥା କହୁଥିଲେ । ଗଛମାନେ ନୁହନ୍ତି, ମଣିଷମାନେ ହିଁ ମଣିଷମାନଙ୍କର ଭାଗ୍ୟ ବଦଳାଇ ପାରିବେ ବୋଲି କହୁଥିଲେ । ସ୍ୱାଧୀନ ଭାରତରେ ଭୂମିସଂସ୍କାର ହିଁ ସର୍ବପ୍ରଥମ କାର୍ଯ୍ୟ ହେବ ବୋଲି ସେତେବେଳେ ଆମ ନେତାମାନେ କେତେ କହି ହେଉଥିଲେ । ତା'ପରେ ଭୂଦାନ ସେହିକଥା କହିଲା - ଭୂଦାନ ଲୋକଶକ୍ତି କଥା କହିଲା । ଲୋକଶକ୍ତି ରାଜଶକ୍ତିର ମୁକାବିଲା କରି ପାରିବାର କଥା ମଧ୍ୟ କୁହାଗଲା । ତା'ପରେ କହିବାବାଲାମାନେ ହଠାତ୍ ବୁଢ଼ା ହୋଇଗଲେ । ଏବେ ସେମାନେ ଗଛକୁ ରକ୍ଷାକରିବା ବିଷୟରେ କହୁଛନ୍ତି । ସାମାଜିକ ବିପ୍ଳବର କଥା ଆଉ ମୋଟେ କହୁନାହାନ୍ତି । ଗଛ ବିଷୟରେ କହିବାରେ କୌଣସି ବିପଦ ନାହିଁ ବୋଲି ସେମାନେ ଏପରି କହୁଛନ୍ତି କି ? ଏବଂ ସରକାର ମଧ୍ୟ ଗଛମାନଙ୍କର ରକ୍ଷା କରିବା ଲାଗି ନୂତନ ବିଭାଗ ଓ ନୂତନ ଚାକିରିମାନ ଖୋଲି ଏକଦା ଲୋକଶକ୍ତିର ପକ୍ଷନେଇ ରାଜଶକ୍ତିର ମୁକାବିଲା କରିବା ବିଷୟରେ କହି ଆସିଥିବା ବିପ୍ଳବୀମାନଙ୍କୁ କ୍ରମେ କିଣିନେବାର ବରାଦ କଲେଣି ।

ଦୁଇପକ୍ଷ ଏକାଠି ମିଶି ଗଛ ବିଷୟରେ ଏଡ଼େ ପ୍ରେମରେ କଥା କହୁଛନ୍ତି ଯେ, ଗଛମାନଙ୍କର ପ୍ରଶ୍ନଟି ସମାଧାନ ହେବା ପର୍ଯ୍ୟନ୍ତ ମଣିଷମାନେ ହୁଏତ ଅପେକ୍ଷା କରି ରହନ୍ତୁ ବୋଲି ସେମାନେ ଭାବୁଥିବା ପରି ବୋଧ ହେଉଛି । ଇଏ ବି ଆଉଗୋଟିଏ କୌଶଳ । ଅସଲ ଭୋକକୁ ଭୁଲାଇ ରଖିବାର କୌଶଳ, ଅସଲ ପରିବର୍ତ୍ତନଗୁଡ଼ିକୁ ଗଡ଼ାଇ ଦେବାର କୌଶଳ । ପୂର୍ବର ତାମସାଗୁଡ଼ାକ ପରି ଏଇଟି ବି ହୁଏତ କେତେଦିନ ଚାଲିବ । ବସ୍ତୁତ ମଣିଷମାନେ ଗଛମାନଙ୍କୁ ଈର୍ଷା କରୁଥିବେ । କ୍ଷମତା ଆଶ୍ୱସ୍ତ ହୋଇ ନିଶ୍ୱାସ ମାରୁଥିବ । ଅସଲ ସମସ୍ୟାଗୁଡ଼ିକ ଆଁ କରି ଅନାଇ ରହିଥିବେ ।

୧୭/୦୪/୮୮

# ଭତ୍ତା ଖାଇଖାଇ ଭାତୁଆ

ଆମ ଦେଶରେ ସମସ୍ତେ ଭତ୍ତା ପାଇବେ ବୋଲି କ୍ରମେ ଯେତିକି ଯେତିକି ମନ କରୁଛନ୍ତି, ସେମାନଙ୍କର ମନ ଏବଂ ବିବେକ ସତେଅବା ସେତିକି ଅଧିକରୁ ଅଧିକ ଭାତୁଆ ହେବାରେ ଲାଗିଛି । ମାଗିବାଠାରୁ ଆଉ ଅଧିକ ହୀନକର୍ମ ନାହିଁ ବୋଲି ଆଗେ ଲୋକମୁଖରେ ଏକ ଅପବାଦ ରହିଥିଲା । ଅଧିକରୁ ଅଧିକ ମାରିନେବା ଯେଉଁଠି ମନୁଷ୍ୟଜୀବନର ସବୁଠାରୁ ବଡ଼ ଚତୁରତା ଏବଂ ସବୁଠାରୁ ବଡ଼ ସଫଳତା ବୋଲି ସାବ୍ୟସ୍ତ ହେବାକୁ ବସିଲାଣି, ସେଠି ମାଗିବାଟା ହିଁ ସତେଅବା ସବୁଠାରୁ ବଡ଼ ପୁଣ୍ୟ ବୋଲି ବିବେଚିତ ହେବାକୁ ଆରମ୍ଭ କଲାଣି । ଦାନ ଦେବାକୁ ସଚରାଚର କେହି ସମ୍ମତ ହୁଅନ୍ତେ ନାହିଁ । ମାତ୍ର ଦାନ ଦେବା କହିଲେ ଯେତେବେଳେ ସରକାରୀ ଗନ୍ତାଘରୁ ଦାନ କରିବାକୁ ହିଁ ବୁଝାଏ, ସେତେବେଳେ ଦାନୀ ବୋଲାଇବାକୁ ଆଉ କାହାରି ମନରେ ଆଦୌ କୌଣସି କୁଣ୍ଠା ରହିବା ଉଚିତ ନୁହେଁ । ବର୍ତ୍ତମାନ ଆମ ଦେଶରେ ଚଳାଖମାନଙ୍କ ନିମନ୍ତେ ସେହି ପାଳକ ପଡ଼ିଛି । ଯେଉଁମାନେ ଏକଦା ଆମ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ, ସେମାନେ ସତେଅବା କୋଉ ସାଆନ୍ତଘରର ମାଟି ହାଣି ଯାଇଥିବା ପରି ଏବେ ତାହାର ମୂଲ ମାଗିଲେଣି । ସେମାନେ ଭତ୍ତାମାନ ମାଗିଲେଣି ଏବଂ ଅଧିକରୁ ଅଧିକ ଭୁରୁଡ଼ ଦେଖାଇ ଆଚ୍ଛା କରି ଭତ୍ତା ମାଗିପାରିବେ ବୋଲି ନିଜର ସଂଘମାନ ମଧ୍ୟ ଗଢ଼ିଗଲେଣି । ଭତ୍ତା ପାଇ ପାଇ ଭାତୁଆ ହୋଇଗଲେଣି । ଆଉ ଆଦୌ କୌଣସି ସଂଗ୍ରାମ ବାକୀ ରହିଛି ବୋଲି ସେମାନେ ଭାବିବାକୁ ମଧ୍ୟ ମୋଟେ ରାଜି ନୁହନ୍ତି । ସଂଗ୍ରାମ ବାକୀ ରହିଛି ବୋଲି ସେହି ଅନ୍ୟ

ବିବେକଟିକୁ ନିଜ ଭିତରୁ ଅଧିକରୁ ଅଧିକ ଭାଡ଼ୁଆ କରି ପକାଇବାକୁ ମନସ୍ଥ କରି ସାରିଥିବାରୁ ହିଁ ହୁଏତ ସେମାନେ ଭତ୍ତା ମାଗିବାରେ ଏତେ ଅଧିକ ଉତ୍ସାହ ପ୍ରଦର୍ଶନ କରୁଛନ୍ତି । ଯଥାସମ୍ଭବ ଅଧିକ ମଣିଷଙ୍କୁ ଭତ୍ତା ଦେଇ ଭାଡ଼ୁଆ କରି ରଖିବାକୁ ହୁଏତ ନିରାପଦ ବୋଲି ମଣୁଥିବା ଦାତାମାନେ ମଧ୍ୟ ତେଣେ ଭତ୍ତା ଦେଇ ଭାଲୁ ପାଳିବାକୁ ସରକାରଙ୍କର ଏକ ମହାନ କର୍ତ୍ତବ୍ୟ ବୋଲି କୋଉଦିନୁ ଘୋଷଣା କରି ସାରିଛନ୍ତି ।

ଆମ ଲୋକପ୍ରତିନିଧିମାନେ ବି କୋଉ କାଳରୁ ନିଜ ପାଇଁ ଏକ ଆଖିଦୃଶିଆ ମୋଟା ଭତ୍ତାର ବରାଦ କରି ସାରିଲେଣି । ସେମାନେ ଲୋକପ୍ରତିନିଧି ହେବାଟାକୁ ସତେଅବା କୌଣସି ନା କୌଣସି ଅର୍ଥରେ ସଂଗ୍ରାମୀ ହେବାର ଏକ ଧନ୍ଦା ବୋଲି ଭାବୁଥିବାରୁ ସମ୍ଭବତଃ ସେହିଭଳି ଏକ ବିଚିତ୍ର ବ୍ୟବସ୍ଥାକୁ ମନ କରିଛନ୍ତି । ଜୁଆନ ବେଳେ ଲୋକପ୍ରତିନିଧି ହୋଇଥିବା କପିଳେଶ୍ୱରମାନେ ବୁଢ଼ାବେଳେ କାଳେ ଅସହାୟ ଓ ଅଥର୍ବ ହୋଇପଡ଼ିବେ, କାଳେ ମାଉଁସ ଖାଇବାକୁ ସେତେବେଳେ ତଥାପି ମନ ହେଉଥିବ ଅଥଚ ମାଉଁସ ଚୋବାଇବାକୁ ଏଣେ ପାଟିରେ ଗୋଟିଏ ବୋଲି ଦାନ୍ତ ନଥିବ, ସମ୍ଭବତଃ ସେହି ଭୟରେ ନେତାମାନେ ବହୁତ ଆଗକୁ ବିଚାର କରି ଭତ୍ତା-ଖାତାରେ ନାଆଁ ଲେଖାଇ ସାରିଲେଣି । ଜୀବନର ସୁଖକୁ ଏକାନ୍ତ ଅନିତ୍ୟ ବୋଲି କହୁଥିବା ମଣିଷମାନେ ସୁଖଗୁଡ଼ାକୁ କାଳେ ନିତ୍ୟ କରି ରଖିହେବ ବୋଲି ସତେଅବା କେତେ ନା କେତେ ଭରସାରେ ବଳ ଥାଉ ଥାଉ ଏକ ସମୁଚିତ ଭତ୍ତାର ବରାଦ କରିନିଅନ୍ତି ।

ଭତ୍ତା ପାଇବାର ଅର୍ଥାତ୍ ଭତ୍ତା ଦାବୀ କରିବାର ଇତିହାସରେ ମହାନ୍ ଭାରତବର୍ଷରେ ଏହିମାନେ ହେଉଛନ୍ତି ଆମର ପୁରୋଗାମୀ । ଆମ ଘରର ବାପାମାନେ ଯଦି ବର୍ତ୍ତମାନ ଓ ଭବିଷ୍ୟତ ଦୁଇଟୀଯାକକୁ ବାହାହୋଇ ରହିବାକୁ ଇଚ୍ଛା କରିବେ, ତେବେ ସେମାନଙ୍କୁ ତୁମେ କୋଉ ପୁଅ ନାହିଁ ବୋଲି କହିବାକୁ ସାହସ କରିବ ? ବରଂ, ବାପାମାନଙ୍କୁ ଅନୁକରଣ କରିବା ହିଁ ହୁଏତ ଅଧିକ ପାରଦର୍ଶିତା ବୋଲି ବିବେଚିତ ହେବ । ଏଣୁ ଆମର ଏଠି ସଂଗ୍ରାମୀ ଏବଂ ଲୋକପ୍ରତିନିଧିମାନଙ୍କ ପଛକୁ ଲେଖକମାନେ ବି ବାହାରି ପଡ଼ିଲେଣି । କାରିଗରମାନେ ଭତ୍ତା ମାଗିଲେଣି । ଏମାନେ ସମସ୍ତେ ନିଜକୁ ଦୁଃସ୍ଥ ବୋଲି କହିଲେଣି । ସେହି ଉତ୍ସାହର ବନ୍ୟାରେ ଅଦୁସ୍ଥମାନେ ହୁଏତ ସତକୁ ସତ ଦୁସ୍ଥମାନଙ୍କ ଅପେକ୍ଷା ଅନେକ ଅଧିକ ମାରି ନେଉଛନ୍ତି ଏବଂ ବାପର ନାଆଁ ରଖୁଛନ୍ତି । ଯେଉଁଠାରେ ସତକୁ ସତ ଦୁଃସ୍ଥମାନଙ୍କର ମୁହଁ ବନ୍ଧୁ କାରଣରୁ ବନ୍ଦ ହୋଇ ରହିଥାଏ, ସେଠାରେ ଅଧିକାଂଶତଃ ସହରୀ ସାଧବମାନେ ହିଁ ଦୁଃସ୍ଥ ବୋଲି

ଦେଖାଇ ହେବାର ବୈଶ୍ୟବୃତ୍ତି କରନ୍ତି ଏବଂ ଭତ୍ତା ନେଇ ନିଜର କୋଠାଘରମାନଙ୍କୁ ସଜାନ୍ତି । ସେହିମାନଙ୍କର ଉଦ୍ୟମରେ ଆପଣାକୁ ଦୁଃସ୍ଥ ବୋଲି ଦେଖାଇ ହେବାଟା ଦେଶରେ ପ୍ରାୟ ଏକ ବିଶେଷ ପ୍ରତ୍ୟୁତ୍ପନ୍ନମତିତା ରୂପେ ସ୍ୱୀକୃତ ହୁଏ । ଅସଲ ଲାଜଗୁଡ଼ିକ ଏକାବେଳେକେ ଭୁଲି ହୋଇଯାଏ । ବରଂ ଏପରି କୁହାଯିବ ଯେ, ଅଲାଜୁକ ହେବାକୁ ସେତେବେଳେ ଭାରି ଭଲ ଲାଗେ ।

ଭାରତବର୍ଷରେ ଭତ୍ତା ମାଗି ଭତ୍ତା ଖାଉଥିବା ଏହି ଖାସ୍ ମଣିଷମାନେ ଏଠି ଆମ ସମସ୍ତଙ୍କ ଭିତରେ ଭାତୁଆ ହେବାରେ ମଧ୍ୟ ନିଃସନ୍ଦେହ ଭାବରେ ପୁରୋଗାମୀ । ସଂଗ୍ରାମୀ ଭାତୁଆ ହେଲା, ତେଣୁ ସଂଗ୍ରାମରୁ ହୁଡ଼ିଲା । ଯାହା ସହିତ ତାକୁ ସଂଗ୍ରାମ ଲଢ଼ିବାକୁ ପଡ଼ିଥାନ୍ତା, ସିଏ ତାହାରି ଘରେ ଯାଇ ଘରଜୁଆଁଇ ହୋଇ ରହିବାକୁ ମନ କଲା । ଲୋକ-ପ୍ରତିନିଧିମାନେ ବି ଭାତୁଆ ହେଲେ, ମୁଷଳପରି ଭାଷଣମାନ ଦେଲେ ଓ ପରସ୍ପର ଉଦ୍ଦେଶ୍ୟରେ ମୁଷଳ ପ୍ରୟୋଗ କରିବାର ଏକ ବିଚିତ୍ର ହୁଣ୍ଡାମିକୁ ଏଠି ନୂତନ ରାଜନୀତି ରୂପେ ଚଳାଇବାକୁ ବୀର ହୋଇ ବାହାରି ଆସିଲେ ସତ, ମାତ୍ର ଯାବତୀୟ ଲୋକପ୍ରତିନିଧିତ୍ୱର ଇଜ୍ଜତ ନେଲେ । ଲୋକତନ୍ତ୍ରକୁ ଦେବକୀ ଓ ବସୁଦେବଙ୍କ ପରି ବନ୍ଦୀକରି ରଖି ରାଜଧାନୀରେ କଂସ ହୋଇ ରହିଲେ । ଯୁଗଟାକୁ ଅଥର୍ବ ଅଘାସୁର କରି ରଖିଲେ । ନିଜେ ଭୀରୁ ହେଲେ, ଭୀରୁତାକୁ ସକଳ ପ୍ରୋତ୍ସାହନ ଦିଆଇଲେ - କାଳର ଆଖି ଦୁଇଟାକୁ ଓପାଡ଼ି ଆଣିବାକୁ ମନ କଲେ । ଯୋଉଦିନୁଁ ସାହିତ୍ୟିକ ନିଜକୁ ଦୁଃସ୍ଥ ବୋଲି କହି ରାଜାଙ୍କ ନଅରକୁ ଭତ୍ତା ମାଗି ଗଲା, ସେହି ଦିନରୁ ସିଏ ନଂପୁସକ ହେଲା, ଅର୍ଥାତ୍ ନିଜର ଅସଲ ବାରୁଦଗୁଡ଼ାକୁ ସିଏ ତେଣେ ପାରୁପର୍ଯ୍ୟନ୍ତ ଢ଼ାଙ୍କୁଣିଦେଇ କର୍ତ୍ତାମାନଙ୍କଠାରୁ ଲୁଚାଇ ରଖିବାକୁ ହିଁ ଏକ ଅଧିକ ଫଳଦାୟକ ସଜ୍ଜନତା ବୋଲି ବିଚାର କଲା । ଭାତୁଆ ହେବାର ଅନ୍ୟ ଧର୍ମଟିକୁ ଗ୍ରହଣ କଲା । ଦିନଯାକ ଖାଇ ରାତିଯାକ ଶୋଇ ରହିବାର ଚକ୍‌ଚକ୍ ପୋଷା କୁକୁରଟିଏ ପରି ଏଣିକି ସିଏ ସାହିତ୍ୟର ଅସଲ ଶକ୍ତିଟିକୁ ଢ଼ାଂକି ରଖିବା ଉଦ୍ଦେଶ୍ୟରେ ସାହିତ୍ୟକୁ ନୂତନ ସ୍ୱାଦ ଓ ଶୈଳୀମାନ ଆଣିଦେଲା । ସତେଅବା ସାହିତ୍ୟକୁ ମଧ୍ୟ ଭାତୁଆ କରିଦେଲା । ଭାତୁଆ ସାହିତ୍ୟିକ ଓ ଭାତୁଆ କାରିଗରମାନେ ପରମ କାମଭକ୍ତିରେ ପୁରସ୍କାର ପରେ ପୁରସ୍କାର ପାଇବେ ବୋଲି ଅଧିକରୁ ଅଧିକ ସଂଖ୍ୟାରେ ସହରକୁ ଷଡ଼ଯନ୍ତ୍ର କରି ଦଉଡ଼ିଲେ । ଏବେ ଶୁଣାଯାଉଛି ଯେ, ଦୁଃସ୍ଥ ବା ବୃଦ୍ଧ ସାମ୍ବାଦିକମାନଙ୍କୁ ମଧ୍ୟ ଏଣିକି ଭତ୍ତା ଦିଆଇବାର ଦାବୀ କରାଯିବ । ଅର୍ଥାତ୍ ସାମ୍ବାଦିକମାନେ ଏଣିକି ଆହୁରି ଅଧିକ ଭାତୁଆ ହେବେ, ଅଧିକ ନିଶା ପିଇ ଚିତ୍ ହୋଇଯିବେ । ସମ୍ବାଦପତ୍ରରେ ଆମ ସମସ୍ତଙ୍କୁ ଆହୁରି ଶୀତଳ କରି ରଖିବାର ବରାଦ କରାଯିବ । ଯେଉଁ ସାମ୍ବାଦିକତା ଅସଲ

ନିଆଁଗୁଡ଼ିକୁ ଲଗାଇ ଦେବାକୁ ହିଁ ଆପଣାର ଧର୍ମ ବୋଲି ଗ୍ରହଣ କରିଥାଏ, ତାହାକୁ ବାସନ୍ଦ କରି ରଖାଯିବ । ଯିଏ ରାଜାଙ୍କର ଗାଇବ, କେବଳ ତାହାକୁ ହିଁ ରଜାଘରକୁ ନିମନ୍ତ୍ରଣ କରାଯିବ । ସବୁ ଭାତୁଆ ଏକାଠି ହୋଇ ନିଜର ଏକ ଅଲଗା ଦେଶ ଗଢ଼ି ତେଣିକି ତାହାରି ଭିତରେ ରହିବେ ।

୧।୫।୮୮

# ଶଙ୍କରଶତ୍ରୁ ନିଃଶଙ୍କରେ ଦହୁଛି

ପ୍ରାୟ ତିରିଶିବର୍ଷ ତଳେ ସମାଜଶାସ୍ତ୍ରୀ ସୋରୋକିନ୍ "The American Sex Revolution" ବୋଲି ଖଣ୍ଡେ ବହି ଲେଖିଥିଲେ । ଆମେରିକାର ଜନଜୀବନରେ Sex କିପରି ପ୍ରାୟ ଏକ ସର୍ବମୟ ପ୍ରବଳତା ରୂପେ ପ୍ରବେଶ କରି ସାରିଲାଣି, ଆପଣାର ବହିଟିରେ ସିଏ ସେହି କଥାଟିର ଆଲୋଚନା କରିଥିଲେ । ଏବେ ଆମ ଭାରତବର୍ଷରେ ମଧ୍ୟ ସତକୁ ସତ ସେହି ଅଭିନବ ଯୁଗଟି ଆସି ପହଞ୍ଚିଗଲାଣି ବୋଲି ଭାବିବାକୁ ଆମ ଚାରିପାଖରେ କେତେକେତେ ପ୍ରମାଣ ଆସି ଜୁଟିଗଲାଣି ।

ଯୌନ ପ୍ରବୃତ୍ତିକୁ ବୈଜ୍ଞାନିକମାନେ ମଣିଷର ଏକ ସହଜାତ ପ୍ରବୃତ୍ତି ବୋଲି କହିଛନ୍ତି । ମନୁଷ୍ୟର ପ୍ରତ୍ୟେକ ସହଜାତ ପ୍ରବୃତ୍ତି ପରି ଏଇଟିର ମଧ୍ୟ ସୁସ୍ଥ ଓ ଅସୁସ୍ଥ ଦୁଇଟି ପରିଣତିଗତ ଭୂମି ରହିଛି । ଯେଉଁ ପ୍ରବୃତ୍ତି ଆମ ଜୀବନର ଅଭିବୃଦ୍ଧିରେ ସହାୟକ ହୁଏ ତାହା ସୁସ୍ଥ; ତାହା ଜୀବନ ପ୍ରତି ଆମର ଶ୍ରଦ୍ଧାକୁ ବଢ଼ାଏ, ଆମ ଜୀବନର ପରିଧିଗୁଡ଼ିକୁ ନାନାଭାବେ ପ୍ରସାରଣ ଆଣିଦିଏ, ଆମକୁ ଅଧିକରୁ ଅଧିକ ପରିମାଣରେ ଯୁକ୍ତ କରାଇରଖେ ଓ ଆମର ଯାବତୀୟ ବିଚରଣରେ ଏକ ବୃହତ୍ତରତା ଆଣି ବହୁ ବନ୍ଧନ ଭିତରେ ମଧ୍ୟ ଆମକୁ ମୁକ୍ତ କରି ରଖିଥାଏ । ଅସୁସ୍ଥ ପ୍ରବୃତ୍ତିର ଅର୍ଥ ହେଉଛି ଧର୍ମତଃ ଏକ କୋପନଯୁକ୍ତ ପ୍ରବୃତ୍ତି । ଏଥିରେ ଉତ୍ତେଜନା ଥାଏ, ଗିଳି ପକାଇବାର, ଗୋଟାସୁଦ୍ଧା ଗ୍ରାସ କରିବାର ଏକ ପ୍ରବଳତା ମଧ୍ୟ ରହିଥାଏ । ତାହା ଆମର କ୍ଷୁଧାଗୁଡ଼ିକୁ ଅଧିକ କ୍ଷୁଧିତ କରି ରଖେ । କ୍ଷୁଧାଗୁଡ଼ିକର ଉପଶମ କରାଇବାର ଛଳ ଦେଖାଇବାରେ ଲାଗିଥାଏ ସତ, ମାତ୍ର ଆମକୁ ପ୍ରକୃତରେ ଅତ୍ୟନ୍ତ ବିକଳ ଓ ଦୟନୀୟ ଭାବରେ କ୍ଷୁଧିତ ଏବଂ ତେଣୁ ହିଂସ୍ର କରି ରଖିଥାଏ । ସେହି ହିଂସ୍ରତା ବାହାରକୁ ଦେଖିବାକୁ ସଂସାରର ଆଉ କାହାପ୍ରତି ଉଦ୍ଦିଷ୍ଟ ହୋଇ ରହିଥିବା ପରି ଦେଖା

ଯାଉଥିଲେ ମଧ୍ୟ ପ୍ରକୃତରେ ଖାସ୍ ନିଜପ୍ରତି ହିଁ ଅଧିକତର ପରିମାଣରେ ଉଦ୍ଦିଷ୍ଟ ହୋଇ ରହିଥାଏ । ତାହା ସକଳ ଦଂଶନର ମାଧ୍ୟମରେ ଆମ ନିଜକୁ ହିଁ ଦଂଶନ କରୁଥାଏ, ଆମକୁ ଉତ୍ତାପଜର୍ଜର କରି ରଖିଥାଏ ।

ଏବଂ ସତେଅବା କେଉଁ ଅପଦେବତାର ବରାଦ ପରି ପୃଥିବୀରେ ଏପରି ସିଆଣିଆ ବ୍ୟବସାୟୀମାନେ ରହିଥାନ୍ତି, ଯେଉଁମାନେ କି ମଣିଷର ସେହି କୋପନପ୍ରବୃତ୍ତିର ସୁଯୋଗ ନିଅନ୍ତି । ସେମାନେ ମଣିଷକୁ ଶ୍ରଦ୍ଧା ଆଡ଼କୁ ଆକୃଷ୍ଟ ନକରି କୋପନ ଆଡ଼କୁ ହୁଡ଼ାଇ ନିଅନ୍ତି । ମଣିଷର କ୍ଷୁଧାକୁ ସେମାନେ ଅଧିକ କ୍ଷୁଧିତ କରିବା ସକାଶେ ନୂଆ ନୂଆ ପ୍ରକୋପକର ନାନା ଉଦ୍‌ଭାବନ କରିବାରେ ଲାଗିଯାଆନ୍ତି । ମଣିଷର ଅତୃପ୍ତିଗୁଡ଼ାକୁ ତୃପ୍ତ କରିବା ସକାଶେ ନୁହେଁ, ନାନାଭଳି କ୍ଷିପ୍ରକାର୍ଯ୍ୟକାରୀ ଲବଣମାନଙ୍କର ପ୍ରୟୋଗ କରି ସେଗୁଡ଼ିକୁ ଆହୁରି ଅତୃପ୍ତ କରି ପକାନ୍ତି । କୌଣସି ବିଶେଷ ଖଳତା ହେତୁ ସେମାନେ ଯେ ଏପରି କରନ୍ତି, ସେକଥା ଆଦୌ ନୁହେଁ । ସେପରି କରି ସେମାନେ ଅଧିକ ପଇସା ରୋଜଗାର କରିପାରନ୍ତି ବୋଲି ସେପରି କରନ୍ତି । ସେମାନେ ଏକ ଅନ୍ୟ କୋପନର କବଳରେ ପଡ଼ିଥାଆନ୍ତି ବୋଲି ମଣିଷର କୋପନଗୁଡ଼ିକୁ ହିଁ ଅଧିକ ଚିହ୍ନନ୍ତି । ମଣିଷର ଅସଲ ଶ୍ରଦ୍ଧାଗୁଡ଼ିକୁ ଚିହ୍ନି ପାରନ୍ତି ନାହିଁ । ଯୌନଗତ କୋପନ ଏବଂ କ୍ଷୁଧାଗୁଡ଼ିକୁ ସେମାନେ ବୃତ୍ତିଗତ ସିଦ୍ଧିଲାଭର ଅସ୍ତ୍ରରୂପେ ବ୍ୟବହାର କରନ୍ତି ।

ତେଣୁ, ଆମ ବିଜ୍ଞାପନରେ ଆମେ ଦାଣ୍ଡରେ, କାନ୍ଥରେ ଏବେ ଯୌନକୋପନର ନାନାବିଧ ଚିତ୍ର ଦେଖିବାକୁ ପାଉଛୁ । ଜୀବନରେ ଏକ ଅନ୍ତରଙ୍ଗ ସଙ୍ଗଲାଭ କରିବାର ଆଗ୍ରହ-ସମ୍ବନ୍ଧଗୁଡ଼ିକର ଅନ୍ୱେଷଣ କରିବାର କ୍ଷେତ୍ରରେ ଯେତେବେଳେ ଆମେ ଚିତ୍ରମାନଙ୍କରେ ଶଙ୍କରଙ୍କର ଶତ୍ରୁମାନଙ୍କୁ ଗୋଟାସୁଦ୍ଧା ଲଙ୍ଗଳା ହୋଇ ଗଡ଼ାଗଡ଼ି ହେଉଥିବାର ଦେଖୁ, ସେତେବେଳେ ଆମେ ଭାରି ଚକିତ ହୋଇପଡୁ ଓ ସେହି ଚକିତ ହୋଇ ପଡ଼ିବାର ପୂର୍ଣ୍ଣ ସୁଯୋଗ ନେଇ ଆମର କୋପନଘର ଗୁଡ଼ିକରେ ଆମ ଭିତରେ ରହିଥିବା ଆମର ଖଳ ଦୋସରମାନେ ସତେଅବା ଠିକ୍ ସେହିଭଳି ଲଙ୍ଗଳା ହୋଇ ନାଚିବାକୁ ଆରମ୍ଭ କରନ୍ତି । ଆମର ସଂଗୀତ, ଆମର ନୃତ୍ୟ ଏବଂ ଆମର ତଥାକଥିତ ମନୋରଞ୍ଜନମାନେ ମଧ୍ୟ ଆମଲାଗି ସେହିପରି ଭୁରିଭୁରି ଅବସରମାନ ଖଞ୍ଜି ଦେବାକୁ ଆସି ପହଞ୍ଚିଯାଆନ୍ତି । ଆମ ସାହିତ୍ୟ ମଧ୍ୟ ବେଳେବେଳେ ଆମକୁ ନେଇ ଠିକ୍ ସେହି ଫିସାଦଗୁଡ଼ିକୁ ଆରମ୍ଭ କରିଦିଏ ଏବଂ ଆମ ଭିତରେ ଯଥାର୍ଥ ଜୀବନଶ୍ରଦ୍ଧା ଗୁଡ଼ିକର ଉନ୍ମୋଚନ ଘଟାଇବା ପରିବର୍ତ୍ତେ ଆମର ଅସୁସ୍ଥ କଣ୍ଡୁଗୁଡ଼ାକୁ ଭାରି ନିର୍ଲଜ୍ଜ ଭାବରେ ପ୍ରକୁପିତ

କରି ଆଣିବାର ଷଡ଼ଯନ୍ତ୍ର କରିବାରେ ଲାଗିଥାଏ । ଏବେ ଆମେ ଯାହାକୁ ଆଧୁନିକ ପୃଥିବୀ ଅଥବା ଆଧୁନିକ ଯୁଗ ବୋଲି କହୁଛୁ, ତାହାର ପ୍ରାୟ ଯାବତୀୟ ଉପଚାର ଏବଂ ଅନୁଷ୍ଠାନ ଆମକୁ ପ୍ରକୁପିତ ହେବାରେ ହିଁ ସର୍ବାଧିକ ସାହାଯ୍ୟ କରୁଛି ଏବଂ ଯୌନଗତ କୋପନଟାକୁ ହିଁ ସତେଅବା ଆପଣାର ଏକ ଅମୋଘ ଅସ୍ତ୍ର ରୂପେ ପ୍ରୟୋଗ କରିବାରେ ଲାଗିଛି । ଆମେ ସମସ୍ତେ ପ୍ରକୁପିତ ହୋଇ ଘର ଭିତରୁ ଏକାବେଳେକେ ଦାଣ୍ଡକୁ ବାହାରି ଆସୁଛୁ । ଆଦୌ କୌଣସି କୋଳାହଳ ନକରି ଆପଣାର ନିବିଡ଼ତମ ସମ୍ବନ୍ଧଗୁଡ଼ିକୁ ବଞ୍ଚିବାକୁ ଆମେ ହୁଏତ ଆଉ ମୋଟେ ସାହସ କରି ପାରୁନାହୁଁ ବୋଲି ଏକାବେଳେକେ ପଦାକୁ ନିର୍ଧୂମ ଲଙ୍ଗଳା ସୁଆଙ୍ଗଗୁଡ଼ାକ ଭିତରକୁ ବାହାରି ପଡୁଛୁ । ନିଜ ଭିତରେ ନୀରବରେ ଆପଣାର ଅସଲ ସଙ୍ଗବାସନାଗୁଡ଼ିକର ସମ୍ମୁଖୀନ ହୋଇ ନପାରିଲେ ଅନେକ ମଣିଷ ଏହିପରି ପଦାକୁ ବାହାରି ପଡ଼ନ୍ତି; ବିଜ୍ଞାପନରେ ଦେଖି, ଗୀତରେ ଶୁଣି ଓ ବହିରେ ପଢ଼ି ଆହ୍ଲାଦିତ ହୁଅନ୍ତି ଓ ବ୍ୟବସାୟୀମାନଙ୍କର ବିପଣି ବଢ଼ିବାରେ ଇନ୍ଧନ ପରି ବ୍ୟବହୃତ ହୁଅନ୍ତି ।

ମଣିଷର ଯେକୌଣସି ବାସନା ପରି ଯୌନ-ବାସନା ମଧ୍ୟ ଏକ ତୁଚ୍ଛା ଲାଳସାରେ ବେଶ୍ ପରିଣତ ହୋଇପାରେ । ଭିତରେ ବହୁ ପ୍ରକାରର ବିଫଳତା ଏକାଠି ଏକ ସମଗ୍ର ଅତୃପ୍ତିକର ସାକାରପ୍ରାୟ ହୋଇ ମଣିଷକୁ ନଚାଇବାକୁ ଆରମ୍ଭ କଲେ ଭିତରର ବାସନାଟିଏ ଲାଳସାରେ ପରିଣତ ହୋଇଯାଏ ଓ ଦାଣ୍ଡରେ ପଡ଼ି ମହତ ହରାଏ । ଏହିପରି ଏକ ଅସୁସ୍ଥ ପରିସ୍ଥିତିର ସୁଯୋଗ ନେଇ ଧୂର୍ତ୍ତ ବ୍ୟବସାୟୀମାନଙ୍କର ଆବିର୍ଭାବ ହୁଏ, ଧୂର୍ତ୍ତ ନୀତିବାଦୀମାନଙ୍କର ମଧ୍ୟ ଆବିର୍ଭାବ ହୁଏ । ଉଭୟଙ୍କ ନିମନ୍ତେ ସତେଅବା ପୁଷମାସ ଆସି ପହଞ୍ଚିଯାଏ । ଦୁହେଁ ପ୍ରାୟ ସମାନ ଭାବରେ ପ୍ରକୁପିତ ହୁଅନ୍ତି । ଜଣେ ପ୍ରବର୍ତ୍ତାଇବାରେ ଲାଗିଥାଏ ଓ ଆଉଜଣେ ଭର୍ତ୍ସନା କରିବାରେ ଲାଗିଥାଏ । ଏହି ଉଭୟସଙ୍କଟରେ ପଡ଼ି ଯୁଗ କପଟୀ ହେବାକୁ ପ୍ରୋତ୍ସାହନ ପାଏ । ସମ୍ବନ୍ଧର ଅସଲ ଘରଗୁଡ଼ିକ ବନ୍ଦ ହୋଇଯାଏ । ସମସ୍ତେ ଆସି ଦାଣ୍ଡରେ ନାଚନ୍ତି, ଲଙ୍ଗଳା ହୁଅନ୍ତି, ଅଥଚ କାହାରି ସହିତ କାହାରି ପରିଚୟ ହୋଇପାରେ ନାହିଁ । କିଏ କାମରେ ଲଗାଉଥାଏ ତ ଆଉ କିଏ କାମରେ ଲାଗୁଥାଏ । ମାତ୍ର, ଜୀବନ କହିଲେ ଯେ ମର୍ମତଃ ଏକ ଉଦ୍‌ଘାଟନକୁ ବୁଝାଏ, ଏକ ପଥଯାତ୍ରାକୁ ବୁଝାଏ, ସେକଥା କହି ପାରିବାର ସାହସ କାହାରିହେଲେ ନଥାଏ ।

ହାଟରେ, ଦାଣ୍ଡରେ କ୍ଷୁଧାଗୁଡ଼ାକୁ ବଢ଼ାଇ ଏହି କୋପନକୁ ଆମେ କଦାପି ପ୍ରଶମିତ କରି ପାରିବା ନାହିଁ । ତୁଚ୍ଛା ବ୍ୟବସାୟୀ ଅଥବା ତୁଚ୍ଛ ଭର୍ତ୍ସନାବାଦୀମାନେ

ଆମକୁ କଦାପି ଏହି ଆବର୍ତ୍ତ ଭିତରୁ ବାହାରିବାର ବାଟ ଦେଖାଇ ପାରିବେନାହିଁ । ଆମ ଜୀବନରେ ଶ୍ରଦ୍ଧା ବଢ଼ିଲେ ଯାଇ ପ୍ରତିକାରଟିଏ ମିଳିବ । ଭିତରକୁ ବାଟଟିଏ ଦିଶିଲେ ଯାଇ ବାହାରକୁ ମଧ୍ୟ ବାଟଟିଏ ଫିଟିଯିବ । ଜୀବନରେ ବାଟଟିଏ ଚାଲିବାକୁ ମନକଲେ ଯାଇ ଅସଲ ସମ୍ବନ୍ଧଗୁଡ଼ିକ ଅତ୍ୟନ୍ତ ସ୍ୱାଭାବିକ ଭାବରେ ଯୋଡ଼ି ହୋଇଯିବ । ସମ୍ବନ୍ଧଗୁଡ଼ିକ ସମ୍ଭବ ହେଲେ ଆଉ ମୋଟେ ନିଜକୁ ବା ଆଉ କାହାକୁ ଠକିବାକୁ ମନ ହେବନାହିଁ । ବ୍ୟବସାୟୀମାନଙ୍କର ପାଲରେ ଯାଇ ପଡ଼ିବାକୁ ବି ମନ ହେବନାହିଁ । ଆମର ବାସନାମାନେ ଆମ ଭିତରେ ଅପେକ୍ଷା କରି ରହିଥିବା ଶିବଟିକୁ ଚିହ୍ନିନେଇ ପାରିବେ ।

୮/୫/୮୮

# ଚାଲ କଳାହାଣ୍ଡି ଯିବା

କଳାହାଣ୍ଡିର ଦୁର୍ଭାଗ୍ୟ ଯେ, କଳାହାଣ୍ଡି ଖବରକାଗଜକୁ ଗଲା । ଖବରକାଗଜ ଭିତରକୁ ଯାଇ ସେଇ ଲଟି ଭିତରେ କୁଆଡ଼େ ହଜିଗଲା । କଳାହାଣ୍ଡି ବୋଲି କହି ସଂପୃକ୍ତ ଓ ଅସଂପୃକ୍ତ ସମସ୍ତେ ଦେଶର ବା ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ଜିଲ୍ଲାକୁ ଏପରି ଏକୁଟିଆ କରି ନିଠେଇ ହୋଇ ଦେଖିଲେ ଯେ ସେମାନ ସତକୁ ସତ କିଛି ଦେଖି ପାରିଲେ ନାହିଁ । କଳାହାଣ୍ଡି କଥା ଦିଲ୍ଲୀରେ ପଡ଼ିଲା । କଞ୍ଚା ସାହେବମାନେ କବାଟ ଓ ଝରକା ବନ୍ଦ ହୋଇ ରହିଥିବା କୋଠାଘରମାନଙ୍କରେ ଦୂରଦର୍ଶନ ଉପରେ କଳାହାଣ୍ଡିଟାକୁ କେତେ କେତେ ଛଦ୍ମରେ ଦେଖାଇବାକୁ ମନ କଲେ । ନେତାମାନେ ବି କଳାହାଣ୍ଡି ଦଉଡ଼ିଲେ । ଯୋଉମାନେ କ୍ଷମତାରେ ଅଛନ୍ତି ଓ ଆମକୁ ଦେବୋତ୍ତର ସମ୍ପତ୍ତି ପରି ଭୋଗ କରୁଛନ୍ତି, ସେମାନେ ସଦଳବଳେ ଆସି କଳାହାଣ୍ଡି ଦେଖିଗଲେ । ଯୋଉମାନେ କ୍ଷମତାରେ ନାହାନ୍ତି, ଅଥଚ କ୍ଷମତାକୁ ଆସିବେ ବୋଲି କାରୁଣ୍ୟ କରୁଛନ୍ତି, କ୍ରୋଧ କରୁଛନ୍ତି ଏବଂ ଉପସ୍ଥିତ ପବନଟାକୁ ଲଗୁଡ଼ ପ୍ରହାର ଦ୍ୱାରା ଛେଚରା କରି ପକାଇବାକୁ ଇଚ୍ଛା କରୁଛନ୍ତି, ସେମାନେ ସମସ୍ତେ ଆସିଲେ । ଆସିଲେ, ଦେଖିଲେ ଏବଂ ଜୟ କରି ଚାଲିଗଲେ ।

ଖୋଦ୍ ସେହି ଜିଲ୍ଲାଟିର ଅଧିବାସୀମାନେ ମଧ୍ୟ ପ୍ରକୃତରେ କମ୍ ଭେଳିକିରେ ପଡ଼ିଲେ ନାହିଁ । ଅସୁରଗଡ଼ ଠାରୁ ଗୁଡ଼ହାଣ୍ଡି ଯାଏ ହୁଲସ୍ଥୁଲ ପଡ଼ିଗଲା । ଧୂଆମୂଳ ରାମପୁରକୁ ଚକଚକ ପିଚୁ ରାସ୍ତା ପଡ଼ିଗଲା ପରି ଦେଖାଗଲା ।

ଫଟାମୁଣ୍ଡାରେ ସତେଅବା ପଞ୍ଚତାରକା ହୋଟେଲ ତୋଳା ହୋଇଗଲା ପରି ମନେ ହେଲା । କଳାହାଣ୍ଡିଆଏ ଭାବିଲେ ଏଥର ଆମର କପାଳ ଫିଟିବ । କଳାହାଣ୍ଡି ମୁଲକକୁ ଇତିହାସର କୋଉ ଅନ୍ଧୁଡ଼ିକାଳରୁ ଯେଉଁ ମହାକାନ୍ତାର ବୋଲି କୁହା ହୋଇ ଆସିଛି, ସେହି ଅପବାଦରୁ ଏତେ ଦିନକେ ଆମକୁ ମୁକ୍ତି ମିଳିବ ବୋଲି ବାହାରୁ ଆସି କଳାହାଣ୍ଡିରେ ବସତିସ୍ଥାପନ କରିଥିବା ଶକ ଓ ହୁନମାନେ ଆଶାବାଦୀ ହେବାକୁ ଆରମ୍ଭ କଲେ । ଏବଂ, ଯେଉଁମାନେ ମାନଧାତାଙ୍କ ଅମଳରୁ କଳାହାଣ୍ଡିରେ ମାଟି କାମୁଡ଼ି ରହିଛନ୍ତି, ସେକାଳରେ ଯେଉଁଭଳି ଥିଲେ, ସ୍ୱରାଜ୍ୟ ଯୁଗର ଆମ ଏକାଳରେ ମଧ୍ୟ ପ୍ରାୟ ସେହିପରି ହୋଇ ରହିଛନ୍ତି, ସେମାନେ ଏତେଦିନ ପରେ ଯାଇ ରାମଚନ୍ଦ୍ରଙ୍କର ପାଦ ଏହି ମାଟିକୁ ପଡ଼ିଲା ଓ ଏଥର ଅହଲ୍ୟା ଅବଶ୍ୟ ଶାପରୁ ମୁକ୍ତି ପାଇବ ବୋଲି ସ୍ୱପ୍ନ ଦେଖିବାକୁ ଲାଗିଲେ । ଖବରକାଗଜରୁ ଖବର ପାଉ ପାଉ ନିଜକୁ ଭାରି ଅନୁଗୃହୀତ ବୋଧ କଲେ । ଗୋଟାଏ ଦେଶର ଅସଲ ଶକ୍ତି ଯେଉଁଠି ଇନ୍ଦ୍ରମାନଙ୍କର ବାଣ ବାଜି ଅବଶ ହୋଇ ପଡ଼ିଥାଏ, ସେଠାରେ ଭାଗ୍ୟ ଓ ଅନୁଗ୍ରହ ହିଁ ଏହିପରି ଲୋକଜୀବନର ପ୍ରାୟ ସକଳ କ୍ଷେତ୍ରରେ ରାଜା ହୋଇ ବସିଥାଏ, ଦୌରାତ୍ମ୍ୟ ଦେଖାଇବାରେ ଲାଗିଥାଏ । ମଣିଷ ତା'ର ଅସଲ ଶକ୍ତିର ପରିଚୟ ପାଇଲେ ଇନ୍ଦ୍ରମାନଙ୍କର ଆଉ କୌଣସି ଆବଶ୍ୟକତା ରହେନାହିଁ । ସେତେବେଳେ ଅସଲ ଶକ୍ତି ହିଁ ରାଜା ହୁଏ, ଅସଲ ଶକ୍ତି ଦେଶକୁ ବଦଳାଏ ।

ଚାଲ, ଆମେ ସମସ୍ତେ କଳାହାଣ୍ଡି ଯିବା । ଆମେ କଳାହାଣ୍ଡି ବାହାରିଲୁ ବୋଲି ଆଦୌ କୌଣସି କୋଳାହଳ କରିବା ନାହିଁ କିମ୍ବା ଖବରକାଗଜକୁ ଜଣାଇବା ନାହିଁ । କ୍ୟାମେରା ଧରି ଫଟୋ ଉଠାଇବାକୁ ନୁହେଁ, ସତକୁ ସତ ଆଖିଟାଏ ନେଇ ଚାଲ କଳାହାଣ୍ଡି ଯିବା । କଳାହାଣ୍ଡିର ଦର୍ପଣ ଉପରେ ଆମେ ସାରା ଦେଶଟାକୁ ଦେଖିବା । ଏପଟ ଆଉ ସେପଟ ଦୁଇପଟଯାକ ସଭାଘରେ ବସି କାନ ଧରାଧରି ହେଉଥାଆନ୍ତୁ ପଛକେ, ଆମେ ସେମାନଙ୍କ ଆଡ଼କୁ ମୋଟେ ଅନାଇବା ନାହିଁ । ଅସଲ ଆଖିରେ ଦେଖିଲେ ଆମକୁ ଦେଶଟା ସାରା ହୁଏତ ସେହି କଳାହାଣ୍ଡି ହିଁ ଦୃଷ୍ଟିଗୋଚର ହେବାକୁ ଲାଗିବ । କଳାହାଣ୍ଡି ପରି ଦେଶଟାଯାକ ଯେଉଁଠି ମରୁଡ଼ି ପଡ଼ିଛି, ଯେଉଁଠି ମଣିଷମାନେ ଭୋକରେ ମରୁଛନ୍ତି, ଯେଉଁଠାରେ ଅଲକ୍ଷଣା ତଥାକଥିତ ଜୀବନଟା ଏକ ଅଲକ୍ଷଣା ମରଣରେ ହିଁ ପରିସମାପ୍ତି ଲାଭ କରୁଛି, ସେହି ଦେଶରେ ତୁମ ଆମଭଳି ଏପରି ଲକ୍ଷ୍ମୀମନ୍ତ ବୀରପୁରୁଷମାନେ ମଧ୍ୟ ଅଛନ୍ତି, ଯେଉଁମାନଙ୍କ ଘରେ କି କେତେବେଳେ ହେଲେ

ମରୁଡ଼ି ପଶେନାହିଁ, ବରଂ ତେଣେ ଜଙ୍ଗଲରେ କି ବଗଡ଼ରେ ମରୁଡ଼ି ପଡ଼ିଲେ ଯେଉଁମାନଙ୍କର ଗଉଣୀଗୁଡ଼ାକ ଆହୁରି ଅଧିକ ହୋଇ ପୂରି ଉଠିବା ପରି ମନେ ହେଉଥାଏ । ଅଧିକ ସଭା ହୁଏ, ତା'ରି ଭିତରୁ ରାମ ବାହାରନ୍ତି ଓ ରାବଣ ବାହାରନ୍ତି ଏବଂ ବଢ଼ିଆ ଉତ୍ତେଜନାରେ ମିଛ ରାମାୟଣଗୁଡ଼ାକର ଅଭିନୟ କରିବାରେ ଲାଗିଥାନ୍ତି ।

ଯେଉଁ ଦେଶରେ ଲକ୍ଷ୍ମୀମନ୍ତମାନେ ଅପରିମିତ ଲକ୍ଷ୍ମୀହୀନମାନଙ୍କ ଉପରେ ଲଦିହୋଇ ରହିଥାନ୍ତି, ସେହି ଦେଶରେ ଦେଶର ଧର୍ମ ରକ୍ଷା କରି ବଡ଼ ମାଛମାନେ ସାନ ମାଛମାନଙ୍କୁ ଖାଇଯିବାରେ ଲାଗି ଥାଆନ୍ତି ଏବଂ ସାନ ମାଛମାନେ ଖାଇହୋଇ ଯାଉଛନ୍ତି ବୋଲି ସହରରେ ଶୋକ କରୁଥାନ୍ତି, ଏକ ଆରେକୁ ଭର୍ତ୍ସନା କରୁଥାନ୍ତି । ସେତେବେଳେ ଦୁଇ ପକ୍ଷରୁ ହିଁ ରିଲିଫ ବଣ୍ଟାଯିବାର ବ୍ୟବସ୍ଥା ହୁଏ । ତେଣେ ଅନାହାର ମୃତ୍ୟୁ ବିଷୟରେ ତର୍କସଭା ବସିଥାଏ । ସର୍ବହରାମାନେ ଏପାଖେ ଏବଂ ସେପାଖେ ଉଭୟ ପକ୍ଷରେ ବିରାଜମାନ ଥାଇ ତର୍କ କରୁଥାନ୍ତି ଏବଂ ରାଜନୀତିକ ଲକ୍ଷ୍ୟଗୁଡ଼ିକୁ ତର୍କ ଦ୍ୱାରା ହିଁ ହାସଲ କରିନେବେ ବୋଲି ଆଣ୍ଠ ବାନ୍ଧିଥାନ୍ତି । ରିଲିଫ୍ ପହଞ୍ଚିବା ବେଳକୁ ଦୁର୍ଯୋଗକୁ ବର୍ଷାଦିନ ବି ଆସିଥାଏ । ଭୂଇଁ ଶୀତଳ ହୋଇଯାଏ । ମରୁଡ଼ିଗ୍ରସ୍ତ ମଣିଷମାନେ ମରୁଡ଼ି ଭୁଲି କାମରେ ଲାଗି ଯାଆନ୍ତି ଏବଂ ପରବର୍ତ୍ତୀ ମରୁଡ଼ିଟିକୁ ସହିବାପାଇଁ ଦେହରେ ଶକ୍ତି ସଂଗ୍ରହକରି ରଖୁଥାନ୍ତି । ସେତେବେଳେ କଟକରେ କଳାହାଣ୍ଡିର ପ୍ରସଙ୍ଗ ପଡ଼ିବା ନିମନ୍ତେ ଆଦୌ କୌଣସି ଆବଶ୍ୟକତା ନଥାଏ ।

କଳାହାଣ୍ଡିର ଦର୍ପଣ ଉପରେ ଥରେ ଦେଶକୁ ଦେଖିବା ଲାଗି ସମର୍ଥ ହେଲେ ଆମେ ତେଣିକି ଆଦୌ କୌଣସି ତାମସା କରିବାକୁ ମନ କରନ୍ତେ ନାହିଁ । ରିଲିଫ୍ ବାଣ୍ଟିବାକୁ କି ଦିଲ୍ଲୀରୁ ଟଙ୍କା ଆଣି ସର୍ବଗିଳାମାନଙ୍କର ପାଁ ଭିତରେ ଅଜାଡ଼ି ଦେବାକୁ ମୋଟେ ମନ କରନ୍ତେ ନାହିଁ । ଅନୁଗ୍ରହ ଦ୍ୱାରା କୌଣସି ଦାରିଦ୍ର୍ୟ ଭରଣା କରାଯାଇ ପାରେନାହିଁ । ଜାଗୃତି ଦ୍ୱାରା ହିଁ ଦୁଃଖ ଦୂର ହୁଏ । ଅସଲ ପରିତ୍ରାଣକାରୀ ମଣିଷର ନିଜ ଭିତରରୁ ବାହାରେ, ଶକ୍ତିର ଅବତାର ଗ୍ରହଣ କରି ବାହାରେ । ବଡ଼ ମାଛମାନେ ନିଜର ବୁଦ୍ଧି ଦେଇ ଓ ସେହି ବୁଦ୍ଧିକୁ ବହୁବିଧ ଭାବପ୍ରବଣତାର ସାଞ୍ଜୁ ପିନ୍ଧାଇ କେବେ କେଉଁଠି ସାନମାଛମାନଙ୍କର ଭାଗ୍ୟ ବଦଳିବାରେ ଯେ ନିମିତ୍ତ ପରି କାର୍ଯ୍ୟ କରିଛନ୍ତି, ପୃଥିବୀର ଇତିହାସରେ କେଉଁଠି ହେଲେ ତାହାର ଦୃଷ୍ଟାନ୍ତ ନାହିଁ । ବ୍ୟକ୍ତିଗତ ହେଉ ଅଥବା ସାମୂହିକ ହେଉ, ଶକ୍ତିର ଆବିଷ୍କାର ମଣିଷର ନିଜ ଭିତରୁ ହିଁ ହୋଇଛି । ସେହି ଆବିଷ୍କାର ଦ୍ୱାରା ହିଁ

ଯାବତୀୟ ମରୁଡ଼ି ପାଇଁ ପ୍ରତିକାର ହୋଇପାରିଛି । ଭୂମିଟା ହିଁ ବଦଳି ଯାଇଛି । ଆମ ଦେଶରେ ଏବେ ସେହିଭଳି ଏକ ଆବିଷ୍କାର ଲାଗି ସବୁଠାରୁ ଅଧିକ ଆବଶ୍ୟକତା ରହିଛି ।

୧୫/୫/୮୮

# ଗ୍ରସ୍ତ ଓ ଗ୍ରାସକାରୀ

ସଂସାରଟାକୁ ଅନେକ ମଣିଷ ସତେଅବା ଗୋଟାଏ ରାକ୍ଷସ ବୋଲି ମନେ କରନ୍ତି କି କ'ଣ କେଜାଣି, ଆପଣାକୁ ତାହାରି ଗ୍ରାସରେ ପଡ଼ି ଯାଇଥିବା ଜଣେ ଜଣେ ଅସହାୟ ବ୍ୟକ୍ତି ପରି ମନେ କରନ୍ତି । ଆମର ଶାସ୍ତ୍ରମାନଙ୍କରେ ସଂସାରକୁ ଏକ ଜାଲ ସହିତ ତୁଳନା କରାଯାଇଥାଏ । ଜାଲ ବା ଫାଶରେ ଆସି ଯେଉଁମାନେ ପଡ଼ିଯାଇଥାନ୍ତି, ସେମାନେ ସେହି ପଡ଼ିଯିବାଟାକୁ ଏକ ଦୁର୍ଦ୍ଦଶାପ୍ରାୟ ମଣନ୍ତି ଏବଂ ତାହାଲାଗି ଆଖି ବୁଜି ଜାଲଟାକୁ ଦୋଷ ଦେବାରେ ଲାଗିଥାଆନ୍ତି । ସାଧୁ ଓ ସଜ୍ଜନମାନେ ସମ୍ଭବତଃ ସେଇଥିଲାଗି ସଂସାରସ୍ଥ ଅସହାୟମାନଙ୍କୁ ସେହି ଜାଲ ଭିତରୁ ମୁକ୍ତ ରହିବା ଲାଗି ପରାମର୍ଶ ଦେଇଥାନ୍ତି ଏବଂ ସେହି ମୁକ୍ତ ହେବାକୁ ହିଁ ଅନେକ ସମୟରେ ମୋକ୍ଷ ବୋଲି କୁହାଯାଏ ।

ଯିଏ ଗ୍ରାସ ଭିତରେ ଆସି ପଡ଼ିଯାଇଥାଏ, ସିଏ ସେଥିପାଇଁ କୌଣସି ଜଣେ ଗ୍ରାସକାରୀକୁ ହିଁ ଆପଣାର ସେହି ଦୁର୍ଦ୍ଦଶା ଲାଗି ଦୋଷ ଦେଇଥାଏ । ଗ୍ରାସକାରୀ ଜଣେ ଅବଶ୍ୟ ରହିଥିବ, ତା' ନହେଲେ ସଂସାରରେ ଆଦୌ କେହି କୌଣସି ଗ୍ରାସରେ ପଡ଼ନ୍ତେ ବା କାହିଁକି ? ନ୍ୟାୟର ଏହି ମାପକାଠି ଅନୁସାରେ ବିଚାର କଲାବେଳେ ଆମେ ମଧ୍ୟ ଗୋଟାଏ ପାଖରେ କେବଳ ଗ୍ରସ୍ତ ମଣିଷମାନଙ୍କୁ ଦେଖୁ ଓ ଆଉ ଗୋଟିଏ ପାଖରେ ଗ୍ରାସକାରୀମାନଙ୍କୁ ଦେଖିଥାଉ । କେତେକ ରାଜନୀତିକ ଉଗ୍ରବାଦ ମଧ୍ୟ ରହିଛି, ଯେଉଁଥିରେ କି ଗ୍ରାସକାରୀ ଏବଂ ଗ୍ରସ୍ତ ଦୁହିଁଙ୍କୁ ଦୁଇଟି ଏକାବେଳକେ ଅଲଗା ଶ୍ରେଣୀ ବୋଲି ବିଚାର କରାଯାଏ ଏବଂ ଏକ ଶ୍ରେଣୀସଂଘର୍ଷକୁ ହିଁ ମନୁଷ୍ୟମୁକ୍ତିର ସତେଅବା ଏକମାତ୍ର ପଥ ବୋଲି ଦେଖାଇ ଦିଆଯାଏ । କଳ୍ପନା କରାଯାଉଥାଏ ଯେ, ଯେଉଁଦିନ ଗ୍ରସ୍ତମାନେ ଗ୍ରାସକାରୀମାନଙ୍କୁ ସେହି ଅବଶ୍ୟମ୍ଭାବୀ ସଂଘର୍ଷରେ ନିର୍ମୂଳ କରିଦେଇ ପାରିବେ, ସେହିଦିନ ଯାଇ ପୃଥିବୀରେ ଶାନ୍ତିର ଓ ନ୍ୟାୟର ପ୍ରତିଷ୍ଠା ହେବ । ସେହି କଳ୍ପନାଟିରୁ ପ୍ରେରଣା ପାଇ ଆମ ପୃଥିବୀରେ ଯେଉଁସବୁ ସଂଗ୍ରାମ ଲଢ଼ାଯାଇଛି, ସେଥିରେ ତଥାକଥିତ ଗ୍ରସ୍ତମାନେ, ବଞ୍ଚିତ ଓ ଦୁର୍ଦ୍ଦଶାପନ୍ନମାନେ ତଥାକଥିତ ଗ୍ରାସକାରୀ ଶ୍ରେଣୀଟି ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଛନ୍ତି ଓ ସେମାନଙ୍କ ଉପରେ ବିଜୟ ବି ଲାଭ

କରିଛନ୍ତି । ତଥାପି ପୃଥିବୀରୁ ଗ୍ରାସ ଅଥବା ଗ୍ରସ୍ତତାର ମୂଳୋତ୍ପାଟନ ହୋଇପାରି ନାହିଁ। ଗ୍ରସ୍ତମାନେ ବିଜୟ ଲାଭ କରିଥିବାର ଆନନ୍ଦରେ ହୁଏତ ଏପରି ନୃଶଂସ ଓ ନିର୍ମମ ହୋଇପଡ଼ିଛନ୍ତି ଯେ, କ୍ରମେ ସେହିମାନେ ହିଁ ଯୁଗର ନୂତନ ଗ୍ରାସକାରୀ ରୂପେ ଅବତୀର୍ଣ୍ଣ ହୋଇଛନ୍ତି ଏବଂ ଆଉଗୋଟିଏ ସଂଗ୍ରାମ ଲାଗି ଯଥେଷ୍ଟ କ୍ରୋଧ ଆଣି ଯୋଗାଇ ଦେଇଛନ୍ତି ।

ସଫଳତା ହାସଲ କରିବାକୁ ହିଁ ଜୀବନର ଅସଲ ଧର୍ମ ବୋଲି ଗ୍ରହଣ କରି ନେଇଥିବା ଏକ ସମାଜରେ ଜଣେ ମଣିଷ ଅଥବା ଯେକୌଣସି ଗୋଟିଏ ଶ୍ରେଣୀ ଏକାବେଳକେ ଗ୍ରସ୍ତ ଓ ଗ୍ରାସକାରୀ ଉଭୟ ଭୂମିକାରେ ଅବତୀର୍ଣ୍ଣ ହୋଇପାରେ । ଏପାଖରେ ଥାଇ ଅନ୍ୟକୁ ଗ୍ରାସ କରିପାରେ ଏବଂ ସେପାଖରୁ ଆଉ କାହାର ଗ୍ରାସରେ ବି ବେଶ୍ ପଡ଼ିପାରେ । ଆମର ଏହି ପୃଥିବୀରେ ଅନ୍ୟର ଗ୍ରାସରୁ ମୁକ୍ତିଲାଭ କରିବାକୁ ଇଚ୍ଛା କରୁଥିବା ମଣିଷ ବହୁତ ଅଛନ୍ତି, ମାତ୍ର ଅନ୍ୟମାନଙ୍କୁ ନିଜର ଗ୍ରାସରୁ ମୁକ୍ତ କରିଦେବାକୁ ଇଚ୍ଛା କରୁଥିବା ମଣିଷ ପ୍ରାୟ କେହିହେଲେ ନାହାନ୍ତି । ଏଭଳି କାହିଁକି ହୋଇଛି କେଜାଣି ? ଅନ୍ୟକୁ ଗ୍ରାସ କରିବାରେ ମଣିଷ ସାଧାରଣତଃ ଯେଉଁ ଆନନ୍ଦ ପାଏ, ଅନ୍ୟଦ୍ୱାରା ଗ୍ରସ୍ତ ହୋଇ ରହିବାକୁ ମଧ୍ୟ ସେହିଭଳି ଏକ ଆନନ୍ଦ ପାଏ କି ? ଯିଏ ସତକୁସତ ସୁସ୍ଥ, ସିଏ କଦାପି ଅନ୍ୟ କାହାକୁ ଗ୍ରାସ କରିବାକୁ ମନ କରେନାହିଁ ଏବଂ ଆପେ ମଧ୍ୟ ଅନ୍ୟ କାହାରି ଗ୍ରାସରେ ପଡ଼ିବାକୁ ମୋଟେ ଯାଏନାହିଁ । ମାତ୍ର ଏକ ଅସୁସ୍ଥ ସମାଜରେ ତଥାପି ନିଜର ମନଟାକୁ ବୋଧଦେଇ ଚଳିପାରିବାକୁ ମଣିଷମାନେ ସତେଅବା କେତେ ଥାନରେ ଗ୍ରସ୍ତ ହୋଇ ରହିବାକୁ ଓ ଆହୁରି କେତେ ଥାନରେ ଅନ୍ୟମାନଙ୍କୁ ଗ୍ରାସ କରିବାକୁ ହିଁ ଜୀବନର ବାସ୍ତବ ଧର୍ମବୋଲି ଗ୍ରହଣ କରି ନେଇଥାନ୍ତି । ତେଣୁ ସଂସାରର ବାହାରେ ଥିବା କୌଣସି ଭଗବାନ ବା ସେହିପରି ଆଉକିଛିର କ୍ରୋଧ ହେତୁ ନୁହେଁ, ଆପଣା କାରଣରୁ ହିଁ ଅଧିକାଂଶ ମଣିଷ ଏକାବେଳେକେ ଗ୍ରସ୍ତ ଏବଂ ଗ୍ରାସକାରୀ ହୋଇ ରହିଥାନ୍ତି । ସେମାନେ ସେଇଟାରୁ ସତେଅବା କେତେ ସାନ୍ତ୍ୱନା ପାଆନ୍ତି । ଗୋଟାଏ ଜାଗାରେ ବିରାଡ଼ି ହୋଇ ଆଉ ଗୋଟାଏ ଜାଗାରେ ମୂଷା ହୋଇଥିବାର ଦୁର୍ଗତିର କ୍ଷତିପୂରଣ କରି ନେଉଥାନ୍ତି ।

ଆମ ସମାଜରେ ଯିଏ ଯେତେ ଉପରେ ଅଥବା ଯେତେ ତଳେ ରହିଥାଉ ପଛକେ, ସିଏ ଗୋଟିଏ ଭେଷ ପିନ୍ଧି ବିଲେଇଟିଏ ହେଉଛି ଓ ଆହୁରି କେତେକ ଥାନରେ ମୂଷାରଭେଷ ପିନ୍ଧିବାଜନିତ ପାପର କ୍ଷତିପୂରଣ କରିବାରେ ଲାଗିଛି । ଗୋଟାଏ ଜାଗାରେ ନିଶ ଫୁଲାଉଛି ତ ଆଉ ଗୋଟିଏ ଜାଗାରେ ଲାଙ୍ଗୁଳ ଜାକି

କାକୁସ୍ଥକର ହୋଇ ଛିଡ଼ାହୋଇଛି । ଗୋଟାଏ ପାଖରେ ହାକିମୀ ଦେଖାଉଛି ତ ଆଉଗୋଟାଏ ପାଖରେ ବୋଲଗୁଡ଼ାକୁ ମାନୁଛି । ଗୋଟାଏ ପାଖରେ ବୀର ସାଜିଛି ତ ଆରପାଖଟାରେ ଭୀରୁଟିଏ ହୋଇ ବସିଛି । ସିଏ ଆମର ଏହି ବିଚିତ୍ର ସଂସାର ଭିତରେ ଏକ ସମାନ ଭାବରେ ବିଚିତ୍ର ସମତା ରକ୍ଷା କରିବାରେ ସାହାଯ୍ୟ କରୁଛି । ଗୋଟିଏ ପାଖରେ 'ମରିଗଲି' ବୋଲି ଚିତ୍କାର କରୁଛି ତ ଆଉ ଗୋଟାଏ ପାଖରେ 'ମାର୍ ମାର୍' ବୋଲି ହୁଙ୍କାର ଦେବାରେ ଲାଗିଛି । ଗୋଟାଏ ପାଖରେ ଭଗବାନଙ୍କୁ ଉଦ୍ଧାର ପାଇବାର ମାର୍ଗ ଲାଗି ପ୍ରାର୍ଥନା କରୁଛି ତ ଆଉଗୋଟାଏ ପାଖରେ ଅନ୍ୟ ଉଦ୍ଦେଶ୍ୟରେ ପେଷି ପାରିବାର ଅସ୍ତ୍ର ନିମନ୍ତେ ପ୍ରାର୍ଥନା କରିବାରେ ଲାଗିଛି । ଏହିପରି ଭାବରେ ଏକାବେଳେକେ ଦୁଇଟାଯାକ ଧର୍ମ ଭିତରେ ବାଧ୍ୟ ହୋଇ ରହି ସିଏ ଆପଣା ଜୀବନର ଅସଲ ଧର୍ମଗୁଡ଼ିକ ପ୍ରତି ନ୍ୟାୟ କରୁଛି କି ଅନ୍ୟାୟ କରୁଛି କେଜାଣି ?

ଜୀବନରେ ହୁଏତ ଏପରି ଗୋଟିଏ ସ୍ତର ସମ୍ଭବ ହୋଇ ପାରନ୍ତା, ଯେଉଁଠାରେ ରହି ଜୀବନ ବଞ୍ଚିପାରିଲେ ଆଦୌ କାହାରିକୁ ଗ୍ରାସ କରିବାକୁ ପଡ଼ନ୍ତାନାହିଁ ଅଥବା ଆଦୌ କାହାରି ଗ୍ରାସରେ ପଡ଼ିବାକୁ ମଧ୍ୟ ପଡ଼ନ୍ତାନାହିଁ । କାହାରିକୁ ଭୟ ଦେଖାଇବାକୁ ପଡ଼ନ୍ତା ନାହିଁ କିମ୍ବା କାହାରି ଭୟରେ ଗ୍ରସ୍ତ ହୋଇ ରହିବାକୁ ମଧ୍ୟ ପଡ଼ନ୍ତା ନାହିଁ । କେବଳ ବ୍ୟକ୍ତିର ଜୀବନରେ ନୁହେଁ, ଆମର ସାମୂହିକ ଜୀବନର ଯାବତୀୟ ସମ୍ବନ୍ଧରେ ମଧ୍ୟ ସେହି ସ୍ତରଟି ସମ୍ଭବ ହୋଇପାରନ୍ତା । ସେତେବେଳେ ନୈତିକତା କହିଲେ ଏକାବେଳକେ ଅନ୍ୟ ଏକ ମୂଲ୍ୟକୁ ବୁଝାନ୍ତା । ପ୍ରତ୍ୟେକ ମଣିଷ ପ୍ରତ୍ୟେକ ମଣିଷର ଆଖିରେ ଅନ୍ୟପ୍ରକାର ଦେଖାଯାଆନ୍ତେ । ଏବଂ ସବୁଠାରୁ ବଡ଼ କଥା ହେଉଛି, ସେତେବେଳେ ଆମର ଏହି ସଂସାରକୁ ଗୋଟାଏ ତୁଚ୍ଛା ଜାଲ ବୋଲି କହିବାଲାଗି ଆଦୌ କୌଣସି ଆବଶ୍ୟକତା ରହନ୍ତା ନାହିଁ । ଭୀରୁମାନେ ସଂସାରକୁ ଜାଲ ବୋଲି କହନ୍ତି, ସ୍ୱାର୍ଥପରମାନେ ସଂସାରକୁ ଜାଲ ବୋଲି କହନ୍ତି । ଅଥବା, ସେହି ଗୋଟିଏ ମଣିଷ ହିଁ କେତେବେଳେ ସ୍ୱାର୍ଥପର ହୋଇ ଅନ୍ୟମାନଙ୍କୁ ଜାଲ ଭିତରେ ପକାଇବ ବୋଲି ପ୍ରମତ୍ତ ରୂପ ଧାରଣ କରିଥାଏ ଓ ଆଉ କେତେବେଳେ ଭୀରୁ ହୋଇ ସ୍ୱୟଂ ଜାଲ ଭିତରେ ଯାଇ ପଡ଼ିଯାଏ । ଏହି ଗୋଟିଏ ଜୀବନରେ ସିଏ ଏକାବେଳେକେ ଉଭୟ ଦଶାରେ ପଡ଼ିଥାଏ । ନିଜ ଭିତରେ ଦୁଇଫାଳ ହୋଇ ରହିଥାଏ । ଗୋଟାଏ ଫାଳ ଆର ପାଖଟାକୁ ଗ୍ରାସ କରିବାକୁ ଧାଇଁଥାଏ, ହୁଏତ ଭାରି ଭୟ ମଧ୍ୟ କରୁଥାଏ । ସତକୁ ସତ ମନକଲେ ଯାଇ ମଣିଷକୁ ଉଭୟ ଦୁର୍ଦ୍ଦଶାରୁ ପରିତ୍ରାଣ ମିଳିଯାଏ ।

୨୯/୫/୮୮

# ତୁମେ ସେ ପାଦକୁ ମାଡ଼ନାହିଁ

ଏକଦା ସନ୍ଥମାନେ ଯେଉଁ ବାଟ ଦେଇ ଯାଇଥିଲେ, ସେହି ବାଟ ଚିରଦିନକୁ ପବିତ୍ର ହୋଇ ରହିଛି । ଏକଦା ସଂଗ୍ରାମୀମାନେ ଯେଉଁ ବାଟ ଦେଇ ଯାଇଥିଲେ, ସେହି ବାଟ ସବୁଦିନ ଲାଗି ପବିତ୍ର ଏବଂ ସ୍ମରଣୀୟ ହୋଇ ରହିଛି । ମହାତ୍ମା ଗାନ୍ଧୀ ସନ୍ଥ ଥିଲେ, ସଂଗ୍ରାମୀ ଥିଲେ । ଭାରତୀୟ ରାଜନୀତିକ ସଂଗ୍ରାମରେ ସିଏ ପଦଯାତ୍ରାକୁ ମଧ୍ୟ ଏକ କାର୍ଯ୍ୟକ୍ରମ କରି ରଖିଥିଲେ । କେବଳ ଲବଣ ସତ୍ୟାଗ୍ରହ ସମୟରେ ଯେ ସିଏ ଦୀର୍ଘ ପଥ ପଦଯାତ୍ରା କରି ଯାଇଥିଲେ, ସେକଥା ଆଦୌ ନୁହେଁ । ଦକ୍ଷିଣ ଆଫ୍ରିକାରୁ ଭାରତବର୍ଷ ଆସି ଏଠାରେ ତତ୍କାଳୀନ ସଂଗ୍ରାମରେ ନେତୃତ୍ୱ ଗ୍ରହଣ କରିବା ପୂର୍ବରୁ ସିଏ ଆଗ ପଦଯାତ୍ରା କରିଥିଲେ । ଅସଲ ଦେଶକୁ ଜାଣିବା ନିମନ୍ତେ ପଦଯାତ୍ରା କରିଥିଲେ । ମଣିଷଙ୍କୁ ଚିହ୍ନିବା ଲାଗି ସିଏ ପଦଯାତ୍ରା କରିଥିଲେ । ଗାଡ଼ିରେ ଗଲେ, ଘୋଡ଼ାରେ ଗଲେ ଦେଶଟାକୁ କୌଣସି ପ୍ରକାରେ ଦେଖିହୁଏ ସତ, ମାତ୍ର ମଣିଷମାନଙ୍କୁ ଚିହ୍ନି ହୁଏ ନାହିଁ । ମଣିଷମାନଙ୍କୁ ଆପଣାର କରି ହୁଏ ନାହିଁ । ଏବଂ ଯିଏ ମଣିଷମାନଙ୍କୁ ଆପଣାର କରି ନଥାଏ, ସିଏ ସେମାନଙ୍କୁ ପୁଣି କି ନେତୃତ୍ୱ ଦେଇ ପାରିବ ? ପୁନଶ୍ଚ, ନେତୃତ୍ୱ ଦେଇ ନପାରିଲେ ତୁମେ ପ୍ରକୃତରେ କି ସଂଗ୍ରାମ କରିପାରିବ ?

ବାବୁମାନେ, ତୁମେ ନାଗରା ବଜାଇ ଡ଼ଗର ହକାରି ଯଦି ପଦଯାତ୍ରା କରିବାକୁ ମନ କରୁଛ, ତେବେ ଅଲବତ କର । ଅଡ଼ାଗୁଡ଼ାକ ତୁମ ହାତରେ ରହିଛି, ତୁମେ ଅଲବତ ପଦଯାତ୍ରା କରିପାରିବ । ସିଏ ଏକଦା ଯୋଉ ବାଟରେ ଯାଇଥିଲେ, ସେହି ବାଟରେ ଯିବାଲାଗି ତୁମର ଅବଶ୍ୟ ଅଧିକାର ରହିଛି । ଅନେକ ମଣିଷ ସ୍ୱୟଂ ଜୀବନଟିଏ ବଞ୍ଚି ପାରନ୍ତି ନାହିଁ ବୋଲି କାହାଣୀଟିଏ ପଢ଼ି ସେଇଥିରୁ ଜୀବନଟିଏ ବଞ୍ଚିବାର ଆସ୍ୱାଦନ ଲାଭ କରୁଥାନ୍ତି । ଆହୁରି କେତେ ମଣିଷ ଭବିଷ୍ୟତ ଆଡ଼କୁ ଗୋଡ଼ ପକାଇ ପାରନ୍ତି ନାହିଁ ବୋଲି ଇତିହାସକୁ ପାଟଲୁଗା ପିନ୍ଧାଇ କେଡ଼େ ସମାରୋହରେ ତାହାରି ପାରାୟଣ କରିବାରେ ଲାଗିଥାନ୍ତି । ତୁମେ ଯଦି ସେତିକି ଚାହୁଁଛ, ସଂଗ୍ରାମକୁ ଲଢ଼ୁ ନଥିଲେ ମଧ୍ୟ ଯଦି ତୁମେ ତଥାପି ବେଶ ପିନ୍ଧି ସଂଗ୍ରାମୀଟିଏ ପରି ଅନୁଭବ କରିବାକୁ ଇଚ୍ଛା କରୁଛ, ତେବେ ତୁମେ ତାହା ଅଲବତ କରିପାରିବ । ତୁମର ଖବରକାଗଜ ମାନଙ୍କରେ ତାହାର ବିବରଣୀ ଅବଶ୍ୟ ବାହାରିବ ।

ମାତ୍ର, ତୁମେ ପଦଯାତ୍ରା କର ପଛକେ, ହାତରେ ନକ୍ସା ଧରି ଓ ବାର ପ୍ରକାରର ନକ୍ସା କରି ତୁମେ ସେହି ବାଟରେ ହିଁ ପଦଯାତ୍ରା କର ପଛକେ, ତୁମକୁ

ତୁମ ରାଣ, ତୁମେ ସେ ପାଦକୁ କଦାପି ମାଡ଼ନାହିଁ । ସେହି ପାଦ ଯେମିତି ସେମିତି ପଡ଼ିଥାଉ । ଆଉ କିଏ ଯଥାର୍ଥ ଯୋଗ୍ୟ ହୋଇ ଆସିବା ପର୍ଯ୍ୟନ୍ତ ସେହି ପାଦ ସେମିତି ପଡ଼ିଥାଉ । ହଁ, ତୁମେ ଇଚ୍ଛା କରିଥିଲେ, ଆଗ ନିଜକୁ ନଦେଖି ଦେଶଟାକୁ ଦେଖିଥିଲେ, ସେହି ପାଦ ଉପରେ ଅବଶ୍ୟ ପାଦ ପକାଇ ପାରିଥାଆନ୍ତ । ତୁମେ ବାବୁମାନେ ସେକଥା କଲ ନାହିଁ, କେତେ କୁଆଡ଼େ ହୁଡ଼ିଗଲ । ତୁମର ସେହି ହୁଡ଼ାବାଟ ହେଉଛି ତୁମମାନଙ୍କର ପ୍ରକୃତ ବାଟ । ଏ ବାଟ ତୁମର ନୁହେଁ । ଏହି ବାଟରେ ପଡ଼ିଥିବା ପାଦଗୁଡ଼ିକ ଉପରେ ତୁମର ଆଦୌ କୌଣସି ଅଧିକାର ନାହିଁ । ସେହି ପାଦର ଅପମାନ କରନାହିଁ । ଦୟା କର ।

ଏ ପଦଯାତ୍ରା କଦାପି ସେହି ପଦଯାତ୍ରା ନୁହେଁ । ସେହି ପାଦଗୁଡ଼ିକ ଏଠୁ, ସେଠୁ, ସବୁଆଡୁ ଦିଲ୍ଲୀକୁ ପଡ଼ିଥିଲା । ତୁମର ଏହି ପାଦଗୁଡ଼ିକ ଦିଲ୍ଲୀରୁ ଏଠିକି ସେଠିକି ପଡ଼ିବ ବୋଲି ମନ କରି ସେହି ବରାଦ ଅନୁସାରେ ବାହାରିଛି । ଏଗୁଡ଼ିକ ସଂଗ୍ରାମୀର ପାଦ ନୁହେଁ, ଏଗୁଡ଼ିକ ଶାସକର ପାଦ । ଉପରୁ ଆସି ଲଦିହୋଇ ପଡୁଥିବା ପାଦ । ସନ୍ଥର ପାଦ ହୋଇପାରିବା ତ ଆହୁରି ଅଧିକ ଦୂରର କଥା ।

୨୯/୫/୯୯

# ଦୟାଦୂଷିତ ରାଜନୀତି

ରାଜନୀତିଟା ଯେତେବେଳେ ତୁଚ୍ଛା ଦୟାରେ ଚାଲେ, ସେତେବେଳେ ତାହାର ଅବସ୍ଥା ପ୍ରକୃତରେ ଭାରି ଦୟନୀୟ ହୋଇଯାଏ । ସେତେବେଳେ ରାଜନୀତିବାଲାଙ୍କୁ ଦେଖି ସତକୁ ସତ ପ୍ରାଣରେ ବଡ଼ ଦୟା ହୁଏ । ସେମାନେ ମୁଣ୍ଡରେ ଏଡ଼େବଡ଼ ପଗଡ଼ିଟାଏ ପିନ୍ଧିଥାନ୍ତି, କ୍ଷମତାର ତାମ୍‌ଜାନ୍ ଉପରେ ବସି ସତେଅବା କୋଉ ଧନୁଯାତ୍ରାରେ ବାହାରିଥିବା ପରି ଦିଶୁଥାନ୍ତି । ତଥାପି ସେମାନଙ୍କ ବେକରେ ପଟି ଲାଗିଥାଏ, ପାଦରେ ଝୁଣ୍ଟିଆ ବନ୍ଧା ହୋଇଥାଏ, ନାକରେ ତୁଣ୍ଡି ପଡ଼ିଥାଏ । ଗୋଡ଼ ଏତେଟିକିଏ ହେଲେ ନଥାଏ । ତେଣୁ ମନକୁ ମନ ଠିଆ ହୋଇ ପାରିବାଲାଗି ମଧ୍ୟ କୁ' ନଥାଏ ।

ଦିଲ୍ଲୀବାଲା ଭୁବନେଶ୍ୱର ବାଲାଙ୍କୁ ଦୟା କରେ । ଭୁବନେଶ୍ୱରବାଲା କେନ୍ଦ୍ରାପଡ଼ାବାଲା ଅଥବା କୁଚିଣ୍ଡାବାଲାକୁ ଦୟା କରେ । ନେତା କର୍ମୀକୁ ଦୟା କରେ । ମହାଭାରତୀୟ ନେତା ରାଜ୍ୟସ୍ତରୀୟ ନେତାକୁ ଦୟା କରେ, ତାକୁ ମନ୍ତ୍ରୀଟିଏ କରିଦିଏ ।

ରାଜ୍ୟସ୍ତରୀୟ ନେତାମାନେ ସ୍ଥାନୀୟ ଗୁଣ୍ଡିଚିମାନଙ୍କୁ ବି ଦୟା କରନ୍ତି । କାହାକୁ ସରପଞ୍ଚଟିଏ କରିଦିଅନ୍ତି । କାହା ଭାଇ ନାଆଁରେ ପେଟ୍ରୋଲ ଟାଙ୍କିଟିଏ ଅଥବା କଣ୍ଟ୍ରୋଲ ଦୋକାନଟିଏ ଲେଖି ଦିଅନ୍ତି । କାହା ଶଳାର କିମ୍ବା ସହଧର୍ମିଣୀଙ୍କର ବଦଳି ବନ୍ଦ କରି ଦିଅନ୍ତି । ନିର୍ବାଚନ ପାଇଁ ଟଙ୍କା ସାହାଯ୍ୟ ଦେଇ ଛାତ୍ରନେତାମାନଙ୍କୁ ଦୟା କରନ୍ତି । ମାସକୁ ମାସ ଭତ୍ତା ଦେଇ ସେମାନେ ସାହିରେ ଷଣ୍ଢମାନଙ୍କୁ ପାଳୁଥାନ୍ତି । ଟେକା ଫୋପଡ଼ା ଫୋପଡ଼ି କିମ୍ବା ସଭା ଭଙ୍ଗାଭଙ୍ଗି ବେଳେ ଏହି ଷଣ୍ଢମାନେ ଭାରି କାମରେ ଆସନ୍ତି । ପୁଲିସ ଯାହା କରି ପାରେ ନାହିଁ, ସେମାନେ ସେକଥା କରିପାରନ୍ତି ।

ସବୁଠାରୁ ଉପରେ ବସିଥିବା ଦୟାଳୁ ହେଉଛି ସବୁଠାରୁ ବଡ଼ ନେତା । କାରଣ ତାହାରି ହାତରେ ସବୁଠାରୁ ଅଧିକ କ୍ଷମତା, - ଯେଉଁ ରାଜନୀତି ଏମିତି ଏକ ଅସରଣ ଭିତରେ ଚାଲୁଥାଏ, ସେହି ରାଜନୀତିକୁ ଆମର ପ୍ରକୃତରେ ଦୟା କରିବା ଉଚିତ । ମାତ୍ର, ଅସଲ ରାଜନୀତିରେ ନେତୃତ୍ୱ କଦାପି ଯା'ର ବା ତା'ର ହୋଇ ରହିନଥାଏ । ନେତୃତ୍ୱ କୌଣସି ଏକ ରାଜନୀତିକ ସତ୍ୟର ହୋଇ ରହିଥାଏ । ସେହି ସତ୍ୟର ସମ୍ମୁଖରେ ଏକ ଭବିଷ୍ୟଚିତ୍ର ରହିଥାଏ ଏବଂ ସେହି ଚିତ୍ରଟି ଅନୁସାରେ ସଂପୃକ୍ତ ସମସ୍ତଙ୍କ ଭିତରେ ଏକ ସଂକଳ୍ପ ବି ରହିଥାଏ । ତେବେଯାଇ ରାଜନୀତିକୁ ଶକ୍ତି ମିଳେ, ଶକ୍ତିମାନ୍‌ମାନଙ୍କୁ ଏକତ୍ର ଜୁଟାଇ ଏକ ରାଜନୀତିକ ଦଳ ଗଢ଼ିଉଠେ ଏବଂ ସେହି ଦଳଦ୍ୱାରା ହିଁ ବହୁତ କିଛି ସମ୍ଭବ ହୁଏ । ସେଥିରେ କେହି କାହାରି ଗୋଲାମ ହୋଇ ରହିନଥାନ୍ତି, କେହି କାହାରି ଦୟାରେ ଥାନଟିଏ ପାଇନଥାଏ ବା ପଗଡ଼ିଟିଏ ପିନ୍ଧି ନଥାଏ । ଅସଲ ସଂକଳ୍ପଟି ପାଖରେ ଅର୍ଥାତ୍ ସତ୍ୟଟି ପାଖରେ ହିଁ ସମସ୍ତେ ବନ୍ଧାହୋଇ, ଅଙ୍ଗୀକାରବଦ୍ଧ ହୋଇ ରହି ଥାଆନ୍ତି । ସେହି ଅଙ୍ଗୀକାରବଦ୍ଧତାରୁ ହିଁ ସାଧୁ ଏବଂ ଅସାଧୁର ବିଚାର ହୁଏ । ଅସଲ ଯୋଗ୍ୟତାର ବିଚାର ତାହାରି ଦ୍ୱାରା ହୁଏ ।

ତୁମେମାନେ କ'ଣ ଭାବୁଛ, ଏଠି ତୁମେ ରାଜନୀତିକୁ ଚିରଦିନ ଦୟା ଦ୍ୱାରା ଦୂଷିତ କରି ରଖି ପାରିବ ? ଅବଶ୍ୟ ଏକଥା ସତ ଯେ, ଯେଉଁଠି ପଇସା ଦେଇ ଗଦ ଦେଇ ମଣିଷମାନଙ୍କ ମୁହଁକୁ ବାନ୍ଧିଦେଇ ହେଉଥିବ, ଯେଉଁଠି ଇଜ୍ଜତ୍ ହରାଇବାଟା ମଣିଷର ସବୁଠାରୁ ବଡ଼ ସର୍ବନାଶ ବୋଲି ଅନୁଭୂତ ହେଉନଥିବ, ସେଠି ରାଜନୀତି ଦୟାରେ ହିଁ ଚାଲିବ, ସେଠି ରାଜନୀତି ଦୂଷିତ ହୋଇ ରହିବାକୁ ବାଧ୍ୟ ହେବ । ଗୋଲାମମାନେ ସାଆନ୍ତ ହୋଇ ବସିଥିବେ । ଗୋଲାମମାନେ କଂସପରି ଦୃଶୁଥିବେ, ଶାସନ କରିବାରେ ଲାଗିଥିବେ । ତଥାପି କୃଷ୍ଣ ଥିବେ, ଆମରି ଭିତରେ ରହି ଆହ୍ୱାନ ଦେବାରେ ଲାଗିଥିବେ, ଅପେକ୍ଷା କରି ରହିଥିବେ ।

୫।୬।୮୮

# ସାହିତ୍ୟ-ବାଇଆ

ଜଣେ ଜଣେ ମଣିଷ ସାହିତ୍ୟକୁ ନେଇ ଏଡ଼େ ଅଥୟ ଓ ବିଧୁର ହୋଇପଡ଼ନ୍ତି କାହିଁକି କେଜାଣି ? ଯେଉଁ ଦେଶରେ ସାହିତ୍ୟ ନିନ୍ଦିତ, ସେହି ଦେଶରେ ସବୁକିଛି ନିନ୍ଦିତ ବୋଲି କାହିଁକି କହି ବୁଲୁଥାନ୍ତି କେଜାଣି ? ଯୋଉ ଦେଶରେ ସର୍ବମୋଟ ଲୋକସଂଖ୍ୟାର ଅଧିକରୁ ଅଧିକ ମଣିଷ ନିତି ଅପମାନିତ ହେଉଥାନ୍ତି, ଭୋକରେ ରହନ୍ତି, ଗଣ୍ଡାଏ ଅନ୍ନ ଯୋଗାଡ଼ କରିବାର ଆବର୍ତ୍ତ ଭିତରେ ଘେରା ବୁଲିବାରେ ଲାଗିଥାନ୍ତି, ସେହି ଦେଶ ଏକ ଅସଭ୍ୟ ବା ଅଯୋଗ୍ୟ ଦେଶ ବୋଲି କୁହାହେଲା ବେଳକୁ ସେମାନେ କୋଉଠି ଲୁଚି ରହିଥାନ୍ତି କାହିଁକି କେଜାଣି ? ଅଥବା ଦେଶର ସାହିତ୍ୟକୁ ଏଡ଼େ ବା ଏଡ଼େ ବଡ଼ ବୋଲି କହି ସେମାନେ ଆଉକୌଣସି ନିଷ୍ଠୁର ସତ୍ୟକୁ ଘୋଡ଼ାଇ ରଖିବାକୁ ଇଚ୍ଛା କରୁଥାନ୍ତି କି ? ତଥାକଥିତ ସାହିତ୍ୟ ପ୍ରତି ନିଜର ଅତି-ଅଧିରତା ଦେଖାଇ ସେମାନେ ନିଜର କୌଣସି ଅପରାଧବୋଧକୁ ଫାଙ୍କିଦେଇ ରହିବାଲାଗି ମନ କରିଥାନ୍ତି କି ?

ଏହି ଦେଶରେ ଅସଲ ସତ୍ୟଗୁଡ଼ିକୁ ଯେତିକି ଯେତିକି ଉପେକ୍ଷା କରାଯାଉଛି ଅଥବା ଘୋଡ଼େଇ ପକାଇବାର ଚେଷ୍ଟା କରାଯାଉଛି, ଏଣେ ସେତିକି ଅଧିକ ଅଥୟ ଭାବରେ ଏଠି ଥୋକେ ମଣିଷ ସାହିତ୍ୟର କଥା କହୁଛନ୍ତି । ବର୍ତ୍ତମାନର ବହୁବିଧ ଚଳାଖପଣିଆ ଦ୍ୱାରା ଏଠାରେ ଭବିଷ୍ୟତଗୁଡ଼ାକୁ ଯେତିକି ଭଣ୍ଡୁର କରି ଦିଆଯାଉଛି, ସେତିକି ଅଧିକ ଭାବପ୍ରବଣତା ଦେଖାଇ ଥୋକେ ମଣିଷ ସାହିତ୍ୟର ଆର ଦୁଆରେ ପରସ୍ପରକୁ କୁଣ୍ଢାଇ ଧରିଛନ୍ତି ଓ ସାହିତ୍ୟର ନାମରେ ବାହୁନି ହେଉଛନ୍ତି । ଏହି ଦେଶରେ ସାହିତ୍ୟକୁ କେହି ପଚାରିଲେ ନାହିଁ ଏବଂ ସାହିତ୍ୟକମାନଙ୍କୁ କେହି ଯଥାର୍ଥ ଆଦର ଓ ସମ୍ମାନ ଦେଖାଇଲେ ନାହିଁ ବୋଲି ଝୁରି କରୁଛନ୍ତି । ସଭାମାନଙ୍କରେ ସେମାନଙ୍କ ବ୍ୟତୀତ ହୁଏତ ଆଉ କେହିହେଲେ ନାହାନ୍ତି । ତଥାପି ସେମାନେ କଥାରେ କେତେ ଅଳଙ୍କାର ଲଗାଇ କେତେ ରୋଦନ କରୁଛନ୍ତି । ଜାତିକୁ ସମ୍ବୋଧନ କରି କେତେ କ'ଣ କହୁଛନ୍ତି । ମାତ୍ର, ଜାତିଠାରୁ ସେମାନେ ପ୍ରକୃତରେ କେତେ ଦୂରଛଡ଼ା ହୋଇ ରହିଛନ୍ତି ! ଜାତି କହିଲେ ଯଦି ସବାଆଗ ମଣିଷମାନଙ୍କୁ ବୁଝାଏ, ତେବେ ସେମାନେ ସେହି ମଣିଷମାନଙ୍କଠାରୁ କେତେ ଦୂରରେ ଯାଇ ଛିଡ଼ା ହୋଇଛନ୍ତି ! ସାହିତ୍ୟକୁ ସତେଅବା ଏକ ଅଲଗା ସୁଆଙ୍ଗ ବୋଲି ଭାବୁଛନ୍ତି ଏବଂ ତାହାରି ଆଳରେ ମଣିଷମାନଙ୍କଠାରୁ ଅଲଗା ହୋଇ ରହିବାକୁ ମନ କରୁଛନ୍ତି । ଦେଶଯାକ ବସ୍ତ୍ର ବିହୁନେ ଫୁଙ୍ଗୁଳା ପଡ଼ିଥିବା ସମୟରେ ସେମାନେ ଯୋଡ଼ ପିନ୍ଧି, ଅଲଗା କବାଟ କିଳି,

କପାଳରେ ଚନ୍ଦନଟୋପି ମାରି, ବହୁବିଧ ପୁଲକରେ କଲବଲ ହୋଇ ସାହିତ୍ୟ କରିବାରେ ଲାଗିଛନ୍ତି ।

ସାହିତ୍ୟଘରେ ସାହିତ୍ୟ କରୁଥିବା ବାବୁମାନଙ୍କର ମଧ୍ୟ ଏହି ଦେଶରେ ଅଧିକାଂଶ ମଣିଷଙ୍କୁ ହୀନମାନ କରି ରଖିବାରେ ଅବଶ୍ୟ ଭାଗ ରହିଛି । ସମାଜରେ ନାନା ଅପରାଧରେ ଅପରାଧୀ ହୋଇ ଅର୍ଥାତ୍ ସମାଜରେ କେଡ଼େ ଟାଣ ହୋଇ ଘୋଟି ରହିଥିବା ସକଳ ଅନ୍ଧକାରରୁ ସମ୍ଭାବ୍ୟ ସକଳ ଲାଭ ଉଠାଇ ଯେଉଁମାନେ ସାହିତ୍ୟନାମକ ଜଗମୋହନ ଭିତରେ ଅଲଗା ହୋଇ ଗଞ୍ଜେଇ ଖାଉଛନ୍ତି, ସେମାନେ ସତକୁ ସତ ବାଇଆ ହୋଇ ଯାଇଛନ୍ତି । ସେମାନେ ସାହିତ୍ୟର ମାଧ୍ୟମରେ ତୁଚ୍ଛା ନିଜକୁ ନେଇ ବାଇଆ ହୋଇ ରହିଛନ୍ତି । ଅସଲ ସାହିତ୍ୟ ମଣିଷକୁ ଲୋଡ଼ନ୍ତା; ଖାଲି ଗପ ବା ଖାଲି କବିତାରେ ନୁହେଁ, ଜୀବନରେ ମଧ୍ୟ ଲୋଡ଼ନ୍ତା । ଏହି ଅସଲ କଥାଟିକୁ ଆମ ବାଇଆମାନଙ୍କୁ କିଏ କିପରି ବୁଝାଇ ପାରିବ ? କିଏ ସେମାନଙ୍କୁ ସେମାନଙ୍କର ସେହି ବିସ୍ମରଣର ବଣଭିତରୁ ଆମର ଅସଲ ଘରଗୁଡ଼ିକୁ ଡାକି ଆଣି ପାରିବ ?

୧୨।୬।୮୮

# ମନ୍ତ୍ରୀ ସ୍ୱପ୍ନ ଦେଖନ୍ତି !

ମନ୍ତ୍ରୀ ଯେତେବେଳେ ସ୍ୱପ୍ନ ଦେଖନ୍ତି, ସେତେବେଳେ ସତେଅବା କେତେ ନା କେତେ ଫୁଲି ଉଠିଥିଲା ପରି ଦେଖାଯାଆନ୍ତି ଓ କେଡ଼େ କେଡ଼େ ସ୍ୱପ୍ନମାନ ଦେଖନ୍ତି । ଏତେଟା ବର୍ଷରେ ସେ ରାଜ୍ୟଟାକୁ ଦେଶରେ ସବୁଠାରୁ ଅଧିକ ସମୃଦ୍ଧିମନ୍ତ ରାଜ୍ୟରେ ପରିଣତ କରିଦେବେ, ଏଠାରେ ଜଣେ କେହି ବେକାର ରହିବ ନାହିଁ, ଘର ଘରକୁ ରେଳ ଲାଇନ୍ ଓ ଉଡ଼ାଜାହାଜ ଲାଇନ ତିଆରି ହୋଇଯିବ, ନୂଆ ନୂଆ ଶିଳ୍ପ ମୁଣ୍ଡ ଟେକି ଆକାଶଟାକୁ ପୋତି ପକାଇବେ, ଲୋକମାନେ ଖାଲି ସୁଖ ଭିତରେ ରହିବେ, ତୁଚ୍ଛା ସୁଖ ଭିତରେ ଭାସୁଥିବେ ଓ କାହାରି ଦୁଃଖ ବୋଲି ଆଦୌ କିଛିହେଲେ ରହିବ ନାହିଁ – ମନ୍ତ୍ରୀ ଏହିପରି କେତେ କେତେ ସ୍ୱପ୍ନ ଦେଖୁଥାନ୍ତି । ସିଏ କଥା କହିଲାବେଳେ ସଭାଟାଯାକ ଖାଲି ବସନ୍ତରତୁ ଚରି ଯାଇଥିଲା ପରି ମନେ ହେଉଥାଏ । ମନ୍ତ୍ରୀ କ୍ଷମତାରେ ଥାଆନ୍ତି, ଥାନରେ ଥାଆନ୍ତି, ତେଣୁ ତାଙ୍କୁ କେବେହେଲେ ଆଦୌ କିଛିହେଲେ ଅସମ୍ଭବ ବୋଲି ମନେ ହୁଏ ନାହିଁ ।

ମନ୍ତ୍ରୀ ଆଜି ଅଛନ୍ତି, କାଲିକି ନଥିବେ । ସିଏ ଆସନରୁ ଚାଲିଯିବା ପରେ ତାଙ୍କର ବଖାଣିଥିବା ସ୍ୱପ୍ନଗୁଡ଼ିକ ବିଷୟରେ ତଲବ ମାଗିବା ପାଇଁ କାହାରି କୌଣସି ଅଧିକାର ନଥିବ । ସିଏ ଆସନରୁ ଯିବା ସଙ୍ଗେ ସଙ୍ଗେ ତାଙ୍କର ସ୍ୱପ୍ନମାନେ ବି ବିଦା ହୋଇ ଚାଲିଯିବେ । ତଥାପି ଏହି ରାଜ୍ୟ ରହିଥିବ, ରାଜ୍ୟବାସୀ ଥିବେ - ସାରା ପୃଥିବୀରେ, ସବୁ ଦେଶରେ, ସବୁ ରାଜ୍ୟରେ ମଣିଷମାନେ ଅଲବତ ରହିଥିବେ । ଆଦୌ କୌଣସି କ୍ଷମତାରେ ନଥାଇ ମଧ୍ୟ ସେମାନେ ବି କେତେ କେତେ ସ୍ୱପ୍ନ ଦେଖୁଥିବେ । କୃଷକଟିଏ ସ୍ୱପ୍ନ ଦେଖୁଥିବ । ଗାଆଁଟିଏ ସ୍ୱପ୍ନ ଦେଖୁଥିବ । ଉଦରଟିଏ ଭରିବାର ସ୍ୱପ୍ନ ଦେଖୁଥିବ । ଯାହାର ଘର ଖଣ୍ଡିଏ ନାହିଁ, ସିଏ ଘରଖଣ୍ଡିଏ ପାଇବାର ସ୍ୱପ୍ନ ଦେଖୁଥିବ । ଯାହାର ଜମି ଖଣ୍ଡିଏ ନାହିଁ, ସିଏ ଜମି ଖଣ୍ଡିଏ ପାଇବାର ସ୍ୱପ୍ନ ଦେଖୁଥିବ । ଯୋଉ ଗାଆଁରେ ପିଇବା ପାଣି ମିଳୁନାହିଁ, ସେହି ଗାଆଁ ପିଇବା ପାଣିର ସ୍ୱପ୍ନ ଦେଖୁଥିବ । ଇସ୍କୁଲ ବାହାରେ ଲଙ୍ଗଳା ହୋଇ ବୁଲୁଥିବା କେତେ କେତେ ପିଲା ଇସ୍କୁଲ ଘରେ ବସି ପାଠ ପଢ଼ିବାର ସ୍ୱପ୍ନ ଦେଖୁଥିବେ । ମନ୍ତ୍ରୀମାନେ ଆସୁଥିବେ, ଯାଉଥିବେ; କେତେ କଅଣ ହୋଇ ଆସୁଥିବେ ଓ କେତେ ଚଞ୍ଚଳ ପାସୋର ଯାଉଥିବେ । ମାତ୍ର ମଣିଷର, ତୁମର, ଆମର ଏହି ସ୍ୱପ୍ନଗୁଡ଼ିକ ଅବ୍ୟାହତ ରହିଥିବ, ପୃଥିବୀଗୋଟାକୁ ଉଦ୍‌ବେଳିତ କରି ରଖିଥିବ ।

ମଣିଷ ଭିତରେ ଛପି ରହିଥିବା କବିଟିଏ ବି ସ୍ୱପ୍ନ ଦେଖୁଥିବ । ସିଏ ଏମିତି ଗୋଟିଏ ପୃଥିବୀର ସ୍ୱପ୍ନ ଦେଖୁଥିବ, ଯେଉଁଠାରେ ମ୍ଲେଚ୍ଛ ବୋଲି କେହି ରହିବେ ନାହିଁ, ଯୋଉଠି କେହି କାହାରିକୁ ଗିଳି ପକାଇବାକୁ ମୋଟେ ମନ କରିବେ ନାହିଁ । ଯୋଉଠି ରାଜନୀତିର ଦାଉ କମିଯିବ, ରାଜନୀତି ମଣିଷମାନଙ୍କର ସେବା ଖଟିବ, ଯୋଉଠି ଭୀରୁ ହେବା ହିଁ ମଣିଷ ଲାଗି ସବୁଠାରୁ ବଡ଼ ଲଜ୍ଜା ବୋଲି ସ୍ୱୀକୃତ ହେବ, —ଏହିସବୁ ସ୍ୱପ୍ନକୁ କବି ଆବହମାନ କାଳରୁ ଦେଖି ଆସିଛି । ରାଜାମାନେ, ମନ୍ତ୍ରୀମାନେ ଆସିଛନ୍ତି, ପାସୋର ଯାଇଛନ୍ତି; ମାତ୍ର କବିର ସ୍ୱପ୍ନ କେବେହେଲେ ପାସୋର ଯାଇନାହିଁ । ସେହି ସ୍ୱପ୍ନ ବାର ବାର ପୃଥିବୀର ଶାନ୍ତିଭଙ୍ଗ କରିଛି, କେତେ କଅଣ ଭାଙ୍ଗି ତା ଥାନରେ ଆହୁରି କେତେ କଅଣ ଗଢ଼ି ଥୋଇଦେବ ବୋଲି ମଣିଷକୁ ଯୁଗେଯୁଗେ ଉଚ୍ଛନ୍ନ କରି ପକାଇଛି । ଅଳପରେ ମୋଟେ ସନ୍ତୁଷ୍ଟ ହୋଇନାହିଁ, ବାମନ ହୋଇ ବଳୀକୁ ଚାପିଛି, କୃଷ୍ଣ ହୋଇ କଂସକୁ ବଧିଛି । ଜୟ କେବଳ ସେହି ସ୍ୱପ୍ନର ହିଁ ହୋଇଛି ।

୧୯/୬/୮୮

# କେଡ଼େ କେଡ଼େ ଯୋଗ୍ୟ ଲୋକ !

ଆଗେ ପରାଧୀନ ଭାରତରେ ଏତେ ବଡ଼ ବଡ଼ ପଦ ନଥିଲା । ଭାରତ ସ୍ୱାଧୀନ ହେବା ପରେ ବଡ଼ ବଡ଼ ପଦର ସୃଷ୍ଟି ହେଲା । ବଡ଼ ବଡ଼ ପଦ ଅର୍ଥାତ୍ ବଡ଼ ବଡ଼ ଚାକିରି; ଯେତେ ବଡ଼ ଚାକିରି, ସେତିକି ବେଶୀ ଦରମା ଏବଂ ଯିଏ ଯେତେ ବେଶୀ ଦରମା ପାଉଛି, ସିଏ ସେତିକି ବଡ଼ ପଦ ପାଇଛି ଓ ତାହାକୁ ସେତିକି ବେଶୀ ଯୋଗ୍ୟ ବୋଲି କୁହାଯାଉଛି । ଏହିପରି ଏକ ଅଙ୍କଗଣିତ ଅନୁସାରେ ଆମ ଦେଶରେ ବହୁତ ଯୋଗ୍ୟ ଲୋକ ରହିଛନ୍ତି । ଯୋଗ୍ୟ ମନୁଷ୍ୟମାନଙ୍କର ସଂଖ୍ୟା ବଢ଼ାଇବା ପାଇଁ ଅଧିକରୁ ଅଧିକ ବଡ଼ ପଦମାନ ସୃଷ୍ଟି କରାଯାଉଛି । ରାଜ୍ୟସ୍ତରରେ ବଡ଼ ପଦମାନ ରହିଛି, ସର୍ବଭାରତୀୟ ସ୍ତରରେ ମଧ୍ୟ ରହିଛି । ସାନ ଓଡ଼ିଶାରେ ଏହିପରି ଜଣେ କିଏ ସର୍ବଭାରତୀୟ ସ୍ତରରେ ବଡ଼ ପଦଟିଏ ପାଇଗଲା ତ ତାହାକୁ କେବଳ ସେହି ବ୍ୟକ୍ତିବିଶେଷର ଭାଗ୍ୟ ବୋଲି ନୁହେଁ, ସମଗ୍ର ଓଡ଼ିଶାର ଭାଗ୍ୟ ବୋଲି କୁହାଯାଉଛି ।

ବ୍ରିଟିଶ ଶାସନ ଅମଳରେ ମଧ୍ୟ ବଡ଼ ବଡ଼ ପଦ ରହିଥିଲା । ମାତ୍ର ସେହି ପଦଗୁଡ଼ିକୁ ନିୟମତଃ ଭାରତୀୟମାନଙ୍କୁ ଦିଆଯାଉ ନଥିଲା । ସେଗୁଡ଼ିକ ତୁଚ୍ଛା ବିଲାତୀ ମଣିଷଙ୍କ ପାଇଁ ରହିଥିଲା । ତଥାପି ଭାଗ୍ୟର ଅନୁଗ୍ରହ କିଞ୍ଚିତ୍ ଚିରିକି ପଡ଼ି ଯଦି ସେତେବେଳେ କୋଉ ଭାରତୀୟକୁ ଡିପୋଟି ବା ଦାରୋଗା ଚାକିରିଟାଏ ବି ମିଳି ଯାଉଥିଲା, ତାହାକୁ କେଡ଼େ ବଡ଼ କ'ଣ ବୋଲି ବିଚାର କରାଯାଉଥିଲା । ଓଡ଼ିଶାରେ ସାଧାରଣ ମୁନସିଫ୍ ଚାକିରିଟାଏ ବି ଓଡ଼ିଆମାନଙ୍କୁ ମିଳୁ ବୋଲି ଓଡ଼ିଶାର ଯୋଗ୍ୟତା ଓ ମର୍ଯ୍ୟାଦାକୁ ଉପରକୁ ଉଠାଇବା ଲାଗି ତତ୍କାଳୀନ ସମସ୍ତଙ୍କଠାରୁ ଅଧିକ ଇଚ୍ଛା କରୁଥିବା ମଧୁବାବୁ ସେତେବେଳେ କାଉନ୍‌ସିଲ୍‌ରେ ସାହେବ କର୍ତ୍ତାମାନଙ୍କ ଆଗରେ କେତେ ଯୁକ୍ତି ବାଢ଼ି କେତେ ଗୁହାରି କରିଥିଲେ ।

ସମ୍ଭବତଃ ସେହି କାଳରୁ ଓଡ଼ିଶାବାସୀଙ୍କ ମନରେ ଅନୁରୂପ କେତେଟା କେଁ ରହିଯାଇଛି ବୋଲି ଏବେ ମଧ୍ୟ କେହି ଓଡ଼ିଆ ଓଡ଼ିଶାରେ ବା ଓଡ଼ିଶା ବାହାରେ ବଡ଼ ପଦଟାଏ ଅର୍ଥାତ୍ ଚାକିରିଟାଏ ପାଇଗଲେ ଆମେ ତାକୁ କେଡ଼େ ଯୋଗ୍ୟ ବୋଲି କହୁଛୁ, ଖବରକାଗଜରେ ମଧ୍ୟ ତା'ର କେତେ ପ୍ରଶଂସା କରାଯାଉଛି ।

କେଡ଼େ କେଡ଼େ ପଦ ଓ ଆସନରେ ବସିଥିବା କେତେ କେତେ ଯୋଗ୍ୟ ଲୋକ ଏକାଠି ମିଶି ପୂରା ଦେଶଟାକୁ ଏମିତି ଅଯୋଗ୍ୟ ଭାବରେ କେଡ଼େ ନରଖର

କରି ପକାଇଲେ ଆପଣ କହନ୍ତୁ ତ ! ଅଥବା, ଅପାଳକ ଏପରି ପଡ଼ିଲା ଯେ, ପ୍ରକୃତରେ ଯୋଗ୍ୟ ବ୍ୟକ୍ତିମାନେ ପଛକୁ ରହିଗଲେ । ଅଧିକାଂଶ କ୍ଷେତ୍ରରେ ଧୁଣ୍ଡା ଓ ହୁଣ୍ଡାମାନେ ଆଗକୁ ଆଗକୁ ମାଡ଼ି ଆସିଲେ ଓ ଉପରକୁ ଉପରକୁ ଯାଇ ଟକା ଜମାଇ ଦେଲେ । ସେମାନେ ଦୁଃଶାସନ ହେଲେ । ପ୍ରକୃତରେ ଯୋଗ୍ୟ ମଣିଷ ତା' ଆସନଟିକୁ ମଧ୍ୟ କେତେ କେତେ ମର୍ଯ୍ୟାଦା ଆଣିଦିଏ । ବଡ଼ ବଡ଼ ଆସନକୁ କାମୁଡ଼ି ଧରିପାରିଲେ ଓ ଅଧିକରୁ ଅଧିକ ଧନ ଘରକୁ ବୁହାଇ ନେଇ ପାରିଲେ ଯେ ଜଗତରେ ଯୋଗ୍ୟ ବୋଲାଇ ହୁଏ, ଏହି ମନ୍ଦ ପାଞ୍ଚଟାକୁ ଏହି ଦେଶରେ ଆଣି କିଏ ପୂରାଇଲା ?

ଓଡ଼ିଶା ସମେତ ଆମ ଦେଶ ଏବେ ହୁଏତ ଏପରି ଅନ୍ୟପ୍ରକାରର ଯୋଗ୍ୟ ଲୋକମାନଙ୍କୁ ବେଶୀ ଦରକାର କରୁଛି, ଯେଉଁମାନେ କି ସତକୁ ସତ ଯୋଗ୍ୟ ହୋଇଥିବେ, ଗୋଟାଏ ବଡ଼ ପଦକୁ ପାଇଗଲେ ଓ ଶଗଡ଼େ ପଇସା ବୋହି ଆଣିଲେ ମଣିଷ ଆପେ ଆପେ ଯୋଗ୍ୟ ହୋଇଯାଏ ବୋଲି ଯେଉଁମାନଙ୍କୁ ଭାବିବାକୁ ମଧ୍ୟ ଲାଜ ଲାଗୁଥିବ । ପ୍ରକୃତରେ ଯୋଗ୍ୟ ଜଣେ ମଣିଷ ବଡ଼ପଦରେ ଥାଉ ଅଥବା ସାନ ପଦଟିରେ ଥାଉ, ଆପଣାର ଯୋଗ୍ୟତା ଦ୍ୱାରା, ନିଷ୍ଠାଦ୍ୱାରା ସେହି ପଦଟିକୁ ପ୍ରକୃତରେ ମର୍ଯ୍ୟାଦାବନ୍ତ କରିବାକୁ ସମର୍ଥ ହୁଏ । ବର୍ତ୍ତମାନ ପରି ଅତ୍ୟଧିକ ଉଚ୍ଚ ଥାନର ସୃଷ୍ଟି କରି ସେଠି ଏଡ଼େ ଏଡ଼େ ବଳଦଙ୍କୁ ନେଇ ବାନ୍ଧିଲେ ତଦ୍ୱାରା ଘରୁ ଲକ୍ଷ୍ମୀ ଛାଡ଼ିଯିବାହିଁ ସାର ହୁଏ ।

୨୭।୭।୮୮

# ଅବସର ବାସରେ

ଆଗେ ମଣିଷମାନେ ବୟସ ଗଡ଼ିଗଲେ ବାନପ୍ରସ୍ଥ ଗ୍ରହଣ କରୁଥିଲେ । ବାନପ୍ରସ୍ଥ ଗ୍ରହଣ କରି ସବୁ ମଣିଷ ସତକୁ ସତ ବନକୁ ଚାଲିଯାଉଥିଲେ ବୋଲି ଅବଶ୍ୟ ଶାସ୍ତ୍ରରେ କିଛି ସ୍ପଷ୍ଟକରି ଲେଖା ହୋଇନାହିଁ । ଶାସ୍ତ୍ରରେ ତ କେବଳ ପରାମର୍ଶ ହିଁ ଦିଆ ହୋଇଥାଏ ଏବଂ ଋଷିମାନେ ସେହି ପରାମର୍ଶ ଦେଇଥାନ୍ତି । ତଥାପି, ବାନପ୍ରସ୍ଥକୁ ସତକୁ ସତ ବଣକୁ ଚାଲିଯିବା ଅର୍ଥରେ ନବୁଝି ଜୀବନ ପ୍ରତି ଜୀବନର ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଏକ ବିଶେଷ ଦୃଷ୍ଟିକୋଣ ବୋଲି ମଧ୍ୟ ବୁଝାଯାଇ ପାରିବ । ଅର୍ଥାତ୍, ଆସକ୍ତି କମି ଆସିବ, କେବଳ ଆପଣାର ପରିବାରରୂପୀ କୂପଟି ମଧ୍ୟରେ ସଢେଇବା ଏକ ମଣ୍ଡୁକବତ୍ ଜୀବନର ଯାବତୀୟ କଥା ବିଷୟରେ ନଭାବି ମନୁଷ୍ୟ ବୃହତ୍ତର ପୃଥିବୀଟି ବିଷୟରେ ମଧ୍ୟ ଭାବିବ, ଆପଣା ଜୀବନର କିଛିତ ସମୟ ସିଏ ଏଣିକି

ସର୍ବଜନକଲ୍ୟାଣ ପାଇଁ ଦେବ, ଇତ୍ୟାଦି, ଇତ୍ୟାଦି । ବାନପ୍ରସ୍ଥ ଗ୍ରହଣ କରିବା ପୂର୍ବରୁ ଯଦି ସେକଥା ସମ୍ଭବ ନହୋଇଛି, ଯଦି ଆପଣାର ଭୋଗଗାତଟି ଭିତରେ ବାର ପ୍ରକାରର ତାତ୍କାଳିକ ଲାଭ ଓ ସିଦ୍ଧି ଭିତରେ ହନ୍ତସନ୍ତ ହୋଇ ରହିବା ବ୍ୟତୀତ ଜଣେ ମଣିଷ ଯୌବନ ବା ଗାର୍ହସ୍ଥ୍ୟ କାଳରେ ମୋଟେ କିଛି ହେଲେ କରିପାରିନାହିଁ, ତେବେ ଭୋଗି ଭୋଗି ଗାତଟା ଚିକିଟା ଲାଗିବା ପରେ ସିଏ ହୁଏତ ଅନ୍ୟକୌଣସି ଆଡ଼କୁ ମନଦେଇ ପାରିବ, ସମ୍ଭବତଃ ଏହି ଆଶାରେ ସମାଜରେ ଚକ୍ଷୁଥିବା ମଣିଷମାନେ ତାକୁ ସେହିପରି ପରାମର୍ଶଟିଏ ଦେଇଥିଲେ ।

କିନ୍ତୁ ଅବସର ଗ୍ରହଣ କରିବା ପରେ ଆପଣ ଆମ ସମାଜରେ କୌଣସି ମଣିଷର ସମ୍ପର୍କରେ ଆସିଛନ୍ତି ? ଅବସର ଗ୍ରହଣ କରିବା କହିଲେ ଏଠାରେ ଚାକିରିରୁ ହିଁ ଅବସର ଗ୍ରହଣ କରିବାକୁ ବୁଝାଏ । ଗୋଟାଏ ବୟସ ଆସି ପହଞ୍ଚିଗଲେ ବାଧ୍ୟହୋଇ ଅବସର ଗ୍ରହଣ କରିବାକୁ ହୁଏ । ଭୋଗଘରର ଘାଆଗୁଡ଼ାକ ହୁଏତ ତଥାପି କଞ୍ଚା ଥାଏ । ତେଣେ ଦଶଟା ଭୁଜ ଛିଣ୍ଡିଯାଇ ମଣିଷ ସତେଅବା ଏକଭୁଜ ହୋଇ ଯାଇଥାଏ । କ୍ଷମତା ନଥାଏ, ଅଧସ୍ତନ ଆଜ୍ଞାକାରୀମାନେ ନଥାନ୍ତି । ତେଣୁ ନିଜ ବିଷୟରେ କେବଳ ନିଜକୁ ହିଁ ଚିନ୍ତା କରିବାକୁ ପଡ଼େ । କେବଳ ନିରାପତ୍ତାର ଚିନ୍ତା, କେବଳ ମୃତ୍ୟୁର ହିଁ ଚିନ୍ତା ଏବଂ ସବୁକିଛି କେବଳ ଅତ୍ୟନ୍ତ ଆତ୍ମକେନ୍ଦ୍ରିତ ଚିନ୍ତା । ଆଖିଗୁଡ଼ାକ ସତେ ଅବା ଭାରି ଛୋଟ ଛୋଟ ହୋଇ ଯାଇଥାଆନ୍ତି । ଗୋଡ଼ତଳ ମାଟି ଗୁଡ଼ାକ ସତେଅବା ଖସି ଖସି ଯାଉଥିବା ପରି ଅନୁଭବ ହେଉଥାଏ । ସେତେବେଳେ ମଧ୍ୟ ପୃଥିବୀ ପାଇଁ ବଞ୍ଚିବା ବା ନିଜ ବିଷୟରେ ଅନ୍ତତଃ କିଞ୍ଚିତ୍ ନିରାସକ୍ତ ହେବା ସମ୍ଭବ ହୋଇ ପାରେନାହିଁ ।

ଅନ୍ୟ ପକ୍ଷରେ, ଯେଉଁମାନେ ଯୌବନ ପଶୁ ପଶୁ ହିଁ ମୃତ୍ୟୁର ଚିନ୍ତା କରନ୍ତି, ସେମାନେ ମଧ୍ୟ ଆହୁରି କେଡ଼େ ଉତ୍କଟ ଭାବରେ ଆତ୍ମକେନ୍ଦ୍ରୀ ନହୋଇଥିବେ । ଯୌବନ କାଳରେ ମୃତ୍ୟୁର ଚିନ୍ତା, ଅପରାହ୍ଣର ଚିନ୍ତା ଏବଂ ନିଃସଙ୍ଗତାର ଚିନ୍ତା କରିବାକୁ ଏବେ ଆମ ଦେଶରେ କବିତାର କ୍ଷେତ୍ରରେ ଆଧୁନିକତା ବୋଲି କୁହାଗଲାଣି । ସେହି ଆଧୁନିକମାନେ ଆପଣାର ତ୍ରାସ ଓ ସ୍ୱାର୍ଥର ଗାରଗୁଡ଼ିକରୁ ବାହାରି ବୃହତ୍ତର ପୃଥିବୀର ଚିନ୍ତା କରିବାକୁ ଏକ ରୋମାଣ୍ଟିକ୍ ଅନାବଶ୍ୟକତା ବୋଲି କହିଥାନ୍ତି । ମୃତ୍ୟୁଚିନ୍ତାକୁ ହିଁ ଜୀବନରେ ଅମୋଘତମ ମୁକ୍ତିଦ୍ୱାର ବୋଲି ବିବେଚନା କରନ୍ତି । ସକଳ ପ୍ରକାରର ଆତ୍ମକେନ୍ଦ୍ରୀମାନଙ୍କ ସଦୃଶ ଏମାନେ ମଧ୍ୟ ଜୀବନରୁ ଅବସର ଗ୍ରହଣକରି ସାରିଥାନ୍ତି । କିଳା ଘରଟା ଭିତରୁ ସଂସାରକୁ ଦେଖୁଥାନ୍ତି ଓ ଦୁଃଖିତ ହେବାରେ ଲାଗିଥାନ୍ତି ।

୩/୭/୮୮

# ଜାତିର ଅପମାନ

ବଙ୍ଗଳା 'ଗୀତାଞ୍ଜଳି'କୁ ଓଡ଼ିଆରେ ପରଷ୍ଟୁ ପରଷ୍ଟୁ କୋଉଠି ପ୍ରମାଦ ରହିଗଲା, ତାହାର ସୁମାରି କରାଯାଇପାରେ, ସେହି ପ୍ରମାଦଗୁଡ଼ିକର ଘୋର ନିନ୍ଦା କରା ଯାଇପାରେ; ଏପରିକି, ସେହି ପ୍ରମାଦ ଲାଗି ତର୍ଜମାକାରମାନଙ୍କୁ ଭର୍ତ୍ସନା ମଧ୍ୟ କରାଯାଇପାରେ । ମାତ୍ର, ଏହିସବୁ ପ୍ରମାଦ ନିମନ୍ତେ ଓଡ଼ିଆ ଜାତିର ଅପମାନ ହୋଇଗଲା ବୋଲି କହିବା ଓ ପୁଣି ତାକୁ ଖବରକାଗଜକୁ ଲେଖିକରି ଜଣାଇବାଟାକୁ କେବଳ ଏକ ଘୋର ପ୍ରମାଦପୂର୍ଣ୍ଣ ବିବେଚନା ବୋଲି ହିଁ କୁହାଯାଇପାରେ । ଏପରି କାର୍ଯ୍ୟକୁ ଆଦୌ ଏକ ବିବେଚନା ବୋଲି କୁହାଯାଇପାରିବ କି ନାହିଁ ସେ ବିଷୟରେ ମଧ୍ୟ ବହୁତ ସନ୍ଦେହର ଅବକାଶ ରହିଛି । କେବଳ ଉତ୍ତେଜନାବଶତଃ ଜଣେ ଏପରି କହିପାରେ, ଏବଂ ଉତ୍ତେଜନାଟାହିଁ ଅଗ୍ରାଧିକାର ଲାଭ କଲେ ତେଣେ ବିବେଚନାଘରକୁ ଅନେକ ସମୟରେ ଏକାବେଳେକେ ଭୁଲି ମଧ୍ୟ ହୋଇଯାଏ ।

ଯେତେବେଳେ କୌଣସି କାରଣରୁ ଅସଲ ଅପମାନଗୁଡ଼ାକ ଆଉ ମୋଟେ ନକାଟିବାକୁ ଆରମ୍ଭ କରେ, ସେତିକିବେଳେ ହିଁ ମନୁଷ୍ୟ ନାନା ମିଛ ଅପମାନର ଅବସର ସୃଷ୍ଟି କରିବାକୁ ଭୟଙ୍କର ଭାବରେ ମନ କରିବା ଲାଗି ବଡ଼ ସୁଖ ପାଏ । ଆମ ଆଖି ଆଗରେ ଭଦ୍ରଲୋକମାନେ ଅଭଦ୍ର ହୋଇ ନାଚୁଥାନ୍ତି, ତୁଚ୍ଛା ମିଛୁଆ ଲୋକମାନେ ସତିଆ ହୋଇ ସବା ଉପର ପାହାଚରେ ଯାଇ ବସିଛନ୍ତି, ଲୋକେ ଲାଞ୍ଚ ଦେଉଛନ୍ତି ଓ ଲାଞ୍ଚ ନେଉଛନ୍ତି ଏବଂ ଦୁଇପକ୍ଷର କୁଣ୍ଢିଆକୁଣ୍ଢିରେ ଆମ ସାଧାରଣ ଜୀବନର ଅନ୍ତଃପୁର ଗୁଡ଼ାକ କେତେ କୋତରା ଓ ଅବର୍ଜିଆ ହୋଇ ଚାଲିଛି, ସେଗୁଡ଼ାକ ତ କାହିଁକି କାହାକୁ ଜାତିର ଅପମାନ ବୋଲି ମନେ ହେଉନାହିଁ । ଧୋବ କୁର୍ତ୍ତା ପିନ୍ଧିଥିବା ଓଡ଼ିଆମାନେ ଏକାଠି ହୋଇଥିବା ବେଳେ ପୂରା ଇଂରାଜୀରେ କଥା କହୁଛନ୍ତି । ଓଡ଼ିଶାର ସାହେବମାନେ ସେମାନଙ୍କର ଓଡ଼ିଆ କହିବାର ଅଭ୍ୟାସ ନାହିଁ ଓ ତେଣୁ ସେମାନେ ଇଂରାଜୀରେ କହିବାକୁ ବାଧ୍ୟ ହେଉଛନ୍ତି ବୋଲି ଯେତେବେଳେ ଓଡ଼ିଆମାନଙ୍କର ସଭାରେ କେଡ଼େ ସଣ୍ଟଣାରେ କ୍ଷମା ମାଗୁଛନ୍ତି, କାହିଁ ସେତେବେଳେ ତଦ୍ୱାରା ଓଡ଼ିଆମାନଙ୍କ ଅପମାନ ହେଲା ବୋଲି କହି ସେମାନଙ୍କ ଗାଲରେ ଚଟକଣ ବସାଇଦେବାକୁ କେହି ବାହାରି ପଡୁନାହିଁ ତ !

ଗୋଟାଏ ସ୍ୱାଧୀନ ଜାତିର ମଣିଷ ହିସାବରେ ଏଠି କୋଟି କୋଟି ଲୋକଙ୍କର ନିତି ଅପମାନ ହେଉଛି । ସେହିମାନଙ୍କ ତିହର ଏରଣ୍ଡ ଦ୍ରୁମମାନେ କେତେ ନା

କେତେ ଛଟକ ଦେଖାଇ ସେମାନଙ୍କର ଅପମାନ କରୁଛନ୍ତି । କିଏ ରାଜନୀତି କରୁଛି ତ ଆଉ କିଏ ହାକିମ ହୋଇ ବସିଛି । ହାତଗୁଞ୍ଜା ଦିଆଇ ଶିଖାଉଛି । ଛେଳି, କୁକୁର ଭଳି ବ୍ୟବହାର କରୁଛି । ସବୁଠାରୁ ବଡ଼ ଅପମାନର କଥା ହେଉଛି ଯେ, ଚାଳିଶି ବର୍ଷ କାଳ ସ୍ୱାଧୀନତାର ଘଣାପେଲା ହେଲା ପରେ ଓଡ଼ିଶାରେ ଅଧିକରୁ ଅଧିକ ମଣିଷ ଓଡ଼ିଆ ଭାଷାକୁ ଲେଖି ଜାଣିନାହାନ୍ତି, – ବର୍ଷ ପରେ ବର୍ଷ ହଜାର ହଜାର ଓଡ଼ିଆ ପିଲା ମୂର୍ଖ ହୋଇ ବୁଲୁଛନ୍ତି ଓ ସେମାନଙ୍କ ପାଇଁ ଇସ୍କୁଲ ତିଆରି ହୋଇପାରୁ ନାହିଁ । ଏଣେ ଦୁଇଜଣ ବ୍ୟକ୍ତି 'ଗୀତାଞ୍ଜଳି'ର କଥାଗୁଡ଼ିକୁ ଓଡ଼ିଆ ତର୍ଜମା କରୁ କରୁ କିଛି ଯାଡୁସାଡୁ ଲେଖି ପକାଇଲେ ବୋଲି ଓଡ଼ିଆ ଜାତିର ଅପମାନ ହୋଇଗଲା ବୋଲି ହୁରି କରିଥିବା ମିଛପାଡ଼ିତମାନେ ସେହି ବିଷୟରେ କ'ଣ ଭାବୁଛନ୍ତି, କ'ଣ ବିବେଚନା କରୁଛନ୍ତି ? ତାଙ୍କ ଆଖିରେ ଅଯୋଗ୍ୟ ବୋଲି ଦିଶୁଥିବା ବ୍ୟକ୍ତିମାନଙ୍କୁ ହୁରାଡ଼ି ଦେଇ ନିଜେ ଯାଇ ସେହି ଆସନରେ ବସିଗଲେ, ଓଡ଼ିଆ ଜାତି ତା'ର ସମ୍ମାନ ଫେରିପାଇବ ବୋଲି ସେମାନେ ଭାବୁଛନ୍ତି କି ?

୧୦/୭/୮୮

# ପ୍ୟାର, ପ୍ୟାର୍, ପ୍ୟାର୍

ଏମାନେ ଯେଉଁମାନେ ପ୍ୟାର୍ ପ୍ୟାର୍ ବୋଲି ଗୁଣି ହେଉଛନ୍ତି, ସେମାନେ ସତକୁ ସତ କେବେହେଲେ କିଛିତ୍ ପ୍ୟାର୍ କରିବାକୁ ସମୟ ପାଉଛନ୍ତି କେଜାଣି ? ଏମାନେ ତ ପ୍ୟାର୍ ନାମକ ଘୋଡ଼ା ଉପରେ ଚଢ଼ି ଏପରି ଆର୍ତ୍ତନାଦ କରି ଦଉଡ଼ିଛନ୍ତି ଯେ, କୋଉଠି ଟିକିଏ ଅଟକି ଯିବାକୁ, ଟିକିଏ ସବୁର କରିବାକୁ ବି ସେମାନଙ୍କର ବେଳ ନାହିଁ । ପ୍ୟାର୍‌ଟା କ'ଣ ଗୋଟାଏ ଜ୍ୱର ଯେ ଏମାନେ ଏଭଳି ଜ୍ୱରଗ୍ରସ୍ତ ହୋଇ ପଡ଼ିଛନ୍ତି ? ପ୍ୟାର୍‌ଟା କ'ଣ ଗୋଟାଏ ବିଲୁଆ ଯେ, ଏମାନେ ଢ଼ୋଲ ପିଟି ଟିଣ ବାଡ଼େଇ ତାହାକୁ ସତେଅବା କୋଉ ବଣ ଭିତରୁ ପଦାକୁ ବାହାର କରିବାକୁ ଏପରି ଗୋଳ କରୁଛନ୍ତି ? ଏବଂ, ତାହା ବଣ ଭିତରୁ ବାହାରି ପଡ଼ିବା ମାତ୍ରକେ ତାହାକୁ ଏକାବେଳେ ସମସ୍ତେ ମିଶି ମାଡ଼ି ବସିବେ ବୋଲି ମନସ୍ଥ କରିଛନ୍ତି ? ଏମାନଙ୍କର ଅଣ୍ଟାହଲା ଆଉ ଗୋଡ଼ଦୋହଲା ସାଙ୍ଗକୁ ମୁହଁ ନେଫେଡ଼ାଗୁଡ଼ାକ ଦେଖି ଅନ୍ତତଃ ତାହାହିଁ ମନେ ହେଉଛି ।

ନା, ପ୍ୟାର୍ ପ୍ୟାର୍ ପ୍ୟାର୍ ବୋଲି ଛଅଟା ବା ସାଢ଼େ ସତରଟା ଗୀତ ଗାଇଦେଲେ ସେମାନେ ସତକୁ ସତ ପ୍ୟାର୍ ହୋଇଗଲା ବୋଲି ଭାବୁଛନ୍ତି ? କିମ୍ବା

ବିଚରାମାନେ ଆଦୌ ପ୍ୟାର୍ କରି ପାରୁନାହାନ୍ତି ବୋଲି କେତୁଟା ଗୀତକୁ ଛନଛନିଆ ଏବଂ କଳବଳିଆ କରି ଗାଇ ସେମାନେ ସେଥିରୁ ସତେଅବା ଜଣେ ମାୟାବାଦୀର ସୁଖ ଲାଭ କରୁଛନ୍ତି ? ବିଚରା ମାୟାବାଦୀ ସଂସାରପାଇଁ ନିଜକୁ ଦେଇପାରେ ନାହିଁ, ତେଣୁ ସଂସାର ଭିତରେ ଥାଇ ମଧ୍ୟ ସଂସାରକୁ ପାଇପାରେ ନାହିଁ । ତେଣୁ ସିଏ ସଂସାରକୁ ନିନ୍ଦେ, ସଂସାରକୁ ମିଥ୍ୟା ବୋଲି କହୁଥାଏ । ଏବଂ, ଏହିପରି ଭାବରେ ସଂସାରକୁ ନିନ୍ଦିବା ଦ୍ୱାରା ହିଁ ସଂସାରକୁ ଲାଭ କରିବାର ସେହି ଅନ୍ୟ ପ୍ରକାରର ସୁଖଟିକୁ ଲାଭ କରୁଥାଏ । ସଂସାରନିନ୍ଦାକୁ ସମ୍ପତ୍ତି କରି ବୋହିବାରେ ଲାଗିଥାଏ ।

ଯଦି ଆମ ସଂସାରରେ ସତକୁ ସତ ପ୍ୟାର୍ ଥାଆନ୍ତା, ଜୀବନ କହିଲେ ପ୍ୟାର୍‌କୁ ଅର୍ଥାତ୍ ଆପଣାକୁ ଆଉ କାହାପାଖରେ କିମ୍ବା କୋଉଥିଲାଗି ଦେଇ ପାରିବାକୁ ହିଁ ବୁଝାଉଥାନ୍ତା, ତେବେ ପ୍ୟାର୍ ବିଷୟରେ ଏତେ ଝାଞ୍ଜ ବଜାଇ ଲଙ୍ଗଳା ଗୀତଗୁଡ଼ାକୁ ଗାଇବା କ'ଣ ପ୍ରକୃତରେ ଆବଶ୍ୟକ ହେଉଥାନ୍ତା ? ସଚରାଚର ଉପାସୀମାନେ ହିଁ ବ୍ୟଭିଚାରୀ ହୁଅନ୍ତି; କୋଳାହଳରେ ଗଗନ ଫଟାନ୍ତି, ଆଦୌ କିଛି ଦେଖୁନଥିଲେ ମଧ୍ୟ ଦେଖିଲେ ବୋଲି କହି ଲଙ୍ଗଳା ହୋଇ ପଡ଼ନ୍ତି, ଭାରି ଅସନା ଭାବରେ ଥେଇଥେଇ ନାଚନ୍ତି । ଘରୁ ଉପବାସୀ ହୋଇ ସେମାନେ ଦାଣ୍ଡକୁ ନାଚିବା ପାଇଁ ବାହାରି ଯାଆନ୍ତି । ନିଜ ଭିତରେ ନାନା କାରଣରୁ ଗଣ୍ଠି ଗଣ୍ଠି ହୋଇ ରହିଥାନ୍ତି ବୋଲି କିଛୁତ୍ ଖୋଲା କୋଳାହଳର ମଉକା ପାଇଲେ ସେମାନେ ଗଣ୍ଠିଗୁଡ଼ାକର ଥାନରେ ଏକାବେଳେକେ ଖୋଲି ହୋଇଯାଆନ୍ତି । ହୁଗୁଳା ହୋଇ ଗୋଟାସୁଦ୍ଧା ଲୋସଡ଼ି ପଡ଼ନ୍ତି । ଭାରି ବେରସିକ ଦିଶୁଥାନ୍ତି ।

ନିଜ ଭିତରେ ପ୍ୟାର୍ ନଥିଲେ ହିଁ ମଣିଷ ଏଠୁସେଠୁ ସବୁଠାରୁ ତଥାକଥିତ ପ୍ୟାର୍‌ଗୁଡ଼ାକୁ ଦୁହିଁକରି ନେଇଆସିବ ବୋଲି ବାହାରେ, ଉପଦ୍ରବ କରେ । ନିଜ ଭିତରେ ପ୍ୟାର୍ ଲାଗି ଅସଲ ଅସମର୍ଥତା ଓ ଅଯୋଗ୍ୟତାଗୁଡ଼ାକର କ୍ଷତିପୂରଣ କରିବ ବୋଲି ସିଏ ଉପନ୍ୟାସ ଭିତରୁ ପ୍ୟାର୍ ଖୋଜି ବାହାରେ, ସିନେମା ଦେଖି ନିଜର ଆଖିଗୁଡ଼ାକୁ ପ୍ରବୋଧନା ଦେଉଥାଏ, ସଳସଳିଆ ଗୀତଗୁଡ଼ାଏ ଶୁଣିଲେ ତା'ଦାନ୍ତ ତଳର ବନ୍ଧ୍ୟା ମୁଣାଗୁଡ଼ାକ ଭିତରେ ସତେଅବା ତଥାପି ଗରଳ ପାଣେଇ ହୋଇ ଆସୁଥିବା ପରି ଅନୁଭବ କରେ । ସେହି ଗରଳ ନିଜକୁ ହିଁ ଗିଳିପକାଏ । ସିଏ ବିଚରା କାହାରି ଭାଜନ ହୋଇ ପାରେନାହିଁ । ଏବଂ ଆଉ କାହାଲାଗି କିମ୍ବା ଆଉ କୋଉଥିପାଇଁ ଆପଣାକୁ ଦେଇ ପାରିବା ତ ଆହୁରି ଅଧିକ ଦୁରୂହ କଥା ହୋଇ ରହିଥାଏ ।

୧୭/୭/୮୮

# ନକ୍ସାଲପନ୍ଥୀଙ୍କୁ ପୁଲିସ ଭୟ

ଇଂରେଜମାନେ ଏହି ଦେଶକୁ ଶାସନ କରୁଥିବା ସମୟରେ ଏହି ଦେଶର ସ୍ୱାଧୀନତା ପାଇଁ ଲଢୁଥିବା ସଂଗ୍ରାମୀମାନଙ୍କୁ ସରକାର ପୁଲିସଭୟ ଦେଖାଉଥିଲା । ଯେଉଁଠି ଗୋଳମାଳ ହେଉଥିଲା, ସେଠାକୁ ପୁଲିସ ପଠାଇ ଦେଉଥିଲା । ସାଧାରଣ ମଣିଷମାନଙ୍କ ମନରେ ପୁଲିସମାନଙ୍କ ପ୍ରତି ଏକ କୋକୁଆ ଭୟ ସୃଷ୍ଟିକରି ରଖାଯାଇଥିଲା । କୋଉ ଗାଆଁକୁ ପୁଲିସ ଆସିଲେ ଲୋକେ କବାଟ ଦେଇ ଘର ଭିତରେ ଯାଇ ଲୁଚୁଥିଲେ । ତଥାପି କ'ଣ ସଂଗ୍ରାମ ଦବିଗଲା ନା ସଂଗ୍ରାମୀମାନେ ଦବିଗଲେ ? ପୁଲିସମାନଙ୍କ ହାତରେ ବନ୍ଧୁକ ଥିଲା, ବାଡ଼ି ଥିଲା, ସଂଗୀନ୍ ମୁନ ରହିଥିଲା । ସେମାନେ ଜେଲକୁ ବାନ୍ଧି ନେଉଥିଲେ । ଘରେ ନିଆଁ ଲଗାଇ ଦେଉଥିଲେ । ଘରୁ ସମ୍ପତ୍ତି ଲୁଟି ନେଉଥିଲେ । ସଂଗ୍ରାମୀମାନଙ୍କ ହାତରେ କିଛି ନଥିଲା । ସେମାନେ ମାଡ଼ ଖାଉଥିଲେ, ଜେଲକୁ ଯାଉଥିଲେ । ପ୍ରାଣ ଦେଉଥିଲେ, ତଥାପି ନିଜର ପଣ ଛାଡୁନଥିଲେ ।

ଦେଶରେ ରାଜନୀତିକ ବିପ୍ଳବ ଶେଷ ହେବା ପରେ ଏଠି ଆହୁରି ଏକ ସାମାଜିକ ବିପ୍ଳବ ହେବା ଆବଶ୍ୟକ ଥିଲା । ଯେଉଁ ସଂଗ୍ରାମୀମାନେ ଏହି ଦ୍ୱିତୀୟ ବିପ୍ଳବଟିକୁ କରିଥିଲେ ସବୁଠାରୁ ଅଧିକ ଭଲ ହୋଇଥାନ୍ତା ଓ ପରିବର୍ତ୍ତନର ଆବଶ୍ୟକ ପ୍ରକ୍ରିୟାଗୁଡ଼ିକ ସବୁଠାରୁ ଅଧିକ ସୁସ୍ଥ ଭାବରେ ଫଳି ପାରିଥାନ୍ତା, ସ୍ୱାଧୀନତା ପରେ ସେହି ସଂଗ୍ରାମୀ କ୍ଳାନ୍ତ ହୋଇ ପଡ଼ିଲେ, ବୁଢ଼ା ହୋଇଗଲେ, ଭତ୍ତା ପାଇଲେ । ତମ୍ବାପଟା ପାଇ ତୁନିହୋଇ ରହିବାକୁ ମଙ୍ଗିଗଲେ । ବାମପନ୍ଥୀ ଦକ୍ଷିଣପନ୍ଥୀ ଯାବତୀୟ ରାଜନୀତି ଅଧିକାଂଶତଃ ବାବୁମାନଙ୍କ ଦ୍ୱାରା ଚାଲିଲା । ବହୁ କାରଣରୁ ସେମାନେ ବିପ୍ଳବର ପାଠଗୁଡ଼ାକ ଗୋଟାସୁଦ୍ଧା ଭୁଲିଗଲେ । ଦେଶରେ ଏକ ସାମାଜିକ ବିପ୍ଳବକୁ ଯେଉଁମାନେ ତଥାପି ଅତ୍ୟାବଶ୍ୟକ ବୋଲି ମନେ କରୁଥିଲେ, ସେମାନେ ନକ୍ସାଲପନ୍ଥୀ ହେଲେ ।

ସେହି ନକ୍ସାଲପନ୍ଥୀମାନେ ବର୍ତ୍ତମାନ କେତେ ପନ୍ଥାରେ ବିଭକ୍ତ ହୋଇଗଲେଣି । ସେମାନେ ହିଂସାରେ ବିଶ୍ୱାସ କରନ୍ତି । ହିଂସ୍ର ବୋଲି ଯେ ହିଂସାରେ ବିଶ୍ୱାସ କରନ୍ତି, ସେକଥା କଦାପି ନୁହେଁ । ଅହିଂସାରେ ବିଶ୍ୱାସ କରୁଛନ୍ତି ବୋଲି କହୁଥିବା ଲୋକମାନେ ଅହିଂସାକୁ ଆଳ କରି ତାହାରି ଭିତରେ ନିଷ୍କ୍ରିୟ ହୋଇ ରହିଯାଆନ୍ତି ଏବଂ ଅନ୍ୟ ପକ୍ଷରେ, ସଂସାରରେ ସରକାରମାନେ ସର୍ବତ୍ର ହିଂସାରେ

ବିଶ୍ୱାସ କରନ୍ତି ବୋଲି· ସେମାନେ ମଧ୍ୟ ହିଂସାମାର୍ଗକୁ ବର୍ଜନ କରି ପାରନ୍ତି ନାହିଁ । ପ୍ରାୟ ସାଢ଼େ ତିନି ଦଶକ ତଳେ ଅହିଂସାବାଦୀମାନେ ଲୋକଶକ୍ତିକୁ ଜାଗ୍ରତ କରି ଏକ ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ଲାଗି ଅଣ୍ଟା ଭିଡ଼ି ବାହାରିଥିଲେ ଓ ତଦ୍ୱାରା ହିଂସାର ଆନ୍ଦୋଳନଗୁଡ଼ାକୁ ଅନାବଶ୍ୟକ ପ୍ରମାଣ କରିଦେବେ ବୋଲି କହୁଥିଲେ । ସେମାନେ ଦାନରେ ରହିଗଲେ । ସରକାରୀ କୋଡ଼୍‌ରେ ସଜନ ହୋଇ ରହିଲେ । କ୍ରମେ ଶକ୍ତିହୀନ ହୋଇପଡ଼ିଲେ । ବା, ସେମାନେ ସଙ୍କଳ୍ପରୁ ହୁଡ଼ି ଯିବାରୁ ବିଧାତା ସେମାନଙ୍କର ଶକ୍ତିକୁ ଅପହରଣ କରି ନେଇଗଲା ।

ତେଣୁ ପୁଲିସ ଭୟ ଦେଖାଇ କୌଣସି ରାଜନୀତିକ ହିଂସାକୁ ଦମନ କରାଯାଇ ପାରିବ ନାହିଁ । ନକସାଲପନ୍ଥୀଙ୍କୁ ବନ୍ଧୁକ ଦ୍ୱାରା ମାରିଦେଇ ହେବ, ଜେଲ ଭିତରେ ଭର୍ତ୍ତି କରିଦେଇ ହେବ । ତଥାପି ନିଆଁକୁ ନିଭାଇ ହେବ ନାହିଁ । ଏହି ଦେଶରେ ପରିବର୍ତ୍ତନ ନିମନ୍ତେ ତଥାପି ସଂଗ୍ରାମ ଜାରି ରହିଥିବ । ସଂଗ୍ରାମୀମାନେ ମଧ୍ୟ ରହିଥିବେ । ବିଭିନ୍ନ ମାର୍ଗରେ ସଂଗ୍ରାମ ଚାଲିଥିବ । ସେହି ସଂଗ୍ରାମକୁ ଚଳାଇ ରଖିବାକୁ ଅଧିକ ଉପାଦେୟ ଏବଂ ଫଳପ୍ରଦ ନେତୃତ୍ୱ ଯେ ଏହି ଦେଶରେ ଏପର୍ଯ୍ୟନ୍ତ ସମ୍ଭବ ହେଉନାହିଁ, ନକ୍‌ସାଲପନ୍ଥୀମାନେ ଆମକୁ, ଯେଉଁମାନେ ଦେଶରେ ଆହୁରି ଏକ ବିପ୍ଳବ ବାକି ରହିଛି ବୋଲି ତଥାପି ଅନୁଭବ କରୁଛନ୍ତି, ମାତ୍ର ତଥାପି ବସି ରହିଛନ୍ତି, ସେମାନଙ୍କୁ ସମସ୍ତଙ୍କୁ ସେହିଭଳି ଏକ ଚେତାବନୀ ଦେବାରେ ଲାଗିଛନ୍ତି । ସରକାର ପୁଲିସ ଧରି ସେମାନଙ୍କ ପଛରେ ଧାଉଁଛନ୍ତି । ସେମାନେ ତଥାପି ଆମ ସମସ୍ତଙ୍କ ଲାଗି ସେହି ଅସଲ କାମଟିକୁ କରିବାରେ ଲାଗିଛନ୍ତି । ନିଜ ମାର୍ଗରେ କରୁଛନ୍ତି ।

୧୪/୭/୮୮

# ଯିଏ ଯେଉଁଥାପାଇଁ ଲାଗିଲେ

ଶିକ୍ଷକମାନେ ଶିକ୍ଷାପାଇଁ ନଲାଗି ନିଜ ପାଇଁ ଲାଗିଲେ, ଚାକିରିଆମାନେ ଯୋଉଥିପାଇଁ ଦରମା ପାଉଛନ୍ତି ସେଥିପାଇଁ ନଲାଗି ପ୍ରାୟ ଗୋଟାସୁଦ୍ଧା ନିଜ ପାଇଁ ଲାଗିଲେ । ଆପଣାର ଆୟ ସେମାନଙ୍କୁ ପ୍ରାୟ କିଛି ବୋଲି ଦିଶିଲାନାହିଁ ବୋଲି ପାରୁପର୍ଯ୍ୟନ୍ତ ଅଣଆୟ ଗୁଡ଼ାକୁ ବଢ଼ାଇଲେ, ବଡ଼ଲୋକ ହେଲେ, ବଡ଼ ବୋଲାଇଲେ । ମନ୍ତ୍ରୀ ବିଚରା ବା ଅଧିକ କ'ଣ କରି ପାରିଥାନ୍ତେ ? ସେମାନେ ବି ତ ଠିକ୍ ଆମରି ଭଳି ମଣିଷ । ସେମାନଙ୍କର ବି ତ ରକ୍ତ-ମାଂସର ଜୀବନଟି ଲାଗି ଲୋଭ ଅଛି; ତେଣୁ ସେମାନେ ବି ନିଜ ପାଇଁ ଲାଗିଗଲେ । ହାଉଆ ଯେଉଁ ଭଳି ବୋହୁଥିଲା, ସେମାନେ

ତାହାରି ପ୍ରତିନିଧିତ୍ୱ କଲେ । କିଏ ପୁଲିସ୍ ହୋଇଥିଲା, ସିଏ ଶାନ୍ତିରକ୍ଷା ପାଇଁ ନଲାଗି ନିଜ ପାଇଁ ଲାଗିବାକୁ ବାଧ୍ୟ ହେଲା । ଆମ ଓକିଲ ଓ ନ୍ୟାୟର ଅଧୀଶ୍ୱରମାନେ ଅନ୍ୟ ପ୍ରକାରେ ଆଚରଣ କରିଥିଲେ ଯୁଗର ଆଖିରେ ବୋକା ବନି ରହିଥାନ୍ତେ । ତେଣୁ ସେମାନେ ମଧ୍ୟ ଯୁଗକୁ କଦର ଦେଖାଇ ଯଥାସମ୍ଭବ ନିଜ ପାଇଁ ଲାଗିଲେ ।

ଧର୍ମଗୁଡ଼ାକ ମଧ୍ୟ ଆଉ ପୃଥିବୀ ପାଇଁ ହୋଇ ରହି ପାରିଲା ନାହିଁ । ଧର୍ମଗୁଡ଼ାକ ମଠରେ ପରିଣତ ହୋଇଗଲା ଏବଂ ନିଜ ପାଇଁ ଲାଗିଲା । ମଣିଷମାନେ ଦେଉଳ ଭିତରକୁ ଯାଇ ଭଗବାନଙ୍କୁ ମଧ୍ୟ ପ୍ରଧାନତଃ ନିଜ ପାଇଁ ଏଇଟା ବା ସେଇଟା ମାଗିଲେ । ରୂପ ମାଗିଲେ, ଧନମାଗଣ କଲେ, ଯଶ ମାଗିଲେ, ଶତ୍ରୁମାନଙ୍କର କ୍ଷୟ ଲାଗି ପ୍ରାର୍ଥନା କଲେ, ବେଳେବେଳେ ମନୋରମା ଭାର୍ଯ୍ୟାଟିଏ ମଧ୍ୟ ମାଗିଲେ; ଭଗବାନ୍ ନିଲଠା ହୋଇ ଅନାଇ ରହିଲେ । ଯେଉଁମାନେ ତାଙ୍କ ପାଇଁ କୋଠାଘର କରିଦେଲେ, ତାଙ୍କ ମୁଣ୍ଡ ଉପରେ ଚାନ୍ଦୁଆ ଟଙ୍ଗାଇ ଦେଲେ ଓ ଶଙ୍ଖମର୍ମର ପଥରରେ ପାହାଚ ବସାଇଦେଲେ, ସିଏ ସେମାନଙ୍କୁ ମୁହଁ ଖୋଲି ଆଦୌ କିଛି କହି ପାରିଥାନ୍ତେ କିପରି ?

ତା'ପରେ ସଂଗ୍ରାମୀମାନେ ଆସି ପହଞ୍ଚିଲେ । ସଂଗ୍ରାମ ସରିନଥିଲା । ମାତ୍ର ସେମାନେ ବୁଢ଼ା ହୋଇ ଯାଇଥିଲେ । ତେଣୁ ଭତ୍ତା ମାଗିଲେ, ନିଜ ପାଇଁ ଲାଗିଲେ । ଆହୁରି ଅଧିକ ଦିଅ ବୋଲି ଅଝଟ ଲଗାଇଲେ । କଳାକାରମାନେ ନିଜକୁ ଦୁଃସ୍ଥ ବୋଲି କହିଲେ ଓ ଦୁସ୍ଥମାନଙ୍କର ଖାତାରେ ନାଆଁ ଲେଖାଇବାକୁ ସଂଘ ଗଢ଼ିଲେ । ନିଜ ପାଇଁ ଲାଗିଲେ । କଳାକୁ ଭୂତ ଖାଇଗଲା । ସାହିତ୍ୟିକମାନେ ବି ସହରରେ ସଭା ମଣ୍ଡାଇ ଦୁଃସ୍ଥ ହେଲେ, ହାତ ପତାଇଲେ । ନିଜ ପାଇଁ ଲାଗିଲେ । ସାହିତ୍ୟକୁ ନେଇ ସାହୁକାରଙ୍କ ଘରେ ବାନ୍ଧିଦେଇ ଆସିଲେ । ଯିଏ ଯେଝାପାଇଁ ଲାଗିଲେ । ଯେଝାପାଇଁ ଲାଗି ଗୌରବ ଅନୁଭବ କଲେ ।

ଯିଏ ତ ଯେଝାପାଇଁ ଲାଗିଲେ, ଯେଝା ନିଜକୁ ଦର୍ପଣ ଭିତରେ ଦେଖି ଫୁଲେଇ ହେଲେ । ତେବେ ଦେଶପାଇଁ, ମଣିଷ ପାଇଁ କିମ୍ବା ନ୍ୟାୟପାଇଁ କଥା କହିବାକୁ ଆଉ ବାକି କେଉଁମାନେ ରହିଲେ ? ମାତ୍ର ଅଧିକରୁ ଅଧିକ ମଣିଷ ତଥାପି ଦେଶ ବିଷୟରେ ବକ୍ତୃତା ଦେଲେ । ଆଦର୍ଶ ବିଷୟରେ ପିଲାମାନଙ୍କୁ ତ୍ୟାଗର ଉଦ୍‌ବୋଧନ ଦେଲେ । ଏଣିକି ଚରିତ୍ର ବିଷୟରେ ଅଧିକ କଥା କୁହାଗଲା, ଧର୍ମସଭାରେ ଅଧିକ ଉତ୍ସାହ ଓ ଉଚ୍ଛନ୍ନପଣିଆ ଦେଖାଇ ଧର୍ମକଥାର ଉଦ୍‌ଗାର ହେଲା । ଶ୍ରଦ୍ଧାଳୁ ଶ୍ରୋତାମାନେ ରାତି ଅନିଦ୍ରା ହୋଇ ସେହି ଉଦ୍‌ଗାର ଗୁଡ଼ିକ ଶୁଣିଲେ, କୃତକୃତ୍ୟ

ହେଲେ, ମର ଜୀବନକୁ ଧନ୍ୟ କଲେ । ପରଜୀବନ ପାଇଁ ପୁଣ୍ୟ କିଣି ରଖିଲେ । କିଏ କୋଉଠୁ ଛତରା ପିଲାଟାଏ ଯଦି ଏହିସବୁ ଆଖଡ଼ା ଭିତରେ ଆସି ପଶିଯାଆନ୍ତା ଓ କେବଳ ଆପଣା ପାଇଁ ଲାଗିଥିବା ଏହି ମହାମଣିଷମାନଙ୍କର ପିଣ୍ଡ ଭିତରେ ରହିଥିବା କଥାଟାକୁ ଖୋଲି କହିଦିଅନ୍ତା, ତେବେ ତାହା ସତକୁ ସତ କେଡ଼େ ବଢ଼ିଆ କଥାଟାଏ ହୁଅନ୍ତା ।

୩୧/୭/୮୮

# ଲଜ୍ଜା ବୋଧ ହେଉଛି

ସଂଗ୍ରାମୀମାନଙ୍କର ସଭାରେ ଜଣେ ସଂଗ୍ରାମୀ ଭାରି ଖେଦ କରି କହିଲେ ଯେ, ବ୍ୟକ୍ତିବିଶେଷ ସ୍ୱାଧୀନତା-ସଂଗ୍ରାମୀ ଅନୁଷ୍ଠାନ ଗଢ଼ି ଅଣସଂଗ୍ରାମୀମାନଙ୍କୁ ଜାଲ ସାର୍ଟିଫିକେଟ ଦେଇ ଏହାକୁ ଏକ ରୋଜଗାରର ପନ୍ଥାରେ ପରିଣତ କରିଛନ୍ତି । ଆମ ଭାଷାରେ ଆମେ ହୁଏତ ଏପରି କହି ପାରିବା ଯେ, ଯେଉଁମାନଙ୍କର ପର୍‌ମିଟ୍ ପାଇବାର ହକ୍ ନାହିଁ, ସେମାନଙ୍କ ପାଇଁ ପର୍‌ମିଟ୍‌ର ବ୍ୟବସ୍ଥା କରିଦେଇ ଉକ୍ତ ଅନୁଷ୍ଠାନମାନେ ନିଜେ ବି କିଞ୍ଚିତ୍ ଲାଭବାନ ହେଉଛନ୍ତି । ଏହି କାରଣରୁ ନିଜକୁ ସ୍ୱାଧୀନତା-ସଂଗ୍ରାମୀ ବୋଲି ପରିଚୟ ଦେବା ପାଇଁ ଭାରି ଲଜ୍ଜାବୋଧ ହେଉଛି ବୋଲି ମାନନୀୟ ସଂଗ୍ରାମୀ ମତ ପ୍ରକାଶ କରିଥିଲେ । ଏଣିକି ଏକ ନୈତିକ ମୂଲ୍ୟବୋଧ ଉପରେ ସ୍ୱାଧୀନତା ସଂଗ୍ରାମୀମାନେ ଗୁରୁତ୍ୱ ଦେଇ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମମାନ ଗ୍ରହଣ କରିବା ଉଚିତ ବୋଲି ସେ ଅତ୍ୟନ୍ତ ଆନ୍ତରିକତା ସହିତ ସୁପାରିଶ ମଧ୍ୟ କରିଥିଲେ ।

ମାତ୍ର, ଅସଲ କଥା ହେଉଛି, ଆଗ ଏକ ଯଥାର୍ଥ ରାଜନୀତିକ ମୂଲ୍ୟବୋଧ ଅର୍ଥାତ୍ ରାଜନୀତିକ ସଚେତନତା ରହିଥିଲେ ସିନା ସେଇଥିରୁ ବଳ ପାଇ ଏକ ନୈତିକ ମୂଲ୍ୟବୋଧ ମଧ୍ୟ ରହିପାରନ୍ତା ? ଭିକ୍ଷା ମାଗିବାଟା ଯଦି ଜୀବନର ସର୍ବପ୍ରଧାନ କାର୍ଯ୍ୟକ୍ରମ ଓ ତେଣୁ ଆଗ୍ରହରେ ପରିଣତ ହୁଏ, ତେବେ ନୈତିକ କିମ୍ବା ରାଜନୀତିକ ମୂଲ୍ୟବୋଧ ମଧ୍ୟ କୁଆଡୁ ଆସିବ ? ଯେତେବଡ଼ ନେତା ଅର୍ଥାତ୍ ଯେତେ ବଡ଼ ବାବୁ ହୋଇ ଭିକ୍ଷା ମାଗିଲେ ମଧ୍ୟ ତାହା ହେଉଛି ତଥାପି ଭିକ୍ଷା ମାଗିବା । ମୂଳତଃ, ଅନୁଷ୍ଠାନବଦ୍ଧ ଭାବରେ ଭିକ୍ଷା ମାଗିଲେ ମାଗିବାଟା ଅଧିକ ଜବର ଭାବରେ ସମ୍ଭବ ହୋଇ ପାରିବ ବୋଲି ସଂଗ୍ରାମୀ ମାନଙ୍କର ସଙ୍ଗଠନଗୁଡ଼ିକ ତିଆରି ହୋଇଛି । ସଂଘ ଜବର ହୋଇ ଚାଲିଛି ଓ ଦାବୀ ବଢ଼ି ବଢ଼ି ଲମ୍ବି ଲମ୍ବି ଯିବାରେ ଲାଗିଛି । ସଂଗ୍ରାମୀର ଅସଲ ବ୍ୟାକୁଳତାଗୁଡ଼ିକ ସତେ ଅବା ଅନ୍ୟ ଏକ ଲୋଲୁପତାର ଦାଉରେ କୁଆଡ଼େ ଅନ୍ତରାଳ ହୋଇ ରହିଗଲାଣି ।

ସରକାର ଭତ୍ତା ପାଇବାର ଦରଖାସ୍ତଗୁଡ଼ିକର ତୁରନ୍ତ ବିଚାର କରନ୍ତୁ ଓ ତୁରନ୍ତ ଫଇସଲା କରି ଦିଅନ୍ତୁ, ବସ୍‌ରେ ଯିବା ଆସିବା କରି ପାରିବାଲାଗି ସଂଗ୍ରାମୀମାନଙ୍କ ସକାଶେ ପାସ୍‌ର ବ୍ୟବସ୍ଥା ହେଉ, ସରକାରଙ୍କ ସମସ୍ତ ସର୍କିଟ ହାଉସ ଓ ଡାକବଙ୍ଗଳା ଇତ୍ୟାଦିରେ ରହିପାରିବା ନିମନ୍ତେ ସଂଗ୍ରାମୀମାନଙ୍କୁ ଅନୁମତି ଦିଆଯାଉ, ଏହିସବୁ ଦାବି ବାହାରକୁ ଯେତେ ଦର୍ପସମ୍ବଳିତ ବୋଧ ହେଉଥିଲେ ମଧ୍ୟ ତଥାପି ଗୋଟିଏ ଗୋଟିଏ ଭିକ୍ଷା ମାଗିବା । ସଂଗ୍ରାମୀର ଆଖି ଦେଇ ଏହି ଦେଶକୁ ଏବଂ ଆପଣାର ସମଗ୍ର ଐତିହ୍ୟଟିକୁ ଯିଏ ଅବଲୋକନ କରି ପାରୁଥିବ, ସିଏ ତ ସତକୁ ସତ ଆଗ କେତେ କ'ଣ ଦେଖିପାରିବ । ସିଏ ଆଗ ସେହି କଥାଗୁଡ଼ିକୁ ସଭାରେ ପକାଇ ତା'ପରେ ଯାଇ ହୁଏତ ଆଉ ଯାହାକିଛି ପକାଇବ ।

ଆମର ସଂଗ୍ରାମ ସରିନାହିଁ; ଏକ ଜାତିର ଜୀବନରେ ସତକୁ ସତ ସଂଗ୍ରାମ କେବେହେଲେ ସରିଯାଏ ନାହିଁ ଏବଂ ତେଣୁ ଅସଲ ସଂଗ୍ରାମୀ ଆଗ ସେହିସବୁ କଥା ଚିନ୍ତା କରେ ଓ ସତକୁ ସତ କିଛି କରେ ବୋଲି ଜାଣି ସୁଦ୍ଧା ସଂଗ୍ରାମୀ ଯେଉଁଠାରେ ସଂଘ ଗଢ଼ି ବିଶେଷ ସୁବିଧାମାନ ଲାଭ କରିବାକୁ ପ୍ରମାଣପତ୍ର ଧରି କଚେରୀକୁ ଯାଏ, ସେଠାରେ ଏଠି ବାସ କରୁଥିବା ସମସ୍ତଙ୍କର ମଧ୍ୟ କ'ଣ ଲଜ୍ଜାବୋଧ କରିବା ଉଚିତ ନୁହେଁ ?

୭/୮/୮୮

# ଯୁଗ କୁଆଡ଼େ ଯାଉଛି କେଜାଣି ?

ସେଦିନ ବିଶ୍ୱବିଦ୍ୟାଳୟରେ ତର୍କ-ପ୍ରତିଯୋଗିତା ହେଉଥିଲା । ଏହି ପ୍ରତିଯୋଗିତା ହେଉଛି ବିଶ୍ୱବିଦ୍ୟାଳୟର ସବାବଡ଼ ତର୍କ ପ୍ରତିଯୋଗିତା । ରାଜ୍ୟର ଚାରିଆଡୁ ଅଂଶଗ୍ରହଣ କରିବା ଲାଗି ତରୁଣ ବକ୍ତାମାନେ ବଛା ହୋଇ ଆସିଥିଲେ । ନିଜ ନିଜ କଲେଜରେ ଅନ୍ୟ ସମସ୍ତଙ୍କୁ ପରାସ୍ତ କରି ସେମାନେ ବଛା ହୋଇଥିଲେ । ବକ୍ତୃତାରେ ଯିଏ ପ୍ରଥମ ବା ଦ୍ୱିତୀୟ ହେବ, ସେମାନଙ୍କୁ ସୁନା ମେଡ଼ାଲ୍ ବା ରୂପା ମେଡ଼ାଲ୍ ମିଳିବ । ଯଥା – ସମୟରେ ଅସୁରର ପେଟ ପରି ଦିଶୁଥିବା ପ୍ରେକ୍ଷାଳୟରେ ପ୍ରତିଯୋଗିତା ଆରମ୍ଭ ହେଲା । ପ୍ରେକ୍ଷାଳୟର ଆଗ କେତୋଟି ଧାଡ଼ିରେ ବକ୍ତାମାନେ ଖେଳେଇ ହୋଇ ବସିଛନ୍ତି । ମାତ୍ର, ଶ୍ରୋତା ବୋଲି ପ୍ରାୟ କେହି ନଥାନ୍ତି । ବକ୍ତାମାନଙ୍କର ହାତ ଧରାଧରି ହୋଇ କାଁ ଭାଁ ଗଣ୍ଡାଏ କି ପୁଞ୍ଜାଏ ଆସି ହାବୁଡ଼ି ଯାଇଥାନ୍ତି ମାତ୍ର । ପ୍ରେକ୍ଷାଳୟ ଖାଲି ପଡ଼ିଥାଏ । ବକ୍ତାମାନଙ୍କୁ ବାଧ୍ୟ ହୋଇ ଶ୍ରୋତାର ଭୂମିକାଟିକୁ ମଧ୍ୟ ତୁଲାଇବାକୁ ପଡୁଥାଏ ।

ଉପରେ ମାନନୀୟ ବିଚାରପତିମାନେ ବସି ଥାଆନ୍ତି । ଖାଲି କକ୍ଷଟିକୁ ଦେଖି ସେମାନଙ୍କର ମୁହଁଗୁଡ଼ାକ ସତେ ଅବା ଭାରି ଆମ୍ପିଳା ହୋଇ ଯାଇଥାଏ । ସେମାନେ ପଛକୁ ଅନାଇ କେତେ କ'ଣ ଭାବୁଥାନ୍ତି । ନିଜ ନିଜର ଝିଅଦିନ କଥା ଭାବୁଥାଆନ୍ତି । ଶେଷକୁ ଜଣେ ଆଉ ସମ୍ଭାଳି ପାରିଲେ ନାହିଁ ଏବଂ ନାଆଁ ପକାଇ କହିବାକୁ ଆରମ୍ଭ କଲେ, "ଯୁଗ କୁଆଡ଼େ ଯାଉଛି କେଜାଣି ? ଆମବେଳେ ଏହିସବୁ ଅବସରରେ ଶ୍ରୋତାମାନଙ୍କର ଭିଡ଼ରେ ଘର ଫାଟି ପଡୁଥିଲା । ଶୁଣିବା ଲାଗି ପିଲାମାନଙ୍କର କେତେ ଆଗ୍ରହ ଥିଲା । କେତେ ଉଚ୍ଚମାନର ବକ୍ତୃତାମାନ ହେଉଥିଲା ଏବଂ ଶ୍ରୋତାମାନେ ମଧ୍ୟ ସତକୁ ସତ କେତେ ଉଚ୍ଚମାନର ନଥିଲେ !''

"ଆଗେ ବକ୍ତୃତାରେ ଆଗ୍ରହ ଥିଲା । ଏବେ ମେଡ଼ାଲ୍ ପାଇବାରେ ଅଧିକ ଆଗ୍ରହ । ଅନେକ ସାହିତ୍ୟିକଙ୍କର ସାହିତ୍ୟ ଅପେକ୍ଷା ପୁରସ୍କାର ପାଇବାରେ ଯେପରି ଅଧିକ ଆଗ୍ରହ, ଏକଥା ପ୍ରାୟ ଠିକ୍ ସେହିପରି ।'' କହୁ କହୁ ବିଚାରପତି ମୁହଁ ଶୁଖାଇ ଦେଲେ । ତାଙ୍କର ଶୁଖିଲା ମୁହଁ ଦେଖି କକ୍ଷଟାଯାକ ସତେ ଅବା କୌଣସି ଘୋର ଅପରାହ୍ନ ଘୋଟି ରହିଥିବା ପରି ବୋଧ ହେଲା । ଆଗେ ଏହିସବୁ ପ୍ରତିଯୋଗିତାକୁ ଅଧ୍ୟାପକମାନେ ବି ବହୁସଂଖ୍ୟାରେ ଆସୁଥିଲେ । ପିଲାମାନେ କ'ଣ କହୁଛନ୍ତି, ସେକଥା ଶୁଣିବାକୁ ଆସୁଥିଲେ । ସେମାନେ ପକ୍ଷ ନେଉନଥିଲେ ସତ, ମାତ୍ର ହୁଏତ କୌଣସି ଅଂଶଗ୍ରହଣକାରୀର ଭଲ ବକ୍ତୃତା ଶୁଣି ସତେଅବା ପୁନର୍ଜନ୍ମ ଲାଭ କରୁଥିବାପରି ଅନୁଭବ କରୁଥିଲେ । ଜଣେ ଶିକ୍ଷକ ଲାଗି ଏହି ଅନୁଭବଠାରୁ ଅଧିକ ବଡ଼ ଅନୁଭବ ଆଉ କଣ ହୋଇପାରେ ? ସେହି ଯୁଗ ମଧ୍ୟ କୁଆଡ଼େ ଗଲା କେଜାଣି ?

ଶ୍ରୋତାମାନଙ୍କ ମଧ୍ୟରେ ଜଣେ ହେଲେ ଅଧ୍ୟାପକ ନଥିଲେ । ଯେଉଁ ଶିକ୍ଷକ ନିଜର ଖୁସି, ନିଜର ସଫଳତା ଓ ନିଜର ଆତ୍ମକାମିତା ଗୁଡ଼ିକୁ ନେଇ ଅହର୍ନିଶ ଘାରିହୋଇ ରହିଛି, ପିଲାମାନଙ୍କ ଲାଗି ତା'ର ଆଉ ବେଳ କାହିଁ ? ପିଲାମାନେ କହିଲେ ସିଏ ଏବେ ହୁଏତ ଅତ୍ୟନ୍ତ ସ୍ଥୂଳ ଭାବରେ ଖାସ୍ ନିଜର ପୁଅଝିଅମାନଙ୍କୁ ବୁଝୁଛି । ଅନ୍ୟପିଲାମାନଙ୍କୁ ଈର୍ଷା କରୁଛି । ଅଧ୍ୟାପକର ସଂସାର କ୍ରମଶଃ ଏକ ପାରିବାରିକ ସଂସାର ଭିତରକୁ ସଙ୍କୁଚିତ ହୋଇ ଆସିଲାଣି । ଯୋଉଠୁ ଅସଲ ସଂକ୍ରମଣ ଗୁଡ଼ିକ ସମ୍ଭବ ହେଉଥାନ୍ତା, ସେଠି ଗୋଟାସୁଦ୍ଧା ମରୁଡ଼ି ପଡ଼ିଗଲାଣି । ତେଣୁ ଯୁଗଟା ଯୁଆଡ଼େ ଯିବାର କଥା, ସିଆଡ଼କୁ ଅବଶ୍ୟ ଯିବ । ବିହାର ଭିତରେ କେବଳ ଚିଲମାନେ ହିଁ ବିହାର କରିବାକୁ ରହିଥିବେ ।

୧୪/୮/୮୮

# ମୋର ମନ ମୋତେ ପଚାରେ

ଜାତୀୟ କବି ଶ୍ରୀଯୁକ୍ତ ବୀରକିଶୋର ଦାସ ଏକଦା ଏହିପରି ଶୀର୍ଷକ ଦେଇ କବିତାଟିଏ ଲେଖିଥିଲେ । ଅଗଷ୍ଟ ବିପ୍ଳବ ସମୟରେ ଓଡ଼ିଶାର କେଉଁ ଜେଲ୍‌ରେ ବନ୍ଦୀ ହୋଇ ରହିଥିବା ସମୟରେ ସେ କବିତାଟିକୁ ଲେଖିଥିଲେ । ଇଂରେଜ ସରକାର ତାଙ୍କୁ ସେତେବେଳେ ଅଟକବନ୍ଦୀ କରି ରଖିଥିଲେ । ଜେଲ୍‌ର ନିୟମ ଅନୁସାରେ ରାଜନୀତିକ ଅଟକବନ୍ଦୀମାନଙ୍କୁ ସାଆନ୍ତର ମର୍ଯ୍ୟାଦା ଦିଆଯାଉଥିଲା । ସେମାନେ ଭଲ ଖାଉଥିଲେ, ଘରୁ ବିଶେଷ ବିଶେଷ ଦ୍ରବ୍ୟ ମଗାଇ ପାରୁଥିଲେ, ଭଲ ଘରେ ରହୁଥିଲେ । ଅନେକ ସମୟରେ ସେମାନଙ୍କର ପରିଚର୍ଯ୍ୟା ନିମନ୍ତେ ସାଧାରଣ କଏଦୀଙ୍କ ଭିତରୁ ଜଣେ ଜଣେ ପରିକର ମଧ୍ୟ ରହୁଥିଲେ । ତେଣୁ ଆରାମରେ ରହିବା ପାଇଁ ଆଦୌ କୌଣସି ବାଧା ନଥିଲା ।

ମାତ୍ର କବି ବୀରକିଶୋରଙ୍କୁ ଏହିସବୁ ଆରାମ ମୋଟେ ଭଲ ଲାଗୁ ନଥିଲା । ତେଣେ ଦେଶ ତଥାପି ସ୍ୱାଧୀନ ହୋଇନଥିଲା; ତେଣୁ ତାଙ୍କରି ଭାଷାରେ କହିଲେ, ଅରି ଫେରି ନଥିଲା କି ଯୁଦ୍ଧ ସରିନଥିଲା । ଅଧିକାଂଶ ଦେଶବାସୀ ଅନ୍ଧାରରେ କାଳ କାଟୁଥିଲେ । ମହାତ୍ମାଗାନ୍ଧୀ, ଜବାହରଲାଲ ପ୍ରଭୃତି ନେତାମାନେ ଜେଲରେ ଥିଲେ । ସେଥିରେ କବିଚିତ୍ତ ଆରାମ ଲୋଡ଼ି, ଥୟ ହୋଇ ରହିପାରନ୍ତା ବା କିପରି ? ତେଣୁ ସେ "ମୋର ମନ ମୋତେ ପଚାରେ'' ଗୀତଟିକୁ ଲେଖିଥିଲେ । "ତୁ ପରା ସଂଗ୍ରାମ କରିଥିଲୁ, ତୁ କ'ଣ ଏଠାରେ ଆରାମରେ ଖାଇପିଇ ଶେଯ ଉପରେ ଶୋଇବାକୁ ଆସିଥିଲୁ ?'' ବୋଲି ନିଜକୁ ପ୍ରଶ୍ନ କରିଥିଲେ । ସଂଗ୍ରାମୀ, ଯଥାର୍ଥ ସଂଗ୍ରାମୀ ଜେଲ୍ ଭିତରେ ମଧ୍ୟ ଭବିଷ୍ୟତ ସଂଗ୍ରାମର ସ୍ୱପ୍ନ ଦେଖେ, ପରବର୍ତ୍ତୀ ସଂଗ୍ରାମର ଚିଠା କରେ; ବୀରକିଶୋର ସମ୍ଭବତ୍ତ ଆମ ସମସ୍ତଙ୍କୁ ସେହି ବିଷୟରେ ଚିନ୍ତା କରିବାକୁ ଚେତାଇ ଦେଇଥିଲେ ।

ସ୍ୱାଧୀନତା ପୂର୍ବରୁ ସିନା କବି ବୀରକିଶୋର ବନ୍ଦୀଶାଳାର ଆରାମ ଭିତରେ ଥାଇ ମଧ୍ୟ ଆପଣାକୁ ଏତେ କଥା ପଚାରୁଥିଲେ ଓ କ୍ଳେଶ ପାଉଥିଲେ, ସ୍ୱାଧୀନତା ଆସିବା ପରେ ଯେଉଁ ବୀର ଓ ପ୍ରବୀରମାନେ ଆମର ଭାଗ୍ୟ ଉପରେ ମ୍ୟାନେଜର ହୋଇ ବସିଛନ୍ତି, କ୍ଷମତାର ସୁନା ଓ ରୂପା ଭିତରେ ଗେହ୍ଲା ହୋଇ ରହିଛନ୍ତି, ଅୟସରେ ପଚୁଛନ୍ତି ଏବଂ ବହୁ ଦୁଷ୍ଟତା ଭିତରେ ବନ୍ଦୀ ହୋଇ ରହିଛନ୍ତି, ବହୁ ଅବଜ୍ଞା ଏବଂ ବହୁ ଉପେକ୍ଷାକୁ ଆପଣାର ଭୂୟୋଧର୍ମ ରୂପେ ଗ୍ରହଣ କରି ନେଇଛନ୍ତି, ସେମାନେ ମଧ୍ୟ ନିଜକୁ କେବେ ଏହି ପ୍ରଶ୍ନମାନ ପଚାରୁଛନ୍ତି କି ? ଅଥବା ଆଦୌ କୌଣସି ପ୍ରଶ୍ନ

ପଚାରୁଛନ୍ତି କି ? ଅଥବା, ଯେତେଦିନ ଏମାନେ କ୍ଷମତାରେ ଅଛନ୍ତି, ଶିକ୍ଷା, ରାଜନୀତି, ଶାସନ ପ୍ରଭୃତି ଆମର ଯାବତୀୟ ଘରେ ହାତୀ ଉପରେ ରାଜା ହୋଇ ବସିଛନ୍ତି, ଦେଶଟା ଭାରି ବଢ଼ିଆ ବାଗରେ ଚାଲୁଛି ବୋଲି ଖାଲି ଢ଼ମ କରିବାରେ ଲାଗିଛନ୍ତି ?

ମାତ୍ର, ସେମାନେ ଯଦି ଏହିସବୁ ପ୍ରଶ୍ନ ନପଚାରିବେ, ତେବେ ଦେଶରେ ଆଉ କେହି ନା କେହି ସେହି ପ୍ରଶ୍ନଗୁଡ଼ିକୁ ଅବଶ୍ୟ ପଚାରିବ । ସାଆନ୍ତମାନେ ନପଚାରିଲେ ସାଧାରଣମାନେ ଅବଶ୍ୟ ପଚାରିବେ । ବସ୍ତୁତଃ, ସାଆନ୍ତମାନଙ୍କର ପଚାରିବା ଅପେକ୍ଷା ସାଧାରଣମାନଙ୍କର ପ୍ରଶ୍ନ ପଚାରିବାକୁ ଯୁଗ ଅବଶ୍ୟ ଅଧିକ ମୂଲ୍ୟ ଦେବ । ସେହି ସାଧାରଣମାନେ ହିଁ ତଥାକଥିତ ଅସାଧାରଣ ମାନଙ୍କର ମୋହ ଭଙ୍ଗାଇବେ । ଏହି ଅବର୍ଜିଆ ବର୍ତ୍ତମାନ ପରେ ଯେ ତଥାପି ଏକ ଅନ୍ୟ ଭବିଷ୍ୟତ, ପରବର୍ତ୍ତୀ ଭବିଷ୍ୟତ ରହିଛି, ଏହି ଘରର ଅପଦେବତାମାନଙ୍କୁ ସେମାନେ ସେହି ବିଷୟରେ ଚେତାଇ ଦେବେ। ପ୍ରଶ୍ନ ପଚାରି ପାରିଲେ ଯାଇ ଏହି ପୁରୁଣା ପ୍ରପଞ୍ଚଟା ଧସକିବାକୁ ଆରମ୍ଭ କରିବ ।

୨୧/୮/୮୮

# ଏଣୁ ବାଉଁଶ ତେଣୁ ବାଉଁଶ

ଏପାଖରୁ ଶଙ୍କରାଚାର୍ଯ୍ୟ ସେ ପାଖରୁ ରଜନୀଶାଚାର୍ଯ୍ୟ, ଦୁହେଁ ବାଉଁଶ ନେଇ ବାହାରିଲେଣି । ପରସ୍ପରକୁ ଚ୍ୟାଲେଞ୍ଜ କଲେଣି । ପୃଥିବୀରେ କୋଉଟା ଠିକ୍ ଓ କୋଉଟା ଭୁଲ, ସେକଥା ହୁଏତ କେବଳ ପୃଥିବୀର କର୍ତ୍ତା ହିଁ କହି ପାରିବେ; ତଥାପି ଗୁରୁ ଗୁରୁ ଭିତରେ ଏହି ଚ୍ୟାଲେଞ୍ଜଟା ଯେ ଗୋଟାସୁଦ୍ଧା ସତକଥା, ସେହି ବିଷୟରେ କେହି କଦାପି ଚ୍ୟାଲେଞ୍ଜ୍ କରିପାରିବେ ନାହିଁ । ସତ୍ୟକୁ ସରପୁଳି ପରି କରି ଯେତେବେଳେ ମତଗୁଡ଼ାକର ସୃଷ୍ଟି ହୁଏ, ପଥମାନଙ୍କରେ ଭେଳିକି ଲଗାଇ ଦିଆଯାଇ ଯେତେବେଳେ ସମ୍ପ୍ରଦାୟ ଗୁଡ଼ିକର ଭିଆଣ କରାଯାଏ, ସେତେବେଳେ ପୃଥିବୀରେ ଏମିତି ତାମସାମାନ ଦେଖିବାକୁ ମିଳେ ।

ସେତେବେଳେ ଏ ମଠ ସେ ମଠ ସହିତ ମୁଷ୍ଟିଯୁଦ୍ଧ କରିବା ନିମନ୍ତେ ବାହାରି ଆସନ୍ତି । ମଠ ଯେ ଧର୍ମ ନୁହେଁ, ଗାଦୀମାନେ ଯେ ଭଗବାନ ନୁହଁନ୍ତି, ସେତେବେଳେ ସେହି ସତ୍ୟଟିର ପ୍ରମାଣ ମିଳିଯାଏ । ଭାରତବର୍ଷ ସମେତ ଏହି ପୃଥିବୀରେ ଏଭଳି ବାରବାର ହୋଇଛି । ଏଠି ଆମର ପୁରାଣକାରମାନେ ପ୍ରାୟ ଅତ୍ୟନ୍ତ ଉତ୍ସାହ ଅଥବା ଅରସିକତା ସହିତ ଠାକୁରଙ୍କ ସହିତ ଠାକୁରଙ୍କୁ ମଧ୍ୟ ଆଣି ଲଢ଼ାଇ ଦେଇଛନ୍ତି । ନିଜ

ଭକ୍ତ ସହିତ ବିଷ୍ଣୁଙ୍କର ଯୁଦ୍ଧ ହେଉଥିବା ବେଳେ ଭକ୍ତବିକଳ ଶିବ ଯାଇ ସେଠାରେ ପହଞ୍ଚି ଯାଉଛନ୍ତି । କେତେ ତାନ ଓ ମାନରେ ଯୁଦ୍ଧ ହୋଇଛି, ଧର୍ମ ଓ ଉପାସନାର କଥୁଲିଗୁଡ଼ାକ ସାକ୍ଷାତ ଉପନ୍ୟାସ ପରି ମନେ ହୋଇଛି । ସଂସାରରେ ସଂପ୍ରଦାୟର ବାନା ଉଡ଼ିଛି ।

ସଂସାରରେ ଧର୍ମ ଅସଲ କଥା ନୁହେଁ, ଗୁରୁ ମଧ୍ୟ ଆଦୌ ଅସଲ କଥା ନୁହନ୍ତି । ଗୁରୁ ହେଉଛି ମାଧ୍ୟମ, ଧର୍ମ ହେଉଛି ମାଧ୍ୟମ । ସତ୍ୟ ହେଉଛି ଅସଲ କଥା; ସେହି ସତ୍ୟକୁ ପ୍ରତ୍ୟକ୍ଷ କରାଇବାର ପ୍ରକୃତ ଭୂମିରୂପେ ଯାହାକୁ ବର୍ଣ୍ଣନା କରାଯାଇଛି, ସେହି ମଣିଷ ହେଉଛି ଅସଲ କଥା । ମଣିଷର ଉଦୟ ହେଉଛି ଅସଲ କଥା । ମଣିଷର ଉଦୟ, ଅର୍ଥାତ୍ ମଣିଷର ଜୀବନରେ ସତ୍ୟର ଉଦୟ ଏବଂ ସତ୍ୟର ଉଦୟ ସଙ୍ଗେ ସଙ୍ଗେ ପୃଥିବୀରେ ଏକ ନୂତନ ସମ୍ବନ୍ଧର ସ୍ଥାପନା-ପୃଥିବୀର ପରିବର୍ତ୍ତନ ।

ଆଚାର୍ଯ୍ୟ ରଜନୀଶ ଶଙ୍କରାଚାର୍ଯ୍ୟଙ୍କୁ ଚଣ୍ଡାଳ ବୋଲି କହିଛନ୍ତି । ଜଣେ ଗୁରୁ ଆଉଜଣେ ଗୁରୁଙ୍କୁ ଚଣ୍ଡାଳ ବୋଲି କହିବା - ସଂପ୍ରଦାୟସର୍ବସ୍ୱତାର ଇତିହାସରେ ଏଇଟା ହେଉଛି ଅତି ପୁରୁଣା କଥା । ଏହିପରି ଭାବରେ ଶୋଧାଶୋଧି ହୋଇ ସଂପ୍ରଦାୟ ସଂପ୍ରଦାୟ ସହିତ ଲଢ଼ିଛି, ମତ ମତ ସହିତ ଲଢ଼ିଛି ଓ ଗୁରୁମାନେ ଗୁରୁମାନଙ୍କ ସହିତ ଲଢ଼ି ଆସିଛନ୍ତି । ଏହିପରି ଭାବରେ ହିଁ ସେମାନେ ପରସ୍ପରକୁ ଖତମ କରି ଆସିଛନ୍ତି । ମ୍ଳେଚ୍ଛ, ଯବନ ଓ କାଫେର୍ ପ୍ରଭୃତି ଶବ୍ଦ ଏହିମାନେ ହିଁ ସୃଷ୍ଟି କରିଛନ୍ତି । ଏମାନେ ପ୍ରାୟ ସମସ୍ତେ କେବଳ ନିଜର ଗୋଠ ବା ପଇଟି ବ୍ୟତୀତ ଆଉ ସମସ୍ତଙ୍କୁ ନାସ୍ତିକ ବୋଲି କହିଛନ୍ତି । ଏମାନେ ଯେ କେହି ପଥରେ ନାହାନ୍ତି, ପୃଥିବୀରେ ବାରବାର ସେହିକଥା ପ୍ରମାଣିତ ହୋଇଛି । ଏବଂ ତାହାରି ଦ୍ୱାରା ହିଁ ଅସଲ ସତ୍ୟ, ଅସଲ ବିବେକ ଓ ଜୀବନର ପାରମାର୍ଥିକ ପରିମଳଗୁଡ଼ିକ ମଣିଷମାନଙ୍କ ଆଗରେ, ପୃଥିବୀରେ ଅଧିକ ସ୍ପଷ୍ଟ ହୋଇ ଆସିଛି । ବାଉଁଶ ବାଉଁଶ ପିଟାପିଟି ହୋଇ ଭାଙ୍ଗନ୍ତୁ, ଗୁରୁ ଗୁରୁ ଲଢ଼ା ଲଢ଼ି ହୋଇ ପରସ୍ପରକୁ ଖତମ କରିଦିଅନ୍ତୁ । ପୃଥିବୀ ଅସଲ ଧର୍ମକୁ ଆସୁ । ମଣିଷର ଅସଲ ଉଦୟ ହେଉ । ମଣିଷ ବାଟ ଚାଲି ଶିଖୁ ।

୪।୯।୮୮

# ପୋଷା ହାତୀ ଅସଲ ହାତୀ

ରଜାଙ୍କର ହାତୀଶାଳରେ ଯେତିକି ହାତୀ, ରଜାମାନେ ସେହି ମାନଙ୍କୁ ହିଁ ଏକମାତ୍ର ହାତୀ ବୋଲି ସ୍ୱୀକାର କରନ୍ତି । ଜଙ୍ଗଲରେ ମଧ୍ୟ ହାତୀ ଅଛନ୍ତି ବୋଲି

ସେମାନେ ଅବଶ୍ୟ ଜାଣିଥାଆନ୍ତି । ରଜାଙ୍କ ହାତୀଶାଳରେ ଯେତିକି ହାତୀ ଥାଆନ୍ତି, ଜଙ୍ଗଲରେ ସର୍ବଦା ତାହାଠାରୁ ଅଧିକ ସଂଖ୍ୟାରେ ହାତୀ ରହିଥାନ୍ତି । ମାତ୍ର ରାଜାମାନେ ସାଧାରଣତଃ ସେମାନଙ୍କୁ ହାତୀରେ ଗଣା କରନ୍ତି ନାହିଁ । ଆଗ ଗାତରେ ପକାଇ ସେମାନଙ୍କୁ ଧରନ୍ତି, ପୋଷାହାତୀ ପଠାଇ ଆଗ ସେମାନଙ୍କୁ ମଣ କରନ୍ତି, ସେମାନଙ୍କର ପିଠି ଉପରେ ଆଗ ନିଜର ହାଉଦାଟାଏ ପକାନ୍ତି, ତେବେଯାଇ ହାତୀଙ୍କୁ ହାତୀରେ ଗଣା କରନ୍ତି ।

ଆମ ସଂଗ୍ରାମୀମାନେ ସରକାରୀ ଚିଠା ନେଇ ଭାରତ ଭ୍ରମଣ କରି ପାରିବେ ବୋଲି ସରକାରଙ୍କ ତରଫରୁ ବରାଦ ହୋଇଛି । ସଂଗ୍ରାମୀମାନେ ତାହାର ସୁଯୋଗ ନେଉଛନ୍ତି, କେଡ଼େ ଖୁସୀ ହୋଇ ସେହି ସୁଯୋଗକୁ ଗ୍ରହଣ କରୁଛନ୍ତି । ସବୁ ସଂଗ୍ରାମୀ ନୁହନ୍ତି, ସରକାରୀ ଭତ୍ତା ପାଉଥିବା ସଂଗ୍ରାମୀମାନେ ହିଁ ସେହି ସୁଯୋଗର ଅଧିକାରୀ ହୋଇ ପାରୁଛନ୍ତି । ଏମାନେ ସମସ୍ତେ ଦରଖାସ୍ତ କରିଛନ୍ତି, ସଂଗ୍ରାମୀ ବୋଲି ପ୍ରମାଣପତ୍ର ଦାଖଲ କରିଛନ୍ତି ଓ ତାହାରି ବଳରେ ବା ତାହାରି ଫଳରେ ଭତ୍ତା ପାଉଛନ୍ତି । ମାତ୍ର, ତୁମେ ଯଦି ଭତ୍ତା ପାଉନାହଁ, ଯଦି ତୁମେ ଦରଖାସ୍ତ କରିନାହଁ, ଅର୍ଥାତ୍ ତୁମ ଦେହରେ ଯଦି ସଂଗ୍ରାମୀ ବୋଲି ଦାଗ ମଡ଼ା ହୋଇନାହିଁ, ତେବେ ତୁମେ ଭାରତଦର୍ଶନରୁ ମଧ୍ୟ ଅବଶ୍ୟ ବଞ୍ଚିତ ହୋଇ ରହିବ । କେବଳ ସ୍ୱୀକୃତମାନେ, ହାତୀଶାଳର ହାତୀମାନେ ହିଁ ସେହି ସୁଯୋଗ ଲାଭ କରିପାରିବେ ।

ଆଣ୍ଡାମାନ ଦ୍ୱୀପରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନେକ ସ୍ମୃତିକୁ ବହନ କରୁଥିବା ଯେଉଁ ବନ୍ଦୀଶାଳା ରହିଛି, ଏବେ ସରକାରୀ ଖର୍ଚ୍ଚରେ ସଂଗ୍ରାମୀମାନଙ୍କୁ ସେହି ବନ୍ଦୀଶାଳା ଦେଖିବାର ସୁଯୋଗ ମଧ୍ୟ ଦିଆଯିବ ବୋଲି ଘୋଷଣା ପ୍ରକାଶ ପାଇଛି । ମାତ୍ର ତାହା ସବୁ ସଂଗ୍ରାମୀଙ୍କ ପାଇଁ ନୁହେଁ, କେବଳ ସରକାରୀ ଭତ୍ତା ପାଉଥିବା ସଂଗ୍ରାମୀମାନଙ୍କ ପାଇଁ । ଭତ୍ତା ଗ୍ରହଣ କରିନଥିବା ବହୁସଂଖ୍ୟକ ସଂଗ୍ରାମୀ ଯେ ଦେଶରେ ଅଛନ୍ତି, ସରକାର ତଥା ସ୍ୱୀକୃତ ସଂଗ୍ରାମୀ ଅନୁଷ୍ଠାନମାନେ ସେକଥା ଖୁବ୍ ଭଲ କରି ଜାଣିଛନ୍ତି । କୌଣସି ନୀତିଗତ ବା ବ୍ୟକ୍ତିଗତ କାରଣରୁ ସଂଗ୍ରାମୀ ଭତ୍ତା ଗ୍ରହଣ କରିବାକୁ ପ୍ରସନ୍ନ କରି ନଥିବା ଜଣେ ସଂଗ୍ରାମୀ ଯେ ଆଣ୍ଡାମାନର ସ୍ମରଣୀୟ ବନ୍ଦୀଶାଳାକୁ ଦେଖି ଯିବାଲାଗି ମଧ୍ୟ ଇଚ୍ଛା କରିବନାହିଁ, ସେପରି ଅନୁମାନ କରିନେବାର ଓ ସେହି ଅନୁସାରେ ଭତ୍ତା ଗ୍ରହଣ କରି ନଥିବା ସଂଗ୍ରାମୀମାନଙ୍କୁ ସେଥିରୁ ବଞ୍ଚିତ କରିବାର ଆଦୌ କୌଣସି କାରଣ ନାହିଁ ।

ଯେଉଁମାନେ ସବୁ ସଂଗ୍ରାମ ସରିଗଲାଣି ବୋଲି ଧରି ନେଇଛନ୍ତି, ସେମାନଙ୍କ ଅପେକ୍ଷା, ଯେଉଁମାନେ ଏବେ ମଧ୍ୟ ଅସଲ ସଂଗ୍ରାମଟି ବାକି ଅଛି ବୋଲି ଅନୁଭବ

କରୁଛନ୍ତି, ସେମାନେ ଆଣ୍ଡାମାନ ବନ୍ଦୀଶାଳାରୁ ସମ୍ଭବତଃ ଅଧିକ ଯଥାର୍ଥ ପ୍ରେରଣା ପାଇବେ। ଅବସରପ୍ରାପ୍ତ ବେତନଭୋଗୀ ସଂଗ୍ରାମୀମାନେ ତ କୌଣସି ମିଉଜିଅମ୍ ଦେଖିବା ପରି ସେହି ବନ୍ଦୀଶାଳାକୁ ଦେଖିବେ । ମାତ୍ର, ଯିଏ ଏବେ ମଧ୍ୟ ଅସଲ ସଂଗ୍ରାମଟି ନିମନ୍ତେ ଅପେକ୍ଷା କରି ରହିଛି, ସେଥିଲାଗି ଯୋଗ୍ୟ ହେଉଛି, ସିଏ ସେହି ବନ୍ଦୀଶାଳାରୁ କେତେ କେତେ ପ୍ରେରଣା ପାଇବ । ମାତ୍ର ପୋଷାହାତୀକୁ ହିଁ ଏକମାତ୍ର ହାତୀ ବୋଲି ସ୍ୱୀକାର କରୁଥିବା କର୍ତ୍ତାମାନଙ୍କୁ କିଏ ସେକଥା ବୁଝାଇ ପାରିବ ?

୧୧/୯/୮୮

# ଦେଖାଶିଖା ଓଡ଼ିଶା

ଓଡ଼ିଶାରେ କ'ଣ ନାହିଁ ଯେ, ଓଡ଼ିଶାବାସୀ ପୃଥିବୀରେ ଅନ୍ୟ କାହାଠାରୁ କିଛି ଶିଖିବା ଲାଗି ମନ କରିବେ ? ଯୋଉଠି ବହୁ ବ୍ୟକ୍ତିଗତ ମିଛ ଗଉଁଗୁଡ଼ାକ କାଳକ୍ରମେ ବହୁ ଅଜ୍ଞତାର ଶରଧା ପାଇ ଶେଷକୁ ଏକ ସାମୂହିକ ଗଉଁରେ ପରିଣତ ହୋଇଥାନ୍ତି ଓ ତେଣୁ କୁଳକୁ ଭୂଷଣ ବୋଲି ମନେ ହେଉଥାନ୍ତି, ସେଠି ସବୁକିଛି ଘରେ ହିଁ ରହିଥାଏ। ସେଠି କେଉଁଠାରୁ କିଛି ଚହଲେ ଶିଖିବାର ନଥାଏ । ତେଣୁ 'ଦେଖାଶିଖା ଓଡ଼ିଶା' ବୋଲି କଥାଟିକୁ ଯିଏ ଓଡ଼ିଶାରେ ସବାଆଗ ଉଚ୍ଚାରଣ କରିଥିବ, ସିଏ ନିଶ୍ଚୟ ମାଡ଼ ଖାଇଥିବ ।

ଆମେ ଓଡ଼ିଶାରେ ସତେଅବା କୌଣସି ଦୈବୀମାୟାରେ ଯେଉଁ ଧାତୁରେ ଗଢ଼ାହୋଇ ଆସିଛୁ, ସେହି ଧାତୁ ଆମକୁ ଭାରି ଉଦ୍ଧତ ଓ ତେଣୁ ଗ୍ରହଣକାତର କରି ରଖିଛି । ଆମେ କେବଳ 'ଆମଠାରୁ ଶିଖ, ଆମଠାରୁ ଦେଖ' ବୋଲି କହିବାରେ ଲାଗିଛୁ । ତେଣୁ, ପୃଥିବୀରେ ଅନ୍ୟ ସମସ୍ତଙ୍କୁ ସତେଅବା କହିବାରେ ଲାଗିଛୁ, ତୁମ କାହାରିଠାରୁ ଆମର ଆଦୌ କିଛିହେଲେ ଶିଖିବାକୁ ନାହିଁ । ଆମକୁ ଗଞ୍ଜେଇ ଯୋଗାଇଦେଇ ଆମ ଗୁରୁଜନମାନେ ଆମକୁ କହିବାରେ ଲାଗିଛନ୍ତି ଯେ, ଆମର ପୂର୍ବପୁରୁଷ ଯୁଦ୍ଧ କରୁକରୁ କେତେ ନା କେତେ ଦୂରକୁ ଚହଟି ଯାଇଥିଲେ ଓ ଏକାବେଳେକେ ଗଙ୍ଗାନଦୀରେ ଘୋଡ଼ାମାନଙ୍କୁ ପାଣି ପିଆଉଥିଲେ, ସେମାନେ ଦୂର ଗୋଦାବରୀ ନଦୀର ତୀରରେ ଅବସ୍ଥିତ ଦୁର୍ଗକୁ ଜୟ କରିଥିଲେ । ଆମର ସେହି ଗଉଁ କ'ଣ ସେତିକିରେ ସରୁଛି ? ଏବେ ରଜାମାନେ ନାହାନ୍ତି ସତ, ମାତ୍ର ଆମେତ ରହିଛୁ । ଆମେ ରହିଛୁ ତ ଆମ ଗଉଁଗୁଡ଼ାକ ମଧ୍ୟ ଅବଶ୍ୟ ରହିଛି । ପ୍ରାୟ ପାହାଚ ପାହାଚ ହୋଇ ରହିଛି । କଟକିଆ ସମ୍ବଲପୁରିଆଙ୍କୁ ଆମଠାରୁ ଶିଖ ବୋଲି କହୁଛନ୍ତି,

ସମ୍ବଲପୁରିଆ କଳାହାଣ୍ଡିଆମାନଙ୍କୁ ମଧ୍ୟ ଆମଠାରୁ ଶିଖ ବୋଲି କହିବାରେ ଲାଗିଛନ୍ତି ଏବଂ ଏମାନେ ସମସ୍ତେ ନିଜ ନିଜ କ୍ଷେତ୍ରରେ ଆଦିବାସୀମାନଙ୍କୁ ବି ଆମଠାରୁ ଦେଖ ଓ ଆମଠାରୁ ଶିଖ ବୋଲି କହିବାରେ ଲାଗିଛନ୍ତି । ପାଠୁଆମାନେ ପାଠ ନପଢ଼ିଥିବା ଲୋକମାନଙ୍କୁ ଆମଠାରୁ ଦେଖ ଓ ଶିଖ ବୋଲି କହୁଛନ୍ତି । ଆମକୁ ମାନ ବୋଲି ବି କହିବାରେ ଲାଗିଛନ୍ତି ।

କେବଳ ତଳକୁ ଅନାଇ ହୁକୁମ ଦେଉଥିବା ଓ ସେଇଟାର ତୁଳନାରେ ଆପଣାକୁ ଅଧିକ ବୋଲି ଭାବୁଥିବା ମଣିଷମାନେ ସତେଅବା କେହି କିଛି ଦେଖନ୍ତି ନାହିଁ, କେହି କିଛି ଖୋଜନ୍ତି ନାହିଁ । ସେମାନେ ତୁଚ୍ଛା ଅନୁକରଣ କରୁଥାନ୍ତି । ସାନମାନେ ବଡ଼ମାନଙ୍କୁ ଅନୁକରଣ କରି ସେମାନଙ୍କୁ ବଳିଯିବେ ବୋଲି ଚେଷ୍ଟା କରୁଥାଆନ୍ତି । ସତ୍ୟାନାଶ ହୁଅନ୍ତି, ସମ୍ମାନ ହରାନ୍ତି । କୁଜି ଅଫିସରଟିଏ ତା'ଠାରୁ ବଡ଼ ଅଫିସରଟିର ଅନୁକରଣ କରୁଥାଏ, ତଥାକଥିତ ବଡ଼ ଅଫିସରଟିଏ ମଧ୍ୟ ତାହାଠାରୁ ଆହୁରି ବଡ଼ ଅଫିସରଟିକୁ ଅନୁକରଣ କରୁଥାଏ । କେହି ଆଗକୁ ଯାଆନ୍ତି ନାହିଁ, ଖୋଳଟିଏ ଭିତରେ ବାନ୍ଧିହୋଇ ରହିଥାନ୍ତି । ଭାରି ସ୍ୱର୍ଣକାତର ହୋଇ ରହିଥାନ୍ତି । ଉପରେ ଅଭିନୟ କରନ୍ତି । ଭ୍ରମ ଦେଖାନ୍ତି, ଯାହା ନୁହନ୍ତି ନିଜକୁ ସେହିପରି ଦେଖାଇବାର ଶ୍ରମ କରିବାରେ ଲାଗିଥାନ୍ତି ।

୧୮/୯/୮୮

# ଅନ୍ୟ ଶାସନ, ସ୍ୱୟଂଶାସନ

ଶିକ୍ଷାରେ ଅନ୍ୟର ଶାସନ ଜାରି ରହିଥିବା ପର୍ଯ୍ୟନ୍ତ ତାହା ଯଥାର୍ଥ ଶିକ୍ଷାକୁ ମୋଟେ ସୁହାଏ ନାହିଁ । ଶିକ୍ଷକ ସ୍ୱାଧୀନ ହେଲେ ଯାଇ ଶିକ୍ଷାକୁ ତା'ର ସ୍ୱାଭାବିକ ଉନ୍ମୋଚନଟିଏ ସମ୍ଭବ ହୋଇଥାଏ । ଉନ୍ମୋଚନ ଅଗ୍ରଗତିର କାରଣ ହୁଏ । ଯେଉଁଠି ଶାସକମାନେ ଶିକ୍ଷାର ବ୍ୟବସ୍ଥାପକ ହୋଇ ରହିଥାନ୍ତି, ସେଠି ଶିକ୍ଷାରେ ଯାବତୀୟ ଅବ୍ୟବସ୍ଥା ଆସି ପହଞ୍ଚେ ଏବଂ ତେଣୁ ଅରାଜକତା ରାଣୀ ହୋଇ ବସିଥାଏ । ମଧୁଚକ୍ରର ସମସ୍ତ ମାଛି ନପୁଂସକ ହୋଇ ରହିଥାନ୍ତି । ଦରମା ବଢୁଥାଏ, ଛଟକଗୁଡ଼ାକ ସତେଅବା କେଉଁ କ୍ଲବ୍‌ଘରର ରୀତିପରି ଭେସରାରୁ ଅଧିକ ଭେସରା ହେବାରେ ଲାଗିଥାଏ । ତେଣେ ଶିକ୍ଷାକୁ ଉପରକଣ୍ଟା ଓ ତଳକଣ୍ଟା ଦେଇ କିଳି କରି ରଖାଯାଇଥାଏ ।

ଆମ ଦେଶର ଏକ ସ୍ୱତନ୍ତ୍ର ଦୁର୍ଭାଗ୍ୟ ଯେ, ଶିକ୍ଷାଳୟଟିଏ ସ୍ୱୟଂଶାସିତ ହେବାର ଅଧିକାର ଲାଭ କରିବା ନିମନ୍ତେ ସେଥିଲାଗି ମଧ୍ୟ ଶାସକମାନଙ୍କର ଅନୁକୂଳ ଅନୁମୋଦନର ଆବଶ୍ୟକତା ରହିଥାଏ । ଯିଏ ଟଙ୍କା ଦେବ, ତାହାରି ଅନୁଗ୍ରହ ଉପରେ ମୋର ଯୋଗ୍ୟତା ନିର୍ଭର କରିବ, ମୁଁ କେତେବେଳେ ସ୍ୱୟଂ ଆପଣାକୁ ଶାସିତ ଓ ପରିଚାଳିତ କରିପାରିବି, ସେକଥାର ନିଷ୍ପତ୍ତି ସେଇ କରିବ, ଆମର ଏହି କଳିଯୁଗରେ ମଧ୍ୟ ଏଇଟା ଏକ ଏକାନ୍ତ ଅବାଗିଆ କଥା ବୋଲି ବୋଧ ହୋଇ ପାରିବା ଉଚିତ । ଆତ୍ମଶାସନ ବା ସ୍ୱୟଂଶାସନ ସର୍ବଦା ସ୍ୱୟଂର ହିଁ ଏକ ନିଷ୍ପତ୍ତି ହୋଇପାରିବା ଉଚିତ । ମୁଁ କେତେବେଳେ ନିଜକୁ ନିଜେ ଶାସନ କରିପାରିବି, ମୋର ନିଜ ଆଚରଣ ଓ ବେଭାରଣ ଦ୍ୱାରା ହିଁ ସ୍ୱୟଂ ଦେଖାଇ ଦେଇପାରିବା ଉଚିତ । ମାତ୍ର, ଗୋଟିଏ ଶିକ୍ଷାନୁଷ୍ଠାନ ଯେତେଦିନ ପର୍ଯ୍ୟନ୍ତ ସ୍ୱୟଂଶାସନର ଘୋଷଣା କରିବା ଲାଗି ସରକାରଙ୍କର ଅନୁମୋଦନକୁ ଅପେକ୍ଷା କରି ରହିଥାଏ, ସେହି କ୍ଷେତ୍ରରେ ଅନୁଷ୍ଠାନଟି ସତକୁ ସତ ସ୍ୱୟଂଶାସନର ଯୋଗ୍ୟ ହୋଇ ପାରିନାହିଁ ବୋଲି ଆଶଙ୍କା କରିବାର ବହୁତ କାରଣ ଅବଶ୍ୟ ରହିଥିବ ।

ସେହି ପରିସ୍ଥିତିରେ, କୌଣସି ଧୋକାରେ ପଡ଼ି କେହି ଶାସକ ଶିକ୍ଷାଳୟଟିକୁ ସ୍ୱୟଂଶାସନର ଅନୁମତି ପ୍ରଦାନ କଲେ ମଧ୍ୟ ତଦ୍ଦ୍ୱାରା ଲାଭ ଅପେକ୍ଷା ହାନିଗୁଡ଼ାକ ହିଁ ଅଧିକ ହେବ । ଉପରେ, ସୂତ୍ରରେ, ଖାତା ଗୁଡ଼ାକରେ ଏବଂ ଟଙ୍କା ଦେଣନେଣରେ ସବୁ ଠିକଣାମନ୍ତେ ଚାଲିଥିବ, ତଥାପି ଡିହ ଉପରେ ବିଲୁଆ ବୁଲୁଥିବେ; ତୁଚ୍ଛା ଅଯୋଗ୍ୟମାନେ, ଅଳସୁଆମାନେ ଓ ମିଛ ବାଣ ମାରୁଥିବା ଭୀରୁମାନେ ଓ ଠକମାନେ ପୁଚ୍ଛ ଉପରକୁ ଟେକି ପ୍ରଦର୍ଶନ କରିବାରେ ଲାଗିଥିବେ । ପିଲାମାନେ ଅଲକ୍ଷଣା ହୋଇ ବୁଲୁଥିବେ, ସେମାନଙ୍କୁ ପାଠ ପଢ଼ାଇବାର ଅଧାପକମାନେ ଛତରା ହୋଇ ଆଉ କୋଉ ସାହିରେ ଯାଇ ହାଇ ମାରୁଥିବେ । ଶିକ୍ଷାଳୟ ପାଇଁ ବରାଦ ହୋଇ ଆସିଥିବା ତହବିଲ ଗୁଡ଼ାକ ଏଡ଼େ ନିବିଡ଼ ଭାବରେ ନିଜର ସମ୍ପତ୍ତି ବୋଲି ମନେ ହେଉଥିବ ଯେ, କର୍ତ୍ତାମାନେ ତାକୁ କାଗଜପତ୍ରରେ ସବୁକିଛି ଠିକ୍ ରଖି ନିଜେ ଖରଚ କରିବାରେ ଲାଗିଥିବେ, ସମସ୍ତେ ଲୁଟି ନେବାରେ ଲାଗିଥିବେ ।

ଅଯୋଗ୍ୟ ମଣିଷ ହାତରେ ସୁନା ପଡ଼ିଲେ ତାହା ଘରଣୀ ଗଳାରେ କଣ୍ଠି ହୋଇ ରହିଥାଏ ସିନା, ତଦ୍ଦ୍ୱାରା ଶିକ୍ଷାଳୟର ମୋଟେ କୌଣସି ଉଦ୍ଦେଶ୍ୟ ସାଧିତ ହୋଇ ପାରେନାହିଁ । ଆମ ଦେଶରେ ଏବେ ଯେଉଁ କୋଟି ପରିମାଣରେ ପଇସା ଖରଚ ହେଉଛି, ମୁଖ୍ୟତଃ ସେହି କାରଣରୁ ତାହା ଆମ ଅନେକଙ୍କ ଘରମାନଙ୍କରେ

ଘରଣୀ ବେକରେ ସୁନା କଣ୍ଠି ହୋଇ ଶୋଭା ପାଉଛି । ଦେଶର ଭାଗ୍ୟରୂପୀ ଅସଲ ଠାକୁର ଉପାସ ରହି ଯାଉଛନ୍ତି । ଏକ ଅବର୍ଜିଆ ସ୍ୱୟଂଶାସନ ଚାଲିଛି, ସିଆଣିଆ ସ୍ୱେଚ୍ଛାଚାରୀର ସ୍ୱୟଂଶାସନ ଚାଲିଛି । ଆମ ପରେ ଏ ଦେଶକୁ ପ୍ରଳୟ ହିଁ ଆସିବ ବୋଲି ସିଆଣିଆ ପଣ୍ଡିତମାନେ ମଧ୍ୟ ପ୍ରାୟ ତାଳ ଦେଇ କହିବାକୁ ଆରମ୍ଭ କଲେଣି ।

୨୫/୯/୮୮

# ମହାନ୍ ପ୍ରେମୀସମାଜ

ଆମର ଏହି ଆଧୁନିକ ସଂସାରରେ ସତକୁ ସତ ପ୍ରେମ କରି ପାରୁଥିବା ମଣିଷ ଯେତିକି କ୍ଷିପ୍ର ଭାବରେ କମି କମି ଯାଉଛନ୍ତି, ଏକ ଅନ୍ୟ ନିକୁଛିଆ ପ୍ରକାରର ପ୍ରେମୀଙ୍କର ସଂଖ୍ୟା ସତେଅବା ସେତିକି ଅଧିକ ପରିମାଣରେ ବୃଦ୍ଧି ପାଇବାରେ ଲାଗିଛି । ଅନେକ ମଣିଷ ଅଛନ୍ତି, ଯେଉଁମାନେ କି କୁକୁର ଭଲ ପାଆନ୍ତି, ବିଲେଇ ଭଲ ପାଆନ୍ତି । ସେମାନେ ନିଜେ କୁକୁର ବିଲେଇ ନହୋଇଥିଲେ ମଧ୍ୟ ସେହି ବ୍ୟକ୍ତିମାନଙ୍କୁ କେଡ଼େ ସ୍ୱାଭାବିକ ଭାବରେ କୁକୁରପ୍ରେମୀ ଓ ବିରାଡ଼ିପ୍ରେମୀ ବୋଲି କୁହାଯାଇଥାଏ ।

ଏବେ ପ୍ରେମୀମାନଙ୍କର ପ୍ରେମପରିଧି ଅତ୍ୟନ୍ତ ସାଂଘାତିକ ଭାବରେ ପ୍ରସାରିତ ହେବାକୁ ଆରମ୍ଭ କଲାଣି । ଏବେ ସାହିତ୍ୟପ୍ରେମୀ ବାହାରିଲେଣି, ସଂସ୍କୃତିପ୍ରେମୀ ବାହାରିଲେଣି, ସଭାପ୍ରେମୀ ଓ କଳାପ୍ରେମୀ ବି ବାହାରିଲେଣି । ସତେଅବା ଆଉ ଅନ୍ୟକିଛି ନପାଇ କେତେ ମଣିଷ ପୂଜ୍ୟପୂଜାର ବି ପ୍ରେମୀ ହେଲେଣି । ଅସଲ ବଗିଚାପ୍ରେମୀ ବଗିଚାକୁ ଭଲପାଏ । ସିଏ ବଗିଚାରେ କାମ କରେ, ଫୁଲଗଛଟିଏ ଲଗାଏ, ଫୁଲଟିଏ ଫୁଟାଏ ଏବଂ ସେଇଥିରୁ ସେ କେତେ ଖୁସି ପାଏ । ଅବଶ୍ୟ ଏପରି ଅସଣ୍ଣା ଅର୍ଥାତ୍ ଅନ୍ୟବାଗିଆ ଅନେକ ମଣିଷ ଏହି ପୃଥିବୀରେ ଅଛନ୍ତି, ଯେଉଁମାନେ କି ମାଳି ଲଗାଇ ବଗିଚା କରନ୍ତି, ମାଳି ହାତରେ ଫୁଲ ଫୁଟାନ୍ତି ଓ ସେଇଥିରୁ ସତେଅବା ଆପଣାର କେଉଁ ଅପାରଗତାର ଦୋଷକୁ ମେଣ୍ଟାଇବାରେ ଲାଗିଥାନ୍ତି । ଫୁଲ ଫୁଟାଉଥିବା ମଣିଷକୁ ମାଳି ବୋଲି କୁହାଯାଏ ଏବଂ ବଗିଚାର ମାଲିକକୁ ପୁଷ୍ପପ୍ରେମୀ ବୋଲି କୁହାଯାଏ, ପୁରସ୍କାର ଦିଆଯାଏ ।

ସାହିତ୍ୟିକମାନଙ୍କ ପ୍ରତି ସାହିତ୍ୟପ୍ରେମୀମାନଙ୍କର ପ୍ରକୃତରେ କେତେ ଦରଦ ! ସଂସ୍କୃତି ଲାଗି, କଳା ଲାଗି ସଂସ୍କୃତିପ୍ରେମୀ ଓ କଳାପ୍ରେମୀମାନଙ୍କର କେତେ ଦରଦ ! ସାହିତ୍ୟପ୍ରେମୀମାନଙ୍କର କଥା ତ ଏକାବେଳେକେ ସ୍ୱତନ୍ତ୍ର । ସେମାନେ ଅଛନ୍ତି ବୋଲି

ଦେଶରେ ସାହିତ୍ୟ ରହିଛି ବୋଲି ଆମର ଭାଟମାନେ କେତେ ନା କେତେ ପ୍ରଚାର ନକରନ୍ତି ! ଆଗେ ରଜାମାନେ ଥିଲେ ବୋଲି ସାହିତ୍ୟିକମାନେ ରହିଥିଲେ, କପିଳେନ୍ଦ୍ରଦେବ ଥିଲେ ବୋଲି ସାରଳା ଦାସ ରହିଥିଲେ ବୋଲି କହିବା ପରି ଇଏ ମଧ୍ୟ ସେହିପରି ଗୋଟିଏ କଥା ।

ସାହିତ୍ୟପ୍ରେମୀମାନେ ପୁରସ୍କାର ଦିଅନ୍ତି । କୋଉମାନେ ପୁରସ୍କାର ପାଇବେ, ସେମାନଙ୍କୁ ବାଛିବାଲାଗି ଭାଲୁସଭାମାନ ବସାନ୍ତି । ଜାତିର ସାହିତ୍ୟ ତଦ୍ୱାରା ସତେ ଅବା କେତେ ନା କେତେ ଟେକି ହୋଇଗଲା ବୋଲି ଅନୁଭବ କରନ୍ତି ।

ଏହି ପ୍ରେମୀମାନଙ୍କର କୋଉଠି ନା କୋଉଠି ଗୋଟିଏ କଣା ରହିଥାଏ ଅଥବା ଏକାବେଳକେ ଅନେକ କଣା ରହିଥାଏ । ସେଥିଲାଗି ସଭା ବସି ସାହିତ୍ୟ ନାମରେ, କଳା ନାମରେ ଓ ସଂସ୍କୃତି ନାମରେ ଗୋଟାଏ ହୁଲସ୍ଥୁଲ ନପଡ଼ିଲେ ସେମାନଙ୍କ ସରାଗ କିମ୍ବା ଅପସରାଗର କଣ୍ଡୁଗୁଡ଼ାକ ମୋଟେ ଦୂର ହୁଏନାହିଁ । ବିଚରା ସାହିତ୍ୟିକ, ଅସଲ କଳାକାର ଏବଂ ଜୀବନକୁ ହିଁ ଯାବତୀୟ ସଂସ୍କୃତିର ସମବାଚୀ ବୋଲି ଗ୍ରହଣ କରୁଥିବା ପ୍ରେମିକ ମଣିଷଟିଏ ଏଗୁଡ଼ାକ ଦେଖି ବଡ଼ ହରବରରେ ପଡ଼ିଯାଏ । ସଭା ସହିତ ସଭାର ପ୍ରତିଯୋଗିତା ଲାଗିଯାଏ । କୁବୁଜାମାନେ କୁବୁଜାମାନଙ୍କୁ ଝିଙ୍ଗାସିବାରେ ଲାଗିଥାନ୍ତି । ଥଳି ଥଳି ଟଙ୍କା ଖରଚ ହୋଇ ହାତୀଟିଏ ଗଢ଼ାଯାଏ ଓ ସେହି ହାତୀ କଳସଟିଏ ମୁଣ୍ଡାଇ ବରଟିଏ ଖୋଜି ବୁଲୁଥାଏ । ନକଲି ବରମାନେ ହାତୀ ସେହିମାନଙ୍କ ମୁଣ୍ଡରେ କଳସ ଢ଼ାଳୁ ବୋଲି କେଡ଼େ ନେହୁରା ହୋଇ ମୁକୁଳା ହେଇ ସଜେଇ ବୁଲୁଥାନ୍ତି । ଅସଲ ବରମାନେ ଲାଜରା ହୋଇ ଘରେ ଯାଇ ଲୁଚନ୍ତି । ସେମାନଙ୍କର ଶ୍ରେଷ୍ଠ କବିତାଟି ତେବେ ସୁଦ୍ଧା ଲେଖା ହୋଇନଥାଏ ।

୨/୧୦/୮୮

# ଅଗ୍ନି ବିରୁଦ୍ଧରେ ଅଗ୍ନି

'ଅଗ୍ନି' ନାମକ ଏକ କ୍ଷେପଣାସ୍ତ୍ରକୁ ବାଲେଶ୍ୱର ଜିଲ୍ଲାର ଚାନ୍ଦିପୁରଠାରେ ପରୀକ୍ଷା କରି ଦେଖିବେ ବୋଲି ଭାରତ ସରକାର ସବୁଯାକ ମସୁଧା କରିସାରିଲେଣି । ଚାନ୍ଦିପୁର ଅଞ୍ଚଳରେ ଘର କରି ରହିଥିବା ଲୋକମାନେ ସେହି ପରୀକ୍ଷାକୁ କରାଇ ଦେବେନାହିଁ ବୋଲି କହୁଛନ୍ତି । ସେମାନେ ପ୍ରତିବାଦ କରୁଛନ୍ତି, ପ୍ରତିରୋଧ କରିବେ ବୋଲି ସଜ ହେଉଛନ୍ତି । ଚାନ୍ଦିପୁରର ମଣିଷମାନେ ମଧ୍ୟ ଭାରତବାସୀ । ଭାରତବର୍ଷର

ସରକାର ସେମାନଙ୍କ ଉପରେ ନାହିଁ, ସେମାନଙ୍କ ସକାଶେ ରହିଛି । ଦୁନିଆଯାକର ସରକାର ଦୁନିଆରେ ବାସ କରୁଥିବା ମଣିଷମାନଙ୍କ ସକାଶେ ହିଁ ରହିଛନ୍ତି । ସରକାରମାନେ ଦେଶରକ୍ଷା କରିବାର ଦାୟିତ୍ୱକୁ ଏଡ଼େ ପ୍ରବଳ ଭାବରେ ଭାବୁଛନ୍ତି ଯେ, ମଣିଷମାନଙ୍କର ରକ୍ଷାକୁ ସତେ ଅବା ଗୋଟାସୁଦ୍ଧା ପାଶୋରି ପକାଉଛନ୍ତି ।

ସରକାର କହୁଛନ୍ତି, ଦେଶର ବୃହତ୍ତର ସ୍ୱାର୍ଥରକ୍ଷା ଦୃଷ୍ଟିରୁ ସେମାନେ କ୍ଷେପଣାସ୍ତ୍ର ଓ ଅତିକ୍ଷେପଣାସ୍ତ୍ର ଗୁଡ଼ିକର ପରୀକ୍ଷା କରିବାକୁ ମନସ୍ଥ କରିଛନ୍ତି । ଦଶଶିରା ରାବଣ କାମରେ ଲାଗି ନପାରିଲେ ସହସ୍ରଶିରା ରାବଣର ପାଞ୍ଚ କରୁଛନ୍ତି । ତେଣୁ କୌଣସି ଅଞ୍ଚଳରେ ବାସ କରୁଥିବା ମଣିଷମାନଙ୍କର ଦୈନନ୍ଦିନ ଜୀଅନ୍ତା ସ୍ୱାର୍ଥଗୁଡ଼ିକୁ ସେମାନେ ଅପେକ୍ଷାକୃତ କ୍ଷୁଦ୍ରତର ବୋଲି ମନେ କରୁଛନ୍ତି । ପୃଥିବୀରେ ଅଧିକାଂଶ ମଣିଷଙ୍କର ଅସଲ ସ୍ୱାର୍ଥଗୁଡ଼ାକ ଚୂଲୀକୁ ଯାଉଛି । ତଥାକଥିତ ବୃହତ୍ତର ସ୍ୱାର୍ଥରକ୍ଷା କରିବାର ଭୟାବହତାରେ ହିଁ ପୃଥିବୀର ଅଧିକ ପଇସା, ଅଧିକ ବୁଦ୍ଧି ଓ ଅଧିକ ବିଜ୍ଞାନ ଖର୍ଚ୍ଚ ହେଉଛି । ବରବାଦ ହେଉଛି ।

ମଣିଷର ପେଟ ଭିତରେ ଅଗ୍ନି ଜଳୁଛି । ଏ କେବଳ କ୍ଷୁଧାର ଅଗ୍ନି ନୁହେଁ। ଅବଶ୍ୟ ସେହି ଅଗ୍ନିଟି ମଧ୍ୟ ଅଧିକାଂଶ ମଣିଷଙ୍କର ଜୀବନରେ ଏ ପର୍ଯ୍ୟନ୍ତ ସମାହିତ ହୋଇନାହିଁ । ତଥାପି କ୍ଷୁଧାର ଅଗ୍ନି ବ୍ୟତୀତ ଆଉ ଆଉ ଅନେକ ଅଗ୍ନି ରହିଛନ୍ତି । କେବଳ ଉଦରର କ୍ଷୁଧା ବ୍ୟତୀତ ମନୁଷ୍ୟର ଆଉ ଆଉ ଅନେକ କ୍ଷୁଧା ରହିଛି । ମନୁଷ୍ୟର ଜୀବନବାସନା, ସିଏ ଏକ କମ୍ ଶକ୍ତିଶାଳୀ ଅଗ୍ନି ନୁହେଁ । ମଣିଷ ଜୀବନଟିଏ ବଞ୍ଚିବ, ସମ୍ବନ୍ଧଗୁଡ଼ିକୁ ଯୋଡ଼ିବ, ଆପଣାକୁ ମନୋମତ କୌଣସି କ୍ଷେତ୍ରରେ ନିଃଶେଷିତ କରି ସମର୍ପି ଦେଇ ପାରିବ, ଆପଣାର ତାତ୍କାଳିକ୍ ପରିଧିଗୁଡ଼ିକୁ ଡେ଼ଇଁ କୌଣସି ଏକ ବୃହତ୍ତର ପରିଧି ମଧ୍ୟକୁ ବିକଶିତ ହୋଇ ଉଠିବା ଲାଗି ସିଏ ଆପଣାର ଜୀବନ ବଞ୍ଚିବ, – ଏସବୁ ଆଦୌ କୌଣସି ଗୁଣରେ କମ୍ ଶକ୍ତିଶାଳୀ ନୁହନ୍ତି । ମଣିଷର ସବୁଠାରୁ ବଡ଼ କ୍ଷୋଭ ହେଉଛି ଯେ ତା'ର ଶାସନକର୍ତ୍ତାମାନେ ତାହାର ଏହି ଅଗ୍ନିକୁ ପ୍ରଥମ ସ୍ୱୀକୃତି ଏପର୍ଯ୍ୟନ୍ତ ଦେଇ ନାହାନ୍ତି । ସେମାନେ ସତେଅବା ଅନ୍ୟ ଫିସାଦରେ ପଡ଼ି ଅନ୍ୟ ଏକ ଅଗ୍ନି ପଛରେ ଧାଇଁଛନ୍ତି ଓ ତା' ଘରଟିକୁ ଜାଳିପୋଡ଼ି ପାଉଁଶ କରିଦେବେ ବୋଲି ବାହାରିଛନ୍ତି । ଏ ଅଗ୍ନି ଓ ସେ ଅଗ୍ନିଭିତରେ ଯୁଦ୍ଧ ଚାଲିଛି । ଦେଶ, ଜାତି ଓ ପଟର ଯାବତୀୟ ସୀମାକୁ ଡେ଼ଇଁ ବିଶ୍ୱବ୍ୟାପୀ ଏହି ଯୁଦ୍ଧ ଚାଲିଛି । ବିଶ୍ୱଶାସକ ବିରୁଦ୍ଧରେ ବିଶ୍ୱପଦାତିକର ଯୁଦ୍ଧ ଚାଲିଛି । ଚାନ୍ଦିପୁରର ଅଧିବାସୀ ମଧ୍ୟ ଆପଣା କ୍ଷେତ୍ରରେ ସେହି ଯୁଦ୍ଧର ହିଁ ପ୍ରତିନିଧିତ୍ୱ କରୁଛନ୍ତି । ସେହି ଯୁଦ୍ଧରେ କିଏ ଜିତିବ ବା କିଏ ହାରିବ,

ସେକଥାର ମୀମାଂସା ଦିନେ ନା ଦିନେ ଆମର ଏହି ପୃଥିବୀପୃଷ୍ଠରେ ହେବ । ଉଦରର ଅଗ୍ନି ମନୁଷ୍ୟ-ହୃଦୟର ଅଗ୍ନି ଏକତ୍ର ହୋଇ କ୍ଷେପଣାସ୍ତ୍ର ଅଗ୍ନି ବିରୁଦ୍ଧରେ ଯୁଝିବେ ବୋଲି ସଜ ହେଲେଣି । ଯଦି ହୃଦୟ ହାରିଯାଏ, ତେବେ କ୍ଷେପଣାସ୍ତ୍ର ନେଇ ଯୁଦ୍ଧ ଜିତିଥିବା ଅଲକ୍ଷଣା ଶାସକମାନେ ପୃଥିବୀରେ ଆଉ କାହା ସ୍ୱାର୍ଥର ସୁରକ୍ଷା କରିବାକୁ ରହିବେ ?

୯/୧୦/୮୮

# ସଂଗ୍ରାମୀମାନଙ୍କର କ୍ଷୋଭ

ସଂଗ୍ରାମୀମାନଙ୍କ ସଭା ସହରରେ ବସିଥିଲା । ସେଥିରେ ସଂଗ୍ରାମୀମାନେ ଭାଷଣ ଦେଲେ, ଭାଷଣ ଶୁଣିଲେ । ଏମାନେ ସମସ୍ତେ ଏକଦା ସଂଗ୍ରାମୀ ଥିଲେ । ଦେଶକୁ ରାଜନୀତିକ ସ୍ୱାଧୀନତା ଆସିବା ପରେ ଏହି ଦେଶର ସଂଗ୍ରାମ ସରିଗଲା ବୋଲି କହିବାକୁ ଆରମ୍ଭ କଲେ । ଏହିମାନଙ୍କ ଭିତରୁ ଥୋକେ କ୍ଷମତାକୁ ଗଲେ, କେହି ବଡ଼ ଏବଂ କେହି ସାନ କ୍ଷମତାରେ ରହିଲେ । ବିଚିତ୍ରବୀର୍ଯ୍ୟ ହେଲେ, ଚିତ୍ରାଙ୍ଗ ପ୍ରାୟେ ଦିଶିଲେ । ଯେଉଁମାନେ କ୍ଷମତା ଭିତରେ ପଶି ନ ପାରିଲେ, ସେମାନେ ଭତ୍ତା ପାଇଲେ । ଏକଦା ସଂଗ୍ରାମ କରିଥିଲେ ବୋଲି ସଲାମୀ ପାଇଲେ । ଦରଖାସ୍ତ କଲେ, ସଲାମୀ ପାଇଲେ । ମତିମାନ୍ ସ୍ୱାଧୀନ ସରକାର ଏହି ଦରଖାସ୍ତ କରିଥିବା ଲୋକଙ୍କୁ ହିଁ ସଂଗ୍ରାମୀ ବୋଲି ସ୍ୱୀକାର କଲେ ଓ ସଲାମୀ ଦେଲେ । ବୁଢ଼ା କେବଳ ବୁଢ଼ାମାନଙ୍କୁ ସିନା ଚିହ୍ନିବ । ତେଣୁ ଭାରତବର୍ଷରେ ତାହା କଦାପି ଅନ୍ୟଥା ହେଲାନାହିଁ । ଏଥର ସଂଗ୍ରାମୀମାନେ ଭାଷଣ ମାଧ୍ୟମରେ ଦାରୁଣ କ୍ଷୋଭ ପ୍ରକାଶ କରି କହିଲେ, କ୍ରମେ ଭାରତବର୍ଷରେ ଅମଲାତନ୍ତ୍ରଟା ଅତ୍ୟନ୍ତ ପ୍ରବଳ ହେଲା, – ରଜା ହୁଡ଼ିବାରୁ ଦେଶ ଉଜୁଡ଼ିଗଲା, ପ୍ରଜା ଉଜୁଡ଼ିଗଲେ, ଇତ୍ୟାଦି । ସେମାନେ ଏହି ସବୁକିଛିରେ ଏଥର ଭାରି ବିଚଳିତ ହୋଇ ପଡୁଥିବାର ଖବରକାଗଜରେ ବାହାରିଥିବା ଉଜ୍ଜ୍ୱଳ ଖବରଗୁଡ଼ିକରୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଜଣା ପଡୁଥିଲା । ବିଚଳିତ ଓ କ୍ଷୁବ୍‌ଧ ହେବା ବ୍ୟତୀତ, ବିଚଳିତ ହେଲାପରି ଦିଶିବା ବ୍ୟତୀତ ଏମାନେ ଆଉ ଅଧିକା କ'ଣ କରି ପାରିବେ ? ଯାହାର ଭତ୍ତା ଖାଇ ମୁଁ ବୀର ବୋଲି ଗଣା ହେବି, ତାକୁ ନିନ୍ଦିବାର ତ ପୁଣି ଗୋଟିଏ ସୀମା ଅବଶ୍ୟ ରହିବ ।

ଏହି ସେକାଳର ସଂଗ୍ରାମୀମାନେ ଯେଉଁ ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ, ସେଇଟି ହେଉଛି ଏକ ରାଜନୀତିକ ସଂଗ୍ରାମ । ମହାତ୍ମା ଗାନ୍ଧୀ ଏହାକୁ ରାଜନୀତିକ ବିପ୍ଳବ ବୋଲି କହିଥିଲେ । ଦ୍ୱିତୀୟ ପରବର୍ତ୍ତୀ ବିପ୍ଳବଟିକୁ ସେ ସାମାଜିକ ବିପ୍ଳବ

ବୋଲି ବର୍ଣ୍ଣନା କରିଥିଲେ । ଭାରତର ସଂଗ୍ରାମୀମାନେ ରାଜନୀତିକ ବିପ୍ଳବ ପରେ, ଅର୍ଥାତ୍ ଦେଶକୁ ରାଜନୀତିକ ସ୍ୱାଧୀନତା ଆସିବା ପରେ ଦ୍ୱିତୀୟ ବିପ୍ଳବଟିକୁ ସମ୍ଭବ କରିବାରେ ନିମିତ୍ତ ହେବେ ବୋଲି ଗାନ୍ଧୀ କେଡ଼େ ସ୍ପଷ୍ଟ ଭାବରେ କହିଥିଲେ । ସ୍ୱାଧୀନତା ଆନ୍ଦୋଳନ ବା ରାଜନୀତିକ ବିପ୍ଳବ ପ୍ରଜାମାନଙ୍କ ଲାଗି ହୋଇଥିଲା । ଦ୍ୱିତୀୟ ବିପ୍ଳବଟି ପ୍ରଜାମାନଙ୍କ ଦ୍ୱାରା ହୋଇଥାନ୍ତା । ମାତ୍ର ସଂଗ୍ରାମୀମାନେ ଏହି କଥାଟିକୁ ଗୋଟାସୁଦ୍ଧା ଭୁରାଡ଼ି ଦେଲେ । ସେମାନେ ପ୍ରଜାଙ୍କର ପଟ ନ ହୋଇ ରଜାଙ୍କ ପଟ ହୋଇଗଲେ । ରଜାଙ୍କଠାରୁ ସନନ୍ଦ ପାଇଲେ । ମୁହଁ ବନ୍ଦ କରିଦେଲେ ।

ସେହି ଅମଙ୍ଗଳ ବେଳାଠାରୁ ଦେଶଟା ଏକାବେଳେକେ ରଜାମାନଙ୍କର ଅଙ୍ଗଭୋଗରେ ପରିଣତ ହୋଇଗଲା । ଯୋଉମାନେ ଲୋକଙ୍କ ଭିତରୁ ନେତା ହୋଇ ବାହାରିଲେ, ପ୍ରଜାମାନଙ୍କ ପାଇଁ ଏଇଟା ବା ସେଇଟା କରିଦେବେ ବୋଲି ହାବୁକା ମାରିଲେ, ବାମ ହେଲେ ଅଥବା ଡାହାଣ ହେଲେ, ସେମାନେ ଦେଖୁଁ-ଦେଖୁଁ ରଜାଙ୍କ ପଟ ହୋଇଗଲେ, ଏକାବେଳେକେ ଭୁବନେଶ୍ୱର ପଳାଇଲେ । ତୁଚ୍ଛା ମିଛ କଥା କହିଲେ । ସେମାନେ ସିଆଡୁ ଫିକର କରି ଆମ ସଂଗ୍ରାମୀମାନଙ୍କୁ ମଧ୍ୟ ପଘାରେ ବାନ୍ଧି ରଖିଲେ ।

୧୬/୧୦/୮୮

# ଉପରୁ ତଳକୁ ଆସ

ଯେଉଁ ଦେଶରେ ବା ଯେଉଁ ସମାଜରେ ଉପରଟା ହିଁ ଅତ୍ୟନ୍ତ ଔଦ୍ଧତ୍ୟର ସହିତ ତଳକୁ ମାଡ଼ି ବସିଛି, ସେଠରେ ଯଦି ତୁମେ ଆଦୌ କିଛିହେଲେ ସଜାଡ଼ିବାକୁ ପ୍ରକୃତରେ ଇଚ୍ଛା କରୁଛ, ତେବେ ଉପରୁ ତଳକୁ ଆସ । ସବାଆଗ ଉପରେ ରହିଥିବା ଚୋରମାନଙ୍କୁ ଖୋଜ, ଠାବ କର, ସେମାନଙ୍କ ନାକରେ କଡ଼ା ବାନ୍ଧ, ବେକରେ ଢ଼ିଙ୍କିଆ ପକାଅ । ସବାଆଗ ଉପରବାଲାଙ୍କର ବେଆଇନ ଜବରଦେଖଲୀ ଘରଗୁଡ଼ାକୁ ଭାଙ୍ଗ, ତା'ପରେ ଯାଇ ଆମ ବସ୍ତି ବା ଝୋମ୍ପଡ଼ି ଭିତରକୁ ଆଇନର ଢ଼ମ ଦେଖାଇବାକୁ ଆସିବ । ତଳଟାକୁ ସେହି ତଳରୁ ହିଁ କ୍ରମଗଠିତ ହୋଇ ଆସିବା ନିମନ୍ତେ ସମୟ ଦିଅ । ବାଟ ଛାଡ଼ି ଦିଅ, ଉପଯୁକ୍ତ ପ୍ରତ୍ୟୟ ଆଣିଦିଅ । ଉପରେ ରହି ସବୁଯାକ ଶିରିଣି ମାରି ନେଉଥିବା ଅସୁରଗୁଡ଼ାକୁ ଆଗ ଧରାଇ ଦେଇପାରିଲେ ଯାଇ ତୁମେ ସେଥିରେ ସାହାଯ୍ୟ କରିପାରିବ ।

ଅର୍ଥାତ୍, ଆମକୁ ଯଥାର୍ଥ ପ୍ରତ୍ୟୟ ଆଣି ଦେଇପାରିବ । ତୁମେ ସତକୁ ସତ ଆମପଟେ ରହିଛ ବୋଲି ଜଣାପଡ଼ିବ । ଏଦେଶରେ ଯେଉଁମାନେ ବଳୁଆ ହୋଇ ରହିଛନ୍ତି, ଆଖିବୁଜି ଆଇନଗୁଡ଼ାକୁ ପଘାରେ ବାନ୍ଧି ଦେଶଟାଯାକ ଉପରେ ବଳାତ୍କାର କରୁଛନ୍ତି,

ସେମାନଙ୍କୁ ସାଧ୍ୟ କରିବାଲାଗି ତୁମର କ'ଣ ପ୍ରକୃତରେ ବଳ ପାଉନାହିଁ ? ନା ତୁମେ ନିଜ ଅନ୍ତ ଭିତରେ ସତକୁ ସତ ସେଇ ବଲୁଆମାନଙ୍କ ପଟେ ରହିଛ, ଆପଣାର ଯାବତୀୟ ବଳକୁ ସେହିମାନଙ୍କୁ ସ୍ଥାୟୀ କରି ରଖିବାରେ ଖରଚ କରୁଛ ?

ଏବେ ଆମ ସହରର କେବଳ ସବୁଠାରୁ ବଡ଼ କୋଠାଗୁଡ଼ାକ ନୁହେଁ, ଆମର ପ୍ରାୟ ସବୁଯାକ ରାଜନୀତି, ସବୁଯାକ ସାହିତ୍ୟ, ସବୁଯାକ ସଂସ୍କୃତି ଓ ଗଦାଗଦା ପଇସା ଜନମ କରୁଥିବା ବଡ଼ବଡ଼ ପାଠ ମଧ୍ୟ ସେଇ ବଲୁଆମାନଙ୍କ ହାତରେ ରହିଛି । ସହରର ସବୁଯାକ ବଡ଼ ଦୋକାନ ସେଇମାନଙ୍କର । ସବୁଠାରୁ ବଡ଼ ବାଜାଗୁଡ଼ାକ ସେଇମାନଙ୍କର ବରାଦରେ ବାଜୁଛି । ତୁମେ ବି କ'ଣ ହଜୁର ସେଇପଟେ ଅଛ କି ? ସେଇଥିପାଇଁ ସେମାନଙ୍କ ପାଖରେ ଲାଙ୍ଗୁଳ ଜାକି ଆମ ଢ଼ାବା ଓ କୁଡ଼ିଆଗୁଡ଼ାକୁ ଭାଙ୍ଗିବାଲାଗି ବୀରପଣିଆ ଦେଖାଇବାକୁ ଏଡ଼େ ଉତ୍ସାହରେ ଦଉଡ଼ି ଆସୁଛ ? ସେଇମାନେ ହିଁ ତୁମକୁ ଏସବୁ କାଣ୍ଡ ଭିଆଇବାକୁ ପଠାଇଛନ୍ତି କି ? ତୁମର ନାଡ଼ୀଗୁଡ଼ାକ ସେହିମାନଙ୍କ ହାତରେ ରହିଛି କି ? ସେଇମାନେ ତୁମକୁ ଛେଳି କରି ତୁମ ଗୋଡ଼ରେ ଘୁଙ୍ଗୁର ବାନ୍ଧି ନଚାଇବାରେ ଲାଗିଛନ୍ତି କି ? ନହେଲେ, ତୁମେ ଆଗ ସେଠିକି ନଯାଇ ଆମ ବସ୍ତିଆଡ଼କୁ କାହିଁକି ଆସିବାକୁ ମନ କରନ୍ତ ?

ତୁମେ ଯେତେ ଭାଙ୍ଗିଲେ ବି ଏ ବସ୍ତି ରହିବ । ଭାଙ୍ଗୁଥିବ, ପୁଣି ଗଢ଼ି ଉଠୁଥିବ । ଦେଶରେ ସମସ୍ତଙ୍କୁ ମଣିଷ ଭଳି ସ୍ୱୀକାର କରାନଯିବା ପର୍ଯ୍ୟନ୍ତ ଏ ବସ୍ତି ଅଲବତ ରହିବ । ଅର୍ଥାତ୍ ସବୁ ମଣିଷଙ୍କୁ ଆଖିଆଗରେ ରଖି ଏହି ଦେଶରେ କର୍ମର ଯୋଜନା ହେବ, ପାଠର ଯୋଜନା ହେବ । ଦେଶକୁ ସୁନ୍ଦର କରିବାକୁ ଭାବିଲା ମାତ୍ରକେ ତୁମ ଆଖିକୁ କେବଳ କେତେଜଣ ବା କେତେଟା ଶ୍ରେଣୀ ନୁହେଁ, ମଣିଷ ମାତ୍ରକେ ସମସ୍ତେ ଦିଶି ଯାଉଥିବେ । ତୁମେ ସାରା ଦେଶଟାର ପ୍ରତିନିଧି । ଖାଲି ସେମାନଙ୍କର ନୁହେଁ କି ଖାଲି ଆମର ନୁହେଁ । ଆମକୁ ଆଉ ଭଣ୍ଡାଅ ନାହିଁ ବାବୁ, ଆମକୁ ଆଉ ଅନୁଗ୍ରହ ଦେଖାଅ ନାହିଁ । ଆମକୁ ମଣିଷ ବୋଲି ସ୍ୱୀକାର କର । ଆମକୁ ବାଟ ଛାଡ଼ିଦିଅ ।

୨୩/୧୦/୮୮

# ରାମାୟଣର ରମ୍ୟାୟନ

ଭାରତୀୟ ଦୂରଦର୍ଶନରେ ଦର୍ଶକମାନେ ବରଷକରୁ ଅଧିକ ସମୟ ପର୍ଯ୍ୟନ୍ତ ରବିବାରକୁ ରବିବାର ରାମାୟଣ ଦେଖିଲେ । ରାମଭକ୍ତି ସମ୍ବନ୍ଧରେ ଭୟାବହ ପରିସ୍ଥିତିମାନ ସୃଷ୍ଟିହେଲା । ବହୁ ଭାବକୁ ସାମୟିକ ଭାବପ୍ରବଣତାରେ ପରିଣତ କରି

ଦିଆଗଲା ଓ ସେଥିରୁ କେତେଭଳି କାମୁକ ଉଲ୍ଲାସ ପ୍ରକାଶ କରାଗଲା । ଧର୍ମର ପ୍ରଭାବ ଭାରତବର୍ଷରୁ କ୍ରମେ ଉଣା ହୋଇ ଯାଉଥିବାବେଳେ ଧର୍ମୀୟ କାହାଣୀଟିକୁ ଯଥାସମ୍ଭବ ଅଧିକ ରମ୍ୟ କରି ଦେଖାଇବା ଦ୍ୱାରା ସରକାରୀ ଦୂରଦର୍ଶନର ମଞ୍ଚ ଦେଶର ପ୍ରଭୂତ ଉପକାର କଲେ, ଏପରି ଏକ ପ୍ରତିକ୍ରିୟା ମଧ୍ୟ କେତେକ ସ୍ଥଳରେ ପ୍ରକାଶ ପାଇଲା । ନିର୍ଧୂମ ନାସ୍ତିକମାନେ ମଧ୍ୟ ପରମ ପୀରତି ସହିତ ଅନ୍ତତଃ ଅଧଘଣ୍ଟାକ ପାଇଁ ଅବତାରକଥାଟିର ସୁରମ୍ୟ ସୁଯୋଜିତ ରୂପଗୁଡ଼ିକୁ ଦେଖିଲେ । ଆହୁରି କେତେ ଧର୍ମଭୀରୁ ଏକାବେଳେକେ ଧର୍ମବିହ୍ୱଳ ହୋଇଗଲେ । ସେମାନେ ଭଗବାନ ରାମଚନ୍ଦ୍ର ଆଲୁଅବାକ୍ସ ଭିତରୁ ବାହାରିବା ପୂର୍ବରୁ ବାକ୍ସଟିକୁ ଫୁଲଚନ୍ଦନ ଓ ପ୍ରଦୀପ ଦେଇ ପୂଜା କଲେ, ଶଙ୍ଖ ବଜାଇଲେ, ଇତ୍ୟାଦି, ଇତ୍ୟାଦି ।

ରାମାୟଣବେଳେ ପିଲାଙ୍କର ପାଠ ବନ୍ଦ ହୋଇଗଲା, ସଭାଗୁଡ଼ାକ ବନ୍ଦ ହୋଇଗଲା, କାମିନୀମାନଙ୍କର ପ୍ରସାଧନ ବନ୍ଦ ହୋଇଗଲା । ଭାରତବର୍ଷ ପ୍ରକୃତରେ ଧର୍ମରେ ଅଛି ବୋଲି ବିଶ୍ୱାସଲୋଭୀମାନେ ଆହୁରି ଗୋଟିଏ ପ୍ରମାଣ ପାଇଗଲେ ଏବଂ ଆନନ୍ଦିତ ହେଲେ । ଦେଶ ଧର୍ମରେ ନଥିଲେ କ'ଣ ଯନ୍ତ୍ରଟା ଭିତରୁ ଭଗବାନଙ୍କର ଲୀଳା ସଂଦର୍ଶନ କରୁକରୁ ଭଗବାନ ସତକୁ ସତ ସାମନାକୁ ଉତୁରି ଆସିଲେ ବୋଲି ଏତେ ମଣିଷ ଅନୁଭବ କରି ଥାଆନ୍ତେ ? ତେଣୁ ତୁମେ ଯାହା କହ ପଛକେ, ଭାରତବର୍ଷ ପ୍ରକୃତରେ ଧର୍ମରେ ଅଛି ।

ଏହି ରାମାୟଣର ଆହୁରି ଅଧିକ ପ୍ରସାରଣ ହେବ । ଲୋକମାନେ ରମ୍ୟଗୁଡ଼ିକୁ ପୂରାପୂରି ଦେଖିବେ, କାମନା ପୂରଣ କରିବେ । ଏହା ଅତ୍ୟନ୍ତ ଉତ୍ତମ କଥା । ହିନ୍ଦୁ ଧର୍ମର ସବୁ ପୁରାଣ ଓ ଉପାଖ୍ୟାନକୁ ଏଥର ରମ୍ୟ ଛବିରୂପ ଦେଇ ତୁହାକୁ ତୁହା ପ୍ରଚାର କରାଯାଉ । ଧର୍ମରତିର ସମ୍ବର୍ଦ୍ଧନାରେ ଆଦୌ କୌଣସି ତ୍ରୁଟି କରାନଯାଉ । ମାତ୍ର, ଭାରତବର୍ଷରେ ତ କେବଳ ହିନ୍ଦୁଧର୍ମ ନାହିଁ, ଆହୁରି ଧର୍ମ ମଧ୍ୟ ରହିଛି । ହିନ୍ଦୁମାନେ ସଂଖ୍ୟାଗରିଷ୍ଠ ହୋଇଥିବାରୁ ସ୍ୱଭାବତଃ ବିଶେଷ ଭାବରେ ଗରିଷ୍ଠ ହୋଇ ରହିଛନ୍ତି । ତଥାପି ଅନ୍ୟମାନେ ଅଛନ୍ତି । ସେମାନଙ୍କର ବି ଠାକୁରକଳ୍ପନା ଓ ଅବତାର କଳ୍ପନାମାନ ରହିଛି । ସେମାନଙ୍କୁ ମଧ୍ୟ ରମ୍ୟଦର୍ଶନ ଦ୍ୱାରା ଧର୍ମରତିର ସୁଯୋଗ ପ୍ରଦାନ କରାଯାଉ । ଭାରତବର୍ଷରେ ବହୁଶତ ପ୍ରକାରର ଆଦିବାସୀ ଅଛନ୍ତି । ପ୍ରତ୍ୟେକ ଆଦିବାସୀ-ସମାଜରେ କାହାଣୀମାନ ରହିଛି, କୋଟି କୋଟି କଳ୍ପନା ରହିଛି । ସେମାନେ ମଧ୍ୟ ସେହି କଳ୍ପନାଗୁଡ଼ିକୁ ଓ କାହାଣୀଗୁଡ଼ିକୁ ରମ୍ୟ ଛାୟାରୂପରେ ଦର୍ଶନ କରିବାକୁ ସୁଯୋଗ ପାଆନ୍ତୁ । ତଦ୍ୱାରା ରାମାୟଣ ବା ମହାଭାରତର ଆଦୌ କୌଣସି ମର୍ଯ୍ୟାଦାହାନି ହେବନାହିଁ । ଭାରତବର୍ଷର ମର୍ଯ୍ୟାଦା ବଢ଼ିବ ।

ଭାରତବର୍ଷ ଯେ କେବଳ ଯାର ବା ତାହାର ଦେଶ ନୁହେଁ, ଭାରତବର୍ଷ ଯେ ଏଠି ବାସ କରୁଥିବା ସମସ୍ତଙ୍କର ଦେଶ, ଆମର ସରକାରୀ ଚିତ୍ରବୀର୍ଯ୍ୟମାନେ ଯଦି ସେହି କଥାକୁ ଅଧିକ ବୁଝନ୍ତେ, ତେବେ ଭାରତବର୍ଷର ଖବର ନେଉଥିବା ଭଗବାନ ମଧ୍ୟ କେଡ଼େ ଖୁସି ନହୁଅନ୍ତେ ? ଖାଲି ପର୍ଦ୍ଦା ଭିତରୁ ଆମର ଚିତ୍ତବିନୋଦନ ଲାଗି ବେଶ ହୋଇ କହୁଥିବା ରାମଚନ୍ଦ୍ରମାନେ ଅଥବା କୃଷ୍ଣମାନେ ନୁହନ୍ତି, ଆମ ହୃଦୟ ଭିତରେ ରହିଥିବା ରାମଚନ୍ଦ୍ର ଓ କୃଷ୍ଣମାନେ ମଧ୍ୟ କେତେ ଖୁସି ନହୁଅନ୍ତେ ?

୩୦/୧୦/୮୮

# ନିର୍ଦ୍ଦେଶ ଦ୍ୱାରା ନିର୍ବାଚନ

ଉପରୁ କାହାରି ନିର୍ଦ୍ଦେଶ ଦ୍ୱାରା ନିର୍ବାଚନ ହୁଏନାହିଁ । ନିର୍ବାଚନକୁ ସୁସ୍ଥ ରାଜନୀତିକ ଜୀବନର ଏକ ସ୍ୱାଭାବିକ ଧାରା ବୋଲି ମାନି ନେଇଥିଲେ ଯାଇ କୌଣସି ଦେଶରେ ସୁସ୍ଥ ନିର୍ବାଚନ ସମ୍ଭବ ହୁଏ । ଉପରୁ ନିର୍ଦ୍ଦେଶ ଆସି ହେଉଥିବା ନିର୍ବାଚନ ଅସଲ ରାଜନୀତିକ ଅଭ୍ୟୁଦୟର ଭୂମି ଉପରେ ବିଚାର କରି ଦେଖିଲେ ସର୍ବଦା ଏକ ସୁଆଙ୍ଗରେ ପରିଣତ ହୋଇଥାଏ । ଦକ୍ଷିଣ ଆମେରିକାର ଚିଲି ଦେଶରେ ଏବେ ନିର୍ବାଚନ ହେବ ବୋଲି ଚିଲି ସରକାର ଘୋଷଣା କରିଛନ୍ତି । ଦୀର୍ଘ ପ୍ରାୟ ଅଧପୁରୁଷ ପରେ ସେଠାରେ ଏହି ନିର୍ବାଚନ ହେବାକୁ ଯାଉଛି । ଅଧପୁରୁଷ ତଳେ ଚିଲିର ନିର୍ବାଚିତ ଗଣତନ୍ତ୍ରକୁ ହତ୍ୟାକରି ଯେଉଁ ସାମରିକ ଉଚ୍ଚକର୍ତ୍ତା ସେହି ଦେଶର ମାଲିକ ହୋଇ ବସିଥିଲେ, ହଠାତ୍ ଏତେବର୍ଷ ପରେ ତାଙ୍କରି ନିର୍ଦ୍ଦେଶରେ ଦେଶରେ ନିର୍ବାଚନ ହେବାକୁ ଯାଉଛି । ଅର୍ଥାତ୍ ଦେଶରେ ଲୋକମାନେ ଇଚ୍ଛା କରୁନଥିଲେ ବୋଲି ଯେ ଚିଲିରେ ନିର୍ବାଚନ ହେଉନଥିଲା, ସେକଥା ଆଦୌ ନୁହେଁ । ସାମରିକ କର୍ତ୍ତା ଏତେଦିନଯାଏ ନିର୍ବାଚନର ତଣ୍ଟିକୁ ଚିପିକରି ଧରିଥିଲେ । କର୍ତ୍ତା ସ୍ୱୟଂ ଥିଲେ, ତାଙ୍କ ହାତରେ ଅସ୍ତ୍ରବଳ ଥିଲା, ଡରୁଆ ଗୋଲାମମାନେ ରହିଥିଲେ, ରାଜନୀତିକ ପରିବର୍ତ୍ତନକୁ ମୁହଁରେ ବିଣ୍ଡା ଦେଇ ରଖାଯାଇଥିଲା ।

ସେ ଯୁଗ ଚାଲି ଯାଇଥିଲେ ମଧ୍ୟ ସେ ଯୁଗର ପାଷଣ୍ଡ ପ୍ରକ୍ରିୟାମାନ ତଥାପି ରହିଛି । ସେ ଯୁଗରେ ସାମନ୍ତମାନେ ଥିଲେ, ସାମନ୍ତବାଦ ଥିଲା । ଏବେ ସାମରିକ ବ୍ୟାଘ୍ରବାଦ ବଳବତ୍ତର ରହିଛି । ତଥାକଥିତ ଗଣତାନ୍ତ୍ରିକ ଦେଶମାନଙ୍କରେ ମଧ୍ୟ ଏହି ବ୍ୟାଘ୍ରବଳ ଆଦୌ କମ୍ ଦୌରାତ୍ମ୍ୟ ପ୍ରଦର୍ଶନ କରୁନାହିଁ । ପୃଥିବୀର ସରକାରମାନେ ଅସ୍ତ୍ରବଳ ବଢ଼ାଇବାରେ ହିଁ ସବୁଠାରୁ ଅଧିକ ଖର୍ଚ୍ଚ କରୁଛନ୍ତି । ପୃଥିବୀର ସର୍ବାଧିକ

ଅର୍ଥବଳ ବ୍ୟାଘ୍ରବଳ ବୃଦ୍ଧି କରିବାରେ ହିଁ ଖରଚ ହେଉଛି । ରାଜନୀତିକ ଆଦର୍ଶଗୁଡ଼ିକୁ ମଧ୍ୟ ସେହି ବ୍ୟାଘ୍ରବଳ ଆପଣାର ଅକ୍ତିଆରରେ ରହିଛି । ବ୍ୟାଘ୍ରମାନେ ଏକାଠି ହୋଇ ବେଳେବେଳେ ଶାନ୍ତିର ଅର୍ଥାତ୍ ଅସ୍ତ୍ରଶସ୍ତ୍ର କମାଇବାର ଆଲୋଚନା କରୁଛନ୍ତି । ଦାନ୍ତଗୁଡ଼ାକ ଉପରେ ପୂରା ବିଶ୍ୱାସ ରହିଛି, ତଥାପି ଦାନ୍ତଗୁଡ଼ାକର ବିପଜ୍ଜନକତା ବିଷୟରେ ଭାଷଣମାନ ଦେଉଛନ୍ତି ।

ପୃଥିବୀରେ ଅସଲ ରାଜନୀତି ତଳୁ ତିଆରି ହେବ । ଜନତନ୍ତ୍ରର ଅସଲ ମୂଳଦୁଆ ଜନସ୍ତରରୁ ପଡ଼ିବ । ଉପରୁ ଥାଇ ଦୁର୍ଦ୍ଦାନ୍ତ ବଦାନ୍ୟମାନେ ସେକଥା ମୋଟେ କରି ପାରିବେନାହିଁ । ହଁ, ଦୁର୍ଦ୍ଦାନ୍ତମାନେ ମଝିରେ ମଝିରେ ବାଧ୍ୟ ହୋଇ ଅଳପ ଅଳପ ବାଟ ଛାଡ଼ି ଦେଉଥିବେ, ମାତ୍ର ଗୋଟାଏ ଦୁର୍ଦ୍ଦାନ୍ତପରେ ଆଉ ଗୋଟାଏ ଦୁର୍ଦ୍ଦାନ୍ତ ଆସି ଗାଦି ମାଡ଼ି ବସିବାର ଅନୁକୂଳତାଗୁଡ଼ିକ ତଥାପି ଭାରି ପ୍ରଶସ୍ତ ହୋଇ ରହିଥିବ । ପୃଥିବୀରେ ଯେଉଁସବୁ ଦେଶରେ କର୍ତ୍ତାର ଇଚ୍ଛାରେ ଗଣତନ୍ତ୍ର ଚାଲିଛି, ସେଠି ଗଣତନ୍ତ୍ର ପାଇଁ ନିର୍ଭରଯୋଗ୍ୟ ପିଣ୍ଡିଟିଏ ଗଢ଼ାହେବାକୁ ତଥାପି ବାକି ରହିଛି । ସେହି ପିଣ୍ଡିଟିକୁ ଲୋକମାନେ ଗଢ଼ିବେ, ଲୋକପ୍ରତିବାଦ ଗଢ଼ିବ; ସାହସଦ୍ୱାରା ଓ ସଚେତନ ନେତୃତ୍ୱଦ୍ୱାରା ତଳୁ ସେହି ପିଣ୍ଡିଟି ଗଢ଼ାହୋଇ ପାରିବ । ଗଣତନ୍ତ୍ରର ଅନେକ ତଥାକଥିତ ବନ୍ଧୁ ଅଛନ୍ତି, ଯେଉଁମାନଙ୍କର ଦାନ୍ତ ତଥାପି ଭାଙ୍ଗିନାହିଁ । ସେହି ଦାନ୍ତଗୁଡ଼ାକ ଉପରେ ହିଁ ସେମାନଙ୍କର ସର୍ବାଧିକ ବିଶ୍ୱାସ ରହିଛି । କୌଣସି ରାଷ୍ଟ୍ରକୁ ସବଳ ଓ ଶକ୍ତିଶାଳୀ କରିବାକୁ ହେଲେ ସେହି ଦାନ୍ତଗୁଡ଼ିକର ଯେ ପରମ ଆବଶ୍ୟକତା ରହିଛି, ସେମାନଙ୍କ ଦ୍ୱାରା କେଡ଼େ ଆଣ୍ଟରେ ସେହି ଭ୍ରମର ପ୍ରଚାର କରାଯାଉଛି । ସେହି ଆଣ୍ଟକୁ ଅନେକ ସମୟରେ ଜାତୀୟ ଅଗ୍ରଗତିର ସଙ୍କେତ ବୋଲି କୁହାଯାଉଛି । ଅର୍ଥାତ୍ ରାଜନୀତିକୁ ବହୁବିଧ ଅବାଞ୍ଛିତ ଅନୁଗ୍ରହ ଉପରେ ନିର୍ଭର କରି ରହିବାକୁ ପଡୁଛି ।

୬।୧୧।୮୮

# ଜଣେ ଛାତ୍ର ଯାହା ପଚାରିବ

ଜଣେ ଛାତ୍ର କହିଲେ ଆମ କଳିଯୁଗରେ ଛାତ୍ରନେତାମାନଙ୍କୁ ବୁଝାଏ । ଛାତ୍ରମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ଆମ ସରକାରମାନେ ସେହି ଛାତ୍ରନେତାମାନଙ୍କ ସହିତ କଥାବାର୍ତ୍ତା କରନ୍ତି । ଛାତ୍ର ବୋଲି କେହି କୋଉଠି ଅଛନ୍ତି କି ନାହିଁ, ନିଜର ଧାତୁଗୁଡ଼ାକରୁ ସେକଥା ଭାବିବାକୁ ବି ସମୟ ପାଆନ୍ତି ନାହିଁ । ସରକାର ଶିକ୍ଷକମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ଯେପରି ଶିକ୍ଷକନେତା ଅର୍ଥାତ୍

ଶିକ୍ଷକସଂଘର ପାଟ କାରପଟଦୋରମାନଙ୍କ ସହିତ କଥାବାର୍ତ୍ତା କରନ୍ତି ଓ ପ୍ରକୃତରେ କୋଉଠି ଶିକ୍ଷକ ରହିଥିବେ ବୋଲି ଭାବିବାକୁ ବି ସାହସ କରି ପାରନ୍ତିନାହିଁ, ଏକଥା ମଧ୍ୟ ପ୍ରାୟ ଠିକ୍ ସେହିପରି ।

ଏଠାରେ ମୁଁ ସେହି ଛାତ୍ରନେତାମାନଙ୍କ କଥା କହୁନାହିଁ । ସତକୁ ସତ ଛାତ୍ରମାନଙ୍କ କଥା କହୁଛି । ଛାତ୍ରନେତା ତ ଛାତ୍ର ନୁହନ୍ତି, ସେମାନେ ନେତା । ଠିକ୍ ଯେମିତି ଶିକ୍ଷକନେତା ଶିକ୍ଷକ ନୁହନ୍ତି, ସେମାନେ ନେତା । ଛାତ୍ର ଓ ଶିକ୍ଷକ ଉଭୟ ପଟରେ ଭରଣ ଭରଣ ନେତା ରହିଥିଲେ ମଧ୍ୟ ତଥାପି ଛାତ୍ର ରହିଛନ୍ତି, ତଥାପି ଶିକ୍ଷକ ବି ରହିଛନ୍ତି । ଏମିତି ଛାତ୍ର ଅଛନ୍ତି, ଯୋଉମାନେ କି ନେତାହେବାକୁ ମୋଟେ କଟକ କିମ୍ୱା ଭୁବନେଶ୍ୱର ଆସିନାହାନ୍ତି । ସେମାନେ ଏକ ଅଲଗା ସ୍ୱପ୍ନକୁ ସଙ୍ଗୀ କରି ଆମର ଇସ୍କୁଲ ଓ କଲେଜମାନଙ୍କରେ ପାଠ ପଢୁଛନ୍ତି । କାଉମାନେ ଏକ ଅଲଗା ସ୍ୱପ୍ନକୁ ସଙ୍ଗୀ କରି ଆମର ଇସ୍କୁଲ ଓ କଲେଜମାନଙ୍କରେ ରହିଛନ୍ତି । କାଉମାନେ ଯେତେ ଫୁସୁଲାଉ ଥିଲେ ମଧ୍ୟ ସେମାନଙ୍କର ନିଜ ବସା ଛାଡ଼ି କାଉମେଳକୁ ଯିବାକୁ ମୋଟେ ମନ ନାହିଁ । ଠିକ୍ ସେହିପରି, ଏମିତି ଶିକ୍ଷକ ମଧ୍ୟ ରହିଛନ୍ତି, ଯୋଉମାନେ କି ନେତା ହେବାକୁ ମୋଟେ ମନ କରୁନାହାନ୍ତି । ନେତା ହେବା ଅପେକ୍ଷା ଶିକ୍ଷକଟିଏ ହେବାଲାଗି ସେମାନଙ୍କୁ ଅଧିକ ଭଲ ଲାଗୁଛି । କାଉମାନେ ଯେତେ ଉସ୍‌କାଉ ଥିଲେ ମଧ୍ୟ ସେମାନେ ନିଜର ଅସଲ ବସାଟିକୁ ଛାଡ଼ି କାଉମେଳକୁ ଯିବାପାଇଁ ମୋଟେ ମନ କରୁନାହାନ୍ତି ।

ଜଣେ ଛାତ୍ରନେତା ନୁହେଁ, ଜଣେ ଛାତ୍ର ତା'ର ଆଚାର୍ଯ୍ୟଦେବମାନେ କଲେଜ ଛାଡ଼ି ଫୁଙ୍ଗୁଳା ହୋଇ ବୁଲୁଥିବା ସମୟରେ ଅବଶ୍ୟ ମନକୁମନ ସେମାନଙ୍କୁ ଲକ୍ଷ୍ୟ କରି ଏହି କଥାଟି ପଚାରୁଥିବ: ଆଜ୍ଞାମାନେ, ଆପଣମାନେ ଭାରି ଭଲ କଲେ, ନିଜର ଦରମା ବଢ଼ିବା ପାଇଁ ଲଢ଼ିଲେ । ଦରମା ବଢ଼ିବା ପାଇଁ ଏହି କଳିଯୁଗରେ କିଏ ନ ଲଢୁଛି ? ତେଣୁ ସେଥିରେ ଆମର ଆପତ୍ତି କରିବାର ଆଦୌ କିଛି ନାହିଁ । କିନ୍ତୁ, ତା' ବୋଲି ଆପଣମାନେ କଲେଜକୁ ଆସିବେ ନାହିଁ କାହିଁକି ଓ ଆମକୁ ପାଠ ପଢ଼ାଇବେ ନାହିଁ କାହିଁକି ? ଆପଣମାନଙ୍କର ଲଢ଼େଇ ଆମ ସାଙ୍ଗରେ ନୁହେଁ । ସରକାରଙ୍କ ସାଙ୍ଗରେ । ଠିକ୍ ଯେପରି ଡାକ୍ତରମାନଙ୍କ ଲଢ଼ାଇ ମଲ୍ଲୁମାନଙ୍କ ସହିତ ନୁହେଁ, ସରକାରଙ୍କ ସହିତ । ଛାମୁମାନେ, ଆପଣମାନେ ଆମକୁ ପାଠ ପଢ଼ାଇବା ବେଳେ ପାଠ ପଢ଼ାଉ ଥାଆନ୍ତେ ଓ ଅନ୍ୟ ସମୟରେ ଆପଣାର ଦାବିମାନ ଜଣାଇ ସରକାରଙ୍କ ସହିତ ବେଶ୍ ସଂଗ୍ରାମ କରି ପାରୁଥାନ୍ତେ । ଏକଥା କ'ଣ ଆଦୌ ସମ୍ଭବ ହୋଇ ପାରନ୍ତା ନାହିଁ ? ତେବେ ଆମର କଲେଜଗୁଡ଼ାକରେ କେବେହେଲେ କାଉ

**ଉଡ଼ନ୍ତେ ନାହିଁ କିମ୍ବା କୁକୁର ବୁଲନ୍ତେ ନାହିଁ । ଆପଣମାନଙ୍କର ବି ମହତ ବଢ଼ନ୍ତା । ଆପଣମାନେ ଜୀବନ-ସଂଗ୍ରାମରେ ଜୟଲାଭ କରନ୍ତୁ ବୋଲି ଆମେ ଠାକୁରମାନଙ୍କ ପାଖରେ ଯାଇ ପ୍ରାର୍ଥନା କରନ୍ତୁ । ଏପରି ଗୋଟିଏ ମାର୍ଗ ଖୋଜି ବାହାର କରିବା ନିମନ୍ତେ ଆପଣମାନଙ୍କର ବିବେକ ଆପଣମାନଙ୍କୁ ବାଧ୍ୟ କରି ପାରୁନାହିଁ କିପରି ?**

**ଜଣେ ଛାତ୍ର ଯଦି ସତକୁ ସତ ସମ୍ପୂର୍ଣ୍ଣ ବିନୟ ସହକାରେ ତା'ର ଶିକ୍ଷକଙ୍କୁ ଏହିଭଳି ପ୍ରଶ୍ନଟିଏ ପଚାରି ପାରନ୍ତା, ତେବେ ଶିକ୍ଷକ ତାହାର କି ପ୍ରକାର ଉତ୍ତର ଦିଅନ୍ତେ ?**

୧୩/୧୧/୮୮

# ମତ ନାହିଁ, କେବଳ ଭେଦ

ରାଜନୀତିରେ ଗୋଟିଏ ମତ ଥାଏ, ମତମାନଙ୍କ ପଛରେ ଗୋଟିଏ ଗୋଟିଏ ଆଦର୍ଶ ରହିଥାଏ । ଆଦର୍ଶ ଅର୍ଥାତ୍ ଭବିଷ୍ୟତ ବିଷୟରେ ଗୋଟିଏ ଗୋଟିଏ ନକ୍‌ସା । ସେହି ନକ୍‌ସାଗୁଡ଼ିକ ନିଜର ପ୍ରବଳ ଆକର୍ଷଣ ଦ୍ୱାରା କେତେ ମଣିଷଙ୍କୁ ଘରୁ ଗୋଡ଼ କଢ଼ାଇ ଆଣିଛି, ସେମାନେ ଆଉ ଆପଣାର ପୁରୁଣା ଘରଗୁଡ଼ାକରେ ଅର୍ଥାତ୍ ପୁରୁଣା ବ୍ୟବସ୍ଥା ଗୁଡ଼ାକ ମଧ୍ୟରେ ଥୟ ହୋଇ ରହି ପାରିନାହାନ୍ତି, ବିପ୍ଳବୀ ହୋଇ ବାହାରି ଆସିଛନ୍ତି । ରାଷ୍ଟ୍ରବିପ୍ଳବ ହୋଇଛି; ପୁରୁଣା ରାଷ୍ଟ୍ର ଭାଙ୍ଗିଛି, ନୂଆ କାର୍ଯ୍ୟକ୍ରମ ନେଇ ନୂତନ ରାଷ୍ଟ୍ର ଗଢ଼ା ହୋଇଛି । ବ୍ୟବସ୍ଥା ବ୍ୟବସ୍ଥା ଭିତରେ ଘୋର ସଂଗ୍ରାମ ହୋଇଛି । ତଥାପି ସଂଗ୍ରାମ ଅବିଚ୍ଛିନ୍ନ ରହିଛି । ଠିକ୍ ଏହିପରି ଭାବରେ ହିଁ ରାଜନୀତିକ ମନୁଷ୍ୟର ସଚେତନତା ଅଧିକରୁ ଅଧିକ ସଂକଳ୍ପବଦ୍ଧ ଓ କ୍ରିୟାଶୀଳ ହେବା ସଙ୍ଗେ ସଙ୍ଗେ ଆମ ପୃଥିବୀର ରାଜନୀତିକ ବିବର୍ତ୍ତନମାନ ସମ୍ଭବ ହୋଇଛି । ଭାରତବର୍ଷରେ ରାଜନୀତି କହିଲେ ଏକଦା ଏହିପରି ଏକ ସଚେତନ କ୍ରିୟାଶୀଳତାକୁ ବୁଝାଉଥିଲା । କ୍ରିୟାଶୀଳତା ପଛରେ ଏକ ଆଦର୍ଶଗତ ଉନ୍ମାଦନା ଓ ସମର୍ପଣଭାବନା ମଧ୍ୟ ରହିଥିଲା । ସେହି ରାଜନୀତି ସାକାର ହୋଇ ଏକ ଜାତୀୟ ଆକାଂକ୍ଷା ଓ ଜାତୀୟ ସଂଗ୍ରାମକୁ ଜନ୍ମ ଦେଲା ଏବଂ ସେହି ସଂଗ୍ରାମ ଆମକୁ ରାଜନୀତିକ ସ୍ୱାଧୀନତା ଆଣି ଦେଇଥିଲା । ଏବେ ସେହି ସଂଗ୍ରାମ ଓ ସେହି ରାଜନୀତିର ଗବେଷଣା ହେଉଛି, ତାହାର ଇତିହାସ ଲେଖା ହେଉଛି । ମାତ୍ର ସେହି ରାଜନୀତି ମୋଟେ କେଉଁଠି ହେଲେ ଦେଖିବାକୁ ମିଳୁନାହିଁ ।

ବର୍ତ୍ତମାନର ରାଜନୀତି ମାମଲତକାରମାନଙ୍କ ଦ୍ୱାରା ଚାଲୁଛି, ମ୍ୟାନେଜରମାନଙ୍କ ଦ୍ୱାରା ଚାଲୁଛି । ମ୍ୟାନେଜରମାନେ କଦାପି କୌଣସି ସ୍ୱପ୍ନ ଦେଖନ୍ତି ନାହିଁ । ମାମଲତକାରମାନଙ୍କର କେବେ କୌଣସି ମତ ନ ଥାଏ, ତେଣୁ ସେମାନଙ୍କ

ଆଗରେ ଏପରି କୌଣସି ନକ୍ସାଟିଏ ନଥାଏ, ଯାହା ଅନୁସାରେ କି ସେମାନେ ସତକୁ ସତ କିଛି ଗଢ଼ିବେ ବୋଲି ମନ କରୁଥାନ୍ତି । ଖାନ୍‌ଦାନୀ ପରିଚୟ ଅନୁସାରେ ସେମାନଙ୍କ ମଧ୍ୟରୁ କାହାକୁ ବାମ ବୋଲି କୁହାଯାଏ ତ ଆଉ କାହାକୁ ଦକ୍ଷିଣ ବୋଲି କୁହାଯାଏ । ମାମଲତକାର ମାମଲତକାର ଭିତରେ ଭେଦ ଅବଶ୍ୟ ରହିଥାଏ ଏବଂ ସେହି ଭେଦଗୁଡ଼ିକୁ ମତଭେଦ ବୋଲି କୁହାଯାଏ । ସକଳ ଭେଦ ସତ୍ତ୍ୱେ ସେମାନଙ୍କର ମତଲବ ପ୍ରକୃତରେ ଗୋଟିଏ ହୋଇ ରହିଥାଏ । ମତଲବ ହେଉଛି ମାମଲତକାରୀ ଗୁଡ଼ାକୁ ଜାହିର କରି ରଖିବା ।

ମାମଲତକାରୀ ରାଜନୀତିରେ ଆଚାର ଅଲଗା ହୋଇଯାଏ । ସେଥିଲାଗି ଭାରତବର୍ଷରେ ବର୍ତ୍ତମାନ ରାଜନୀତି କରୁଥିବା ବୃହତ୍‌ସେନାମାନଙ୍କୁ ଏକଦା ଭାରତବର୍ଷରେ ରହି ଆସିଥିବା ରାଜନୀତିର ଦର୍ପଣ ଉପରେ ମୋଟେ ମିଳାଇ ଦେଖି ହେଉନାହିଁ । ପୁରୁଣା ଦର୍ପଣ ଉପରେ ପ୍ରତ୍ୟୟ ରଖିଥିବା ଅନେକେ ସେଥିଲାଗି ବର୍ତ୍ତମାନର ମାମଲତକାର ଓ ମ୍ୟାନେଜରଙ୍କର ଫୁଲେଇ ଦେଖି ନିଜକୁ ସତେଅବା ବୋକା ହୋଇଗଲା ପରି ଅନୁଭବ କରୁଛନ୍ତି । କାଳ କାହାକୁ ପ୍ରକୃତରେ ବୋକା ବୋଲି ପ୍ରମାଣିତ କରିବ, ସେକଥା କାଳ ହିଁ ଜାଣେ; ତଥାପି ଦେଶରେ ଅସଲ ଚେତନାଗୁଡ଼ିକ ଯେତିକି ସ୍ପଷ୍ଟ ଓ ସଚେତନ ହୋଇ ଆସୁଥିବ, ଆମ ସମସ୍ତଙ୍କ ଆଗରେ କାଳ ମଧ୍ୟ ସେତିକି ସ୍ପଷ୍ଟ ଭାବରେ ଅନୁଭୂତ ହେବାକୁ ଆରମ୍ଭ କରିବ ।

୨୦/୧୧/୮୮

# ସବୁ ଗଣସମାବେଶ ସହରରେ

ଆମ ଦେଶରେ ଗାଆଁ ବେଶୀ, ସହର ଅଳପ । ଯେଉଁମାନେ ସାଧାରଣତଃ ସହରବାସୀ ବୋଲି କଥିତ ହୁଅନ୍ତି, ସେମାନଙ୍କର ମଧ୍ୟ ଦେଢ଼ଟା ବା ଦୁଇଟାଯାକ ଗୋଡ଼ ଯାଇ ସେଇ ଗାଆଁରେ । ତଥାପି ଏଠି ସମାବେଶଗୁଡ଼ାକ ସହରରେ ହେଲେ ଯାଇ ସେଗୁଡ଼ିକୁ ଗଣସମାବେଶ ବୋଲି କୁହାଯାଏ । ଗାଆଁରୁ ଲୋକମାନଙ୍କୁ ଅଡ଼ାଇ ସହରକୁ ଅଣାଯାଏ ଓ ସେହିଠାରେ ହିଁ ଗଣସମାବେଶମାନ କରାଯାଏ । ଗ୍ରାମାଞ୍ଚଳରେ କ'ଣ ପଡ଼ିଆ ନାହିଁ ନା ତୋଟା ନାହିଁ, କିନ୍ତୁ ସେଠାରେ ଦଶହଜାର ମଣିଷ ଏକାଠି ହେଲେ ମଧ୍ୟ ତାହାକୁ କଦାପି ଗଣସମାବେଶ ବୋଲି କୁହାଯାଇ ପାରିବ ନାହିଁ । ତେଣୁ ପରେଡ୍ ପଡ଼ିଆକୁ ଆସିବାକୁ ହେବ, – ଭୁବନେଶ୍ୱର ଚାଲ ବା ଆଉ କୋଉ ବୃହତ୍ ସହରକୁ ଚାଲ ବୋଲି ଦୁନ୍ଦୁଭି ବଜାଇବାକୁ ପଡ଼ିବ ।

ଗାଆଁରେ ଗଣ ଅଛନ୍ତି, ମାତ୍ର ଗଣସମାବେଶ ନିମନ୍ତେ ନେତାମାନେ ସମସ୍ତଙ୍କୁ ସହରଯାଏ ଆସିବାକୁ କହୁଛନ୍ତି କାହିଁକି ? ହୁଏତ ତାହାର ସର୍ବପ୍ରଧାନ କାରଣ ହେଉଛି ଯେ, ନେତାମାନେ ସହରରେ ହିଁ ଆପଣାକୁ ବେକଯାଏ ପୋତି କରି ରଖିଛନ୍ତି । ସେମାନଙ୍କର ଅସଲ ମଞ୍ଜିଗୁଡ଼ିକ ସହରରେ ପୋତା ହୋଇ ରହିଛି । ସେମାନେ ସହରରେ କୋଉଦିନୁଁ ଜମି କିଣି ସାରିଲେଣି । ସମାବେଶଗୁଡ଼ାକୁ ସହରରେ କରାଇ ଏଇଠି ଘର କରି ରହିବେ ବୋଲି କୋଉ କାଳରୁ ସ୍ୱପ୍ନ ଦେଖିବାକୁ ଲାଗିଲେଣି । ତେଣୁ, ଗଣସମାବେଶଗୁଡ଼ିକ କେବଳ ସହରରେ ହେବା ହିଁ ସ୍ୱାଭାବିକ, ଗଣସମାବେଶଗୁଡ଼ିକ କେବଳ ସହରରେ ହେବା ହିଁ ସମୀଚୀନ ।

ସହରରେ ଗଣସମାବେଶ କରିବାକୁ ଯୋଉମାନେ ଏଠାକୁ ଆସନ୍ତି, ସେମାନେ ଅଧିକାଂଶତଃ ଗାଆଁରୁ ଆସନ୍ତି । ସମାବେଶ ପରେ ସେମାନେ ଗାଆଁକୁ ଫେରିଯାଆନ୍ତି । ନେତାମାନେ ସହରରେ ରହି ଯାଆନ୍ତି । ଏକଥା ଆଦୌ ସତ ନୁହେଁ ଯେ, ଏହି ନେତାମାନେ ସହରରେ ଜନ୍ମ ହୋଇଛନ୍ତି । ସେମାନେ ସମସ୍ତେ ଗାଆଁରେ ଡିମ୍ବ ହୋଇ ଜନ୍ମ ହୋଇଥିଲେ, ମାତ୍ର ଡିମ୍ବରୁ ଛୁଆ ଫୁଟିବା ମାତ୍ରକେ ସହରକୁ ଧପାଡ଼ି ଆସିଛନ୍ତି । ରାଜନୀତି ନାମକ ମଣ୍ଡାଟିକୁ ସେମାନେ ଏହି ସହରକୁ ଆସି ଗିଳିଛନ୍ତି । ସେହି ମଣ୍ଡାଟିର ଉତ୍ତାପରେ ହିଁ ଆପଣାର ଯାବତୀୟ ସ୍ୱପ୍ନ ଦେଖି ପାରୁଛନ୍ତି ।

ସହରରେ କ୍ଷମତା, ତେଣୁ ନେତାମାନେ ବି ସହରରେ । ସବୁଯାକ ଭଦ୍ରଲୋକ ମଧ୍ୟ ସହରରେ । ଖବରକାଗଜମାନେ ସମସ୍ତେ ସହରରେ । ତେଣୁ, ଗଣସମାବେଶଗୁଡ଼ାକ ସହରରେ ହେଲେ ସିନା ତାହାକୁ ଉଚିତ ମଣିଷମାନେ ଦେଖିବାକୁ ପାଇବେ ଓ ଉଚିତ କାଗଜମାନେ ଛାପିଦେଇ ପାରିବେ ! ଅର୍ଥାତ୍ ଗଣ ହେଉଛନ୍ତି କେବଳ ବାହନ ମାତ୍ର, ସେହି ବାହନ ଉପରେ ଚଢ଼ି ନେତାମାନେ ସହରମାନଙ୍କରେ ଯେଉଁସବୁ ସମାବେଶର ଆୟୋଜନ କରନ୍ତି, ତାହାକୁ ହିଁ ଗଣସମାବେଶ କୁହାଯାଏ । ନେତାମାନଙ୍କ ଭିତରୁ ଆଜି ଇଏ କ୍ଷମତାରେ ରହେ ତ କାଲି ସିଏ କ୍ଷମତାରେ ରହେ ! ମାତ୍ର, ସଲା ହୋଇଥିବା ପରି ଉଭୟ ପକ୍ଷ ଏହି ସହର ଭିତରେ ହିଁ ସମାବେଶଗୁଡ଼ିକୁ କରାନ୍ତି । ଗାଆଁରୁ ବତକମାନଙ୍କୁ ଆଣି ସହରର ରାସ୍ତା ଉପରେ ଶୋଭାଯାତ୍ରା କାଢ଼ନ୍ତି ଓ ସହରର ଶୋଭା ବଢ଼ାନ୍ତି । ବିଚରା ବତକମାନେ ବି କେଡ଼େ ଖୁସି ହୋଇ ପିଚୁରାସ୍ତା ଉପରେ ବିପ୍ଳବ କରିବେ ବୋଲି ସହରରେ ଆସି ପହଞ୍ଚିଥାନ୍ତି ।

୨୭/୧୧/୮୮

# ଆସିଥିଲ କାହିଁକି, ଗଲ କାହିଁକି ?

ଆମ ଓଡ଼ିଶା ସମେତ ତମାମ ଭାରତବର୍ଷରେ କାଳକ୍ରମେ ରାଜନୀତି ଭିତରର ଯିବା ଆଉ ଆସିବାଗୁଡ଼ାକ ବଡ଼ ଚମତ୍କାର ପ୍ରକାରେ ଅଧିକରୁ ଅଧିକ ମନୋରଞ୍ଜକ ହେବାରେ ଲାଗିଛି । କିଏ ଯେ କେତେବେଳେ କୋଉ ଦଳ ଭିତରକୁ ଆସୁଛି ଅଥବା ଏଇଟାକୁ ଛାଡ଼ି ସେଇଟା ଭିତରେ ଯାଇ ପଶିଯାଉଛି, ତାହାର ଆଦୌ କୌଣସି ବାଇସ ଥିବାପରି ମନେ ହେଉନାହିଁ । ତାହାର କାହିଁକିଗୁଡ଼ାକୁ ଖୋଜିଲେ ବଡ଼ ନିରାଶ ହେବାକୁ ପଡୁଛି । ରାଜନୀତିର ଅଙ୍କବହିରେ ସେଗୁଡ଼ାକୁ ସତେ ଯେପରି କୌଣସି ଧାରାରେ ପକାଇ ହେଉନାହିଁ । ଆୟୁର୍ବେଦ ଶାସ୍ତ୍ରରେ ଏଣେ ଆମାଶୟର ଯେପରି କାରଣ ରହିଛି, ଅଗ୍ନିମାନ୍ଦ୍ୟର ମଧ୍ୟ ସେହିପରି ଏକ କାରଣ ରହିଛି । ପ୍ରମେହର କାରଣ ରହିଛି, ପ୍ରଦାହର କାରଣ ରହିଛି । ମାତ୍ର ଆମର ଏଠି ରାଜନୀତିର ବେକାଇଦାଗୁଡ଼ାକ କୋଉ ଛଟକରେ କେଉଁ ଗର୍ଭରୁ ହଠାତ୍ ଜନ୍ମହୋଇ ପଡୁଛି କେଜାଣି, ସେଗୁଡ଼ାକ ପଛରେ ମୋଟେ କୌଣସି କାରଣ ଥିବାପରି ଲାଗୁନାହିଁ ।

ଯେଉଁମାନେ ଆସୁଛନ୍ତି ଓ ଚାଲିଯାଉଛନ୍ତି, ଓ ପୁଣି ଫେରି ଆସୁଛନ୍ତି, ସେମାନଙ୍କର ଗୋଡ଼ହାତ କିଛି ଦିଶୁନାହିଁ, କେବଳ ମୁହଁଟାରୁ ଯାହା ଲାଳଗୁଡ଼ାକ ଥପଥପ ହୋଇ ବୋହିବାରେ ଲାଗିଛି । ସତେଯେପରି ଏହି ଲାଳ ବୋହିବାଟା ହିଁ ଆମ ଆଧୁନିକ ରାଜନୀତିର ଏକମାତ୍ର ସତକ ହୋଇ ରହିଲାଣି । କିଏ ଏଠି ଶୋଇଥିଲା, କେଡ଼େ ବାଗରେ ଶୋଇଥିଲା, ଖୁଡ଼୍‌ଖାଡ଼୍ ମୋଟେ କିଛି ନଥିଲା, ସିଏ ହଠାତ୍ ସେଠି ସେ ଖଞ୍ଜରେ ଯାଇ ଚେଇଁ ଉଠୁଛି, ଚେଇଁ ଉଠିବା ମଣିଷଙ୍କ ପରି କେତେ କଥା କହିବାକୁ ଆରମ୍ଭ କରୁଛି । କିଏ ହୁଏତ ଚେଇଁଥିଲା, ଅନ୍ତତଃ ଆଉସମସ୍ତେ ଶୋଇଛନ୍ତି ଓ ସେ ଏକୁଟିଆ ଚେଇଁଛି ବୋଲି ସ୍ୱତନ୍ତ୍ର ଢୋଲଟାଏ ପିଟି ଓ ସ୍ୱତନ୍ତ୍ର ଟୋପାଟାଏ ଲଗାଇ କେତେ ଢ଼ମ କରୁଥିଲା, ସିଏ ହଠାତ୍ ଏପାଖକୁ ଫକ୍‌କରି ଡ଼େଇଁ ପଡୁଛି ଓ ଲୋଡୁଥିବା କୋଡ଼ଟିଏ ପାଇ କେଡ଼େ ସୁନ୍ଦରିଆ ହୋଇ ଶୋଇପଡୁଛି । ମନେ ହେଉଛି, ସିଏ ଯେପରି କେତେବେଳେ ମଧ୍ୟ ଚେଇଁ ନଥିଲା, କୋଉଠି କୋଡ଼ଟିଏ ପାଇଲେ ଆଉଜି ପଡ଼ିବ ବୋଲି ଚେଇଁଥିଲା ପରି ଦେଖେଇ ହେଉଥିଲା । ଏହିସବୁ ଆସିବା ଯିବା ଓ ଯିବା ଆସିବା ଏପରି ହୁନ୍ଦରରେ ଲାଗିଛି ଯେ, ମଣିଷର ଭାଗ୍ୟକୁ ତଳୁ ଉପରକୁ ବା ଉପରୁ ତଳକୁ କରୁଥିବା ଗ୍ରହମାନେ ମଧ୍ୟ ସେକଥାର ଓଳମ ପାଉନାହାନ୍ତି । ଛାର୍ ଦେଶଟା କାବା ହୋଇ ଅନାଇଛି । ଏତେଗୁଡ଼ାଏ ରାଜନୀତିକୁ ଦେଶ ଯେପରି ମୋଟେ ହଜମ କରି ପାରୁନାହିଁ ।

ଏକଦା ରାଜନୀତି ମଧ୍ୟ ଗୋଟାଏ ନୀତିହୋଇ ରହିଥିଲା । ତେଣୁ ରାଜନୀତି ଭିତରେ ଏତେଗୁଡ଼ାଏ ଗଳାଆଇଲା ଆବଶ୍ୟକ ହେଉନଥିଲା । ରାଜନୀତିବାଲାଙ୍କ ମୁହଁରୁ ହୁଏତ ବେଶ୍ ଲାଳ ବୋହୁଥିଲା, ମାତ୍ର ସେମାନଙ୍କର ଗୋଡ଼ହାତ ଅବଶ୍ୟ ରହିଥିଲା । ଲଜ୍ଜା ଥିଲା, ତେଣୁ ମୁହଁଟିଏ ଦେଖିଲେ ତାକୁ ଚିହ୍ନି ହେଉଥିଲା । ସମସ୍ତେ ଆଗକୁ ଅନାଇ ବାଟ ଚାଲୁଥିଲେ । ଏପରି ଧରାପରା ହେଉ ହେଉ ହଠାତ୍ କୁଣ୍ଡାକୁଣ୍ଡି ହୋଇ ପଡୁନଥିଲେ ଅଥବା କୁଣ୍ଡାକୁଣ୍ଡି ହେଉ ହେଉ ଧରାପରା ଲାଗି ଯାଉନଥିଲେ । ସ୍ୱାଧୀନ ଭାରତର ରାଜନୀତି ପାଚି ପାଚି ଯେତେବେଳେ ଏଯାଏ ଆସି ପହଞ୍ଚିଲାଣି, ମନେ ହେଉଛି ଏଥର ଫଳଟି ଆଉ କଦାପି ବେଶୀଦିନ ଡାଳରେ ରହିବନାହିଁ, ଏଥର ତାହା ତଳକୁ ଖସି ପଡ଼ିବ, ଭୂଇଁ ଉପରେ ପଡ଼ି ଗୋଟାସୁଦ୍ଧା ଛେତରା ହୋଇଯିବ । ତା'ପରେ ଡାଳରେ ନୂଆ ପତର କଅଁଳିବ, ନୂଆ ହାଉଆରେ ନୂଆ କଢ଼ଟିଏ ଧରିବ, ନୂଆ ଫୁଲରୁ ନୂଆ ଫଳଟିଏ ଦୃଶ୍ୟ ହୋଇ ଆସିବ । ସେତେବେଳେ ଯାଇ ରାଜନୀତିକୁ ବୁଝିହେବ ।

୪/୧୨/୮୮

# ସାଂସ୍କୃତିକ ଅପସଂସ୍କୃତି

ରାମାୟଣ ଗଲା, ମହାଭାରତ ଆସିଲା । ଗୋଟାକୁ ମହାଋଷି ବାଲ୍ମିକୀ ଲେଖିଥିଲେ, ଆଉଗୋଟାକୁ ବ୍ୟାସଦେବ ଲେଖିଥିଲେ । ଦୁହେଁଯାକ ଏକଦା ଋଷି ଥିଲେ । ପବିତ୍ର ଅରଣ୍ୟରେ ବାସ କରୁଥିଲେ । ପ୍ରାଚୀନ ଭାରତବର୍ଷରେ ସଂସାରବାସୀ ମହର୍ଷିମାନେ ହିଁ ଆମ ସଂସ୍କୃତିର ପ୍ରତୀକ ହୋଇ ରହିଥିଲେ । ସଂସାରର ରାଜା ମହାରାଜାମାନେ ସେମାନଙ୍କୁ ଗୁରୁ କରି ମାନୁଥିଲେ । ଏବେ ଅରଣ୍ୟଗୁଡ଼ାକରେ ଆଉ କୌଣସି ଋଷି ବାସ କରୁନାହାନ୍ତି । ତଥାପି ପୁରାତନ କାଳର ସେହି ମହାନ୍ କଥାସଂସ୍କୃତିଗୁଡ଼ିକୁ ଜନଭାବନାରେ ଜାଗରୂକ କରି ରଖିବା ଉଦ୍ଦେଶ୍ୟରେ ଏବର ରାଜାମାନେ ମଧ୍ୟ କମ୍ ମଥା ଖର୍ଚ୍ଚ କରୁନାହାନ୍ତି ।

ସେମାନେ ଦେଶସାରା ଜାଲ ପରି ଦୂରଦର୍ଶନ ଖଞ୍ଜି ଦେଇଛନ୍ତି ଏବଂ ଆମକୁ ଆମର ପ୍ରାଚୀନ ସାଂସ୍କୃତିକ ମଣିମୁକ୍ତା ସହିତ ପରିଚିତ କରାଇ ରଖୁଛନ୍ତି । ଦୂରଦର୍ଶନରେ ପ୍ରଚାର ହେଉନଥିଲେ ଯେ ଭାରତବାସୀ ରାମାୟଣକୁ ଓ ମହାଭାରତକୁ ଭୁଲି ଯାଉଥାନ୍ତେ, ସେକଥା ଆଦୌ ନୁହେଁ । ତେଣୁ ସରକାର ଯେ ସେଗୁଡ଼ିକର ପ୍ରଚାର କରି ଖୁବ୍ ଗୋଟାଏ ବିରାଟ କାର୍ଯ୍ୟ କଲେ, ସେକଥା ବି ମୋଟେ ସତ ନୁହେଁ । ମାତ୍ର ସରକାରଙ୍କର ଏହି ସାଂସ୍କୃତିକ କାର୍ଯ୍ୟଟିରୁ ଆମ ଦେଶର ବଣିଆମାନେ ପୂର୍ଣ୍ଣ ଫାଇଦା

ଉଠାଇଲେ । ରାମାୟଣ ଦିଶିବା ପୂର୍ବରୁ ପ୍ରାୟ ଅଧପହର ପର୍ଯ୍ୟନ୍ତ ସେମାନେ ବିଜ୍ଞାପନଗୁଡ଼ାକୁ ଆଣି ଖଞ୍ଜି ଦେଉଥିଲେ ଏବଂ ରାମାୟଣ ସରିବା ମାତ୍ରେ ପୁଣି ଆଉ ଘଡ଼ିଏ କାଳ ବିଜ୍ଞାପନର ବାଣ ମାରିବାରେ ଲାଗୁଥିଲେ । ରାମାୟଣ ଭିତରେ ସିନା ବାଣ ମରାମରିର ଦୃଶ୍ୟାଭିନୟରେ ରାମ ଜିତୁଥିଲେ ଓ ରାବଣର ବାଣଗୁଡ଼ାକ ପ୍ରତିହତ ହୋଇଯାଉଥିଲା, ମାତ୍ର ବିଜ୍ଞାପନର ସେହି ଦୁଃସହ ଅପସାଂସ୍କୃତିକ ଘଡ଼ିକ ଭିତରେ ସତେଅବା ରାବଣ ଜିତୁଥିଲା ଓ ରାମ ହାରି ଯାଉଥିଲେ ।

ବିଜ୍ଞାପନର ଭଳି ଭଳି ରୂପର ବ୍ୟଙ୍ଗ ମାଧ୍ୟମରେ ରାବଣ ଶର ମାରିବା ମାତ୍ରକେ ରାମଙ୍କର ଦଶଟାଯାକ ମୁଣ୍ଡ ସତେଅବା ଭୂଇଁରେ ଆସି ଲୋଟି ଯାଉଥିଲା । ଏଣିକି ମହାଭାରତରେ ମଧ୍ୟ ସେଇଆ ହେବ । ବରଷେ ଅଥବା ଦୁଇବରଷ କାଳ ସେଇଆ ହେବ । କୃଷ୍ଣଙ୍କର ବଂଶୀବାଦନକୁ ବିଜ୍ଞାପନଗୁଡ଼ାକର ବଂଶୀବାଦନ ବଳିଯିବ ଏବଂ ସରକାରଙ୍କର ଅପାର କରୁଣାରୁ ତାହା ହେବ । ସରକାରଙ୍କର ଆଉ ଏକ ଆବଶ୍ୟକତା ପୂରଣ କରିବା ଲାଗି ତାହା ହେବ । ସରକାରଙ୍କର ମୁଣାକୁ ଟଙ୍କାରେ ଭରି ଦେବାପାଇଁ ତାହା ହେବ । ଏହାର ପ୍ରକୃତରେ ଏପରି ଏକ ନିର୍ଲଜ୍ଜ ସହାବସ୍ଥାନ ବୋଲି କୁହାଯାଇ ପାରିବ, ଯେଉଁଥିରେ କି ସଂସ୍କୃତିକୁ ଅପସଂସ୍କୃତି ସହିତ ଏକତ୍ର ଗୋଳାଇ ଆନନ୍ଦଲୋଭୀ ମଣିଷମାନଙ୍କୁ ପିଆଇ ଦିଆ ଯାଉଥିବ ।

ଏହି ସଂସ୍କୃତି ହେଉଛି ଗୋଟାସୁଦ୍ଧା ସରକାରୀ । ବହୁତ ବଡ଼ବଡ଼ ବୁଦ୍ଧି ଖରଚ ହୋଇ ଏଭଳି ଏକ ଭିଆଣକୁ ଆମର କର୍ମଭୋଗ କରି ଖଞ୍ଜି ଦିଆଯାଇଛି । ବିଚାରା ସରକାରମାନେ ଚିରଦିନ ଏହିଭଳି ଧର୍ମସଙ୍କଟରେ ପୀଡ଼ିତ ହୋଇ ଆସିଛନ୍ତି । ଗୋଦଡ଼ାଙ୍କ ପରି କୋଡ଼ିଛନ୍ତି ଯେତିକି, ମାଡ଼ିଛନ୍ତି ବି ସେତିକି । ଆମଲାଗି ଆନନ୍ଦପରେ ଆନନ୍ଦ ଖଞ୍ଜି ଦେଇଛନ୍ତି ସତ, ମାତ୍ର ଆମର ମହତ ବି ନେଇଛନ୍ତି । କୋଉ ବଣିଆର ସାବୁନ ଓ ଆଉ କୋଉ ବଣିଆର ବାସନା ସୁଣ୍ଠି ଅଧିକ ବିକ୍ରି ହେବ ବୋଲି ରାମଚନ୍ଦ୍ର ଓ କେଶବମାନଙ୍କୁ ଆଣି କାମରେ ଲଗାଇଛନ୍ତି । ସଂସ୍କୃତିକୁ ପଣ୍ୟରୂପେ ବ୍ୟବହାର କରିବା, ତାହା ମଧ୍ୟ ଅପସଂସ୍କୃତିର ଆଉ ଏକ ନାମ ।

୧୧/୧୨/୮୮

# ଝୁମ୍ପୁଡ଼ିମୟ ଜଗତ

ଯୋଉମାନେ ହିସାବ ଓ ଅନୁମାନ ଦ୍ୱାରା ଆମ ଜଗତର ଭବିଷ୍ୟତ କଥାମାନ କହନ୍ତି, ସେମାନେ କହି ସାରିଲେଣି ଯେ, ଏହି ଶତାବ୍ଦୀ ଶେଷ ହେବା ବେଳକୁ

ଭାରତବର୍ଷ ନାମକ ଏକ ଦେଶର ସମଗ୍ର ସହରାଞ୍ଚଳ ଝୁମ୍ପୁଡ଼ିରେ ପରିଣତ ହୋଇ ଯାଇଥିବ । ଅର୍ଥାତ୍, ଆମ ଫୁଲେଇ ସହରମାନେ ପ୍ରଧାନତଃ ଝୁମ୍ପୁଡ଼ିର ବାହନ ଉପରେ ଚଢ଼ି ଏକବିଂଶ ଶତାବ୍ଦୀରେ ପ୍ରବିଷ୍ଟ ହେବେ । ସତକୁ ସତ ଏକ ନୂଆ କଳେବର ଧରି ଆଗାମୀ ଶତାବ୍ଦୀଟି ଆରମ୍ଭ ହେବ । ତା'ପରେ ଆଗକୁ କ'ଣ ହେବ ?

ସହରମାନଙ୍କ ଭିତରେ ଚାରିଆଡ଼କୁ ଅନାଇଲେ ସାଧାରଣତଃ କୋଠାଗୁଡ଼ିକ ହିଁ ଆଗ ନଜରରେ ପଡ଼ିଯାଆନ୍ତି । ଏହି କୋଠାମାନେ ହିଁ ଲକ୍ଷ୍ମୀ ବଢୁଥିବାର ସଙ୍କେତ ବୋଲି ଏକ ଭ୍ରମ ମଧ୍ୟ ଆମକୁ ଭାରି ତତ୍‌କ୍ଷଣାତ୍ ଗ୍ରାସ କରି ପକାଏ । କୋଠାଗୁଡ଼ିକର ମାଧ୍ୟମରେ କୋଉଠି କ'ଣ ଲକ୍ଷ୍ମୀଛଡ଼ା ଅହିତଗୁଡ଼ାକ ଆମ ଭାଗ୍ୟସହରକୁ ଅଣଆୟତ୍ତ କରି ମାଡ଼ି ବସିଛି କେଜାଣି, ତେଣେ ଆମର ସାମୂହିକ ଜୀବନଟା କ୍ରମଶଃ କଣା କଣା ହୋଇଯାଉଛି । କୋଠାମାନେ ବଢ଼ିବା ସଙ୍ଗେ ସଙ୍ଗେ ତେଣେ ଝୁମ୍ପୁଡ଼ିଗୁଡ଼ାକ ବଢ଼ିବାରେ ଲାଗିଛନ୍ତି । କୋଠା ବଢ଼ିଲେ ଝୁମ୍ପୁଡ଼ିମାନେ ଅବଶ୍ୟ ବଢ଼ିବେ ବୋଲି କୌଣସି ଅପଶାଇପ ଆମ ଦେଶର ଭାଗ୍ୟପୁରୁଷକୁ ଗ୍ରାସ କରି ରହିଛି କି ? ଆମ କୋଠାଗୁଡ଼ାକୁ ସତେଅବା ଉପହାସ କରି ଆମ ଝୁମ୍ପୁଡ଼ିମାନେ ମାଡ଼ି ମାଡ଼ି ଯିବାରେ ଲାଗିଛନ୍ତି । ଆମର ସାମୂହିକ ଜୀବନକୁ ସତେଅବା ଝୁମ୍ପୁଡ଼ିମୟ କରିବେ ବୋଲି ପଣ କରି ବାହାରିଛନ୍ତି ।

ଭାଗ୍ୟ କହିଲେ ଯଦି କୌଣସି ଦେଶରେ ସବୁ ମଣିଷଙ୍କର ଭାଗ୍ୟକୁ ନବୁଝାଏ, କୌଣସି ଦେଶର ଯୋଜନା ଯଦି ସବୁ ମଣିଷଙ୍କୁ ଆଖି ଆଗରେ ରଖି ତିଆରି ନହୁଏ, ତେବେ ସେହି ଦେଶରେ ଏକ କ୍ରୂର ପରିଣାମଗଣିତର ବିଧାନ ଅନୁସାରେ ଝୁମ୍ପୁଡ଼ିମାନେ ହିଁ ଅଧିକ ବଢ଼ିବେ । ଯେଡ଼େ ଅପାରଗ ଏବଂ ଶକ୍ତିହୀନ ହୋଇ ଦିଶୁଥିଲେ ମଧ୍ୟ ସେମାନେ ଶେଷକୁ କୋଠାଗୁଡ଼ାକୁ ଅବଶ୍ୟ ଗିଳି ପକାଇବେ । ଆମ ଦେଶରେ ଉଚ୍ଚଶିକ୍ଷା ଓ ଆହୁରି ଉଚ୍ଚଶିକ୍ଷାର ଢ଼ମଗୁଡ଼ାକ ବଢୁଥିବା ସତ୍ତ୍ୱେ ଯେପରି ଅଶିକ୍ଷିତପଣଗୁଡ଼ାକ ଆମର ଖଟୁଲିଗୁଡ଼ାକୁ ଖାଇ ଦିଅଁମାନଙ୍କୁ ମଧ୍ୟ ଖାଇଯିବାକୁ ବସିଲାଣି, ଏକଥା ମଧ୍ୟ ପ୍ରାୟ ଠିକ୍ ସେହିପରି ହେବ । କଣାଗୁଡ଼ାକ ହିଁ ବଡ଼ରୁ ଅଧିକ ବଡ଼ ହେବାରେ ଲାଗିଥିବେ ।

ତେଣୁ ପଣ୍ଡିତମାନେ ଚିନ୍ତା କରନ୍ତୁ, ଅସାଧୁ କର୍ତ୍ତାମାନେ ଚିନ୍ତା କରନ୍ତୁ । ଭାରତବର୍ଷରେ ସମ୍ଭବତଃ ଚିରକାଳ ଅଳପ ମଣିଷଙ୍କୁ ବିଦ୍ୟା, ଧନ ଏବଂ ବଇଭବରେ ଭୂଷିତ କରି ରଖିବାଲାଗି ବହୁତ ମଣିଷଙ୍କୁ ଝୁମ୍ପୁଡ଼ିର ମଣିଷ ହୋଇ ରହିବାକୁ ବାଧ୍ୟ କରାହୋଇ ଆସିଛି । ଝୁମ୍ପୁଡ଼ିଆମାନେ ଚିରକାଳ ଆଁ କରି ଅନାଇ ରହିଥିବେ, ମଣ

**ହୋଇ ରହିଥିବେ ଏବଂ କୋଠାମାନେ ଆପଣାକୁ ଅମରାବତୀପୁର କହି ଗର୍ବ କରିବାରେ ଲାଗିଥିବେ, – ସମ୍ଭବତଃ ଏକଥା ଆଉ ବେଶୀଦିନ ଚଳି ପାରିବନାହିଁ । ଝୁମ୍ପୁଡ଼ିମାନେ ଆମ ମଥାହୀନ ମଥାମାନଙ୍କୁ ଚେତାଇ ଦେବାକୁ କ'ଣ ଏପରି ହୁ' ହୁ' ହୋଇ ବଢ଼ିବାରେ ଲାଗିଛନ୍ତି କି ? ଦେଶରେ ସବୁ ମଣିଷ ଯେତେବେଳେ ଆମର** ସକଳ ଐଶ୍ୱର୍ଯ୍ୟ ବୋଲି ଗୃହୀତ ହେବେ, ସେତେବେଳେ ଶହେରେ ଶହେ ମଣିଷ ଚାଳଘରେ ରହୁଥିବେ ପଛକେ, ମାତ୍ର ତଥାପି ଆମେ ସମସ୍ତେ ଲକ୍ଷ୍ମୀମନ୍ତଙ୍କ ପରି ରହି ପାରିବା । ସେତେବେଳେ ଆଉ ଲକ୍ଷ୍ମୀଛଡ଼ା କୋଠାଘରମାନେ କଦାପି ଝୁମ୍ପୁଡ଼ିମାନଙ୍କୁ ଝୁମ୍ପୁଡ଼ି ହୋଇ ରହିବାକୁ ବାଧ୍ୟ କରିବା ଲାଗି କୌଣସି ପ୍ରଶ୍ରୟ ପାଇବେନାହିଁ ।

୧୮/୧୨/୮୮

# ଧୀରେ ଧୀରେ

ଆମ ଘର, ଆମ ହତା, ଆମ ପାଚେରି ଓ ଆମ ଫାଟକ । ତାକୁ, ଅର୍ଥାତ୍ ସେହି ଫାଟକଟିକୁ ମେଲାକରି ଦୁଇଜଣ ପିଲା ଭିତରକୁ ପଶିଆସିଲେ । ଆମ ହତା ଭିତରକୁ ପଶି ଆସିଲେ । ହତା ଭିତରକୁ ପଶିବାକୁ ଯେତେବେଳେ ସାହସ କଲେଣି, ସେତେବେଳେ ଘର ଭିତରକୁ ପଶିବା ଲାଗି ଆଉ କେତେ ଡେରି ଲାଗିବ ? ଆମେ ବ୍ୟସ୍ତ ହୋଇ ଉଠିଲୁ । ବ୍ୟସ୍ତ ଲାଗିବା ଅତ୍ୟନ୍ତ ସ୍ୱାଭାବିକ ।

ଦୁଇଟି ପିଲା, ଗୋଟିଏ ପୁଅ, ଆଉ ଗୋଟିଏ ଝିଅ । ଭାଇ ଭଉଣୀ ହେବେ କି କ'ଣ । ଏକାଭଳିଆ ଦିଶୁଛନ୍ତି, ଏକାଭଳିଆ ମଇଳା ଦିଶୁଛନ୍ତି । ମୁଣ୍ଡର ବାଳ ଭାଲୁକୁଣୀ ହୋଇ ଉଡୁଛି । ସେଥିରୁ ଗୋଟାଏ ଦିଇଟା କେରା ଛୁଇଁପରି ତଳକୁ ପଡ଼ିଛି । ଚିରା କଳା ପେଣ୍ଟରେ ସଂସାରଯାକର ଲାଜ ଲୁଚାଇବାକୁ ସେମାନଙ୍କର ଦେହ କେତେ ଚେଷ୍ଟା କରୁଛି । ହାତରେ ଗୋଟାଏ ଗୋଟାଏ ଚିରା ଅଖା । ସେମାନେ ଜରିକାଗଜର ବ୍ୟାଗ୍ ସଂଗ୍ରହ କରୁଛନ୍ତି । ରାସ୍ତାମାନଙ୍କ ଉପରେ ଆଉ ଜରିକାଗଜ ସହଜରେ ମିଳୁନାହିଁ । ସଂଗ୍ରହ କରିବା ପିଲା କ୍ରମେ ବହୁତ ହେଲେଣି । ବାବୁମାନଙ୍କର ହତା ଭିତରେ ବି ତ ଜରିକାଗଜର ଖୋଳମାନ ପଡ଼ିଥିବ । ତେଣୁ, ଯେଉଁମାନେ ଏହି ବାଳସଂଗ୍ରାମୀମାନଙ୍କ ଭିତରେ ଟିକିଏ ଅଧିକ ପାରଙ୍ଗମ ବା ଅଧିକ ବୁଦ୍ଧିମାନ୍, ସେମାନେ ଏବେ ଫାଟକ ଆଡ଼େଇ ହତାମାନଙ୍କ ଭିତରକୁ ପଶିଲେଣି । ବାବୁମାନଙ୍କର ଏ ଜରିକାଗଜରେ ଆଉ କି କାମ ଅଛି ? ସେମାନେ ତ କେତେ ଜରିକାଗଜ ଫୋପାଡ଼ି ଦେଉଛନ୍ତି । ତେଣୁ ପିଲାମାନଙ୍କର ସେଥିରେ ଲୋଭ ହେଲାଣି । ଏତେ ସକାଳୁ

ବାବୁମାନଙ୍କ ଘରେ କେହି ଉଠି ନଥିବେ, ତେଣୁ ହତା ଭିତରେ ପଶି ଏଣେତେଣେ ପଡ଼ିଥିବା ଜରିକାଗଜ କେତେଟାକୁ ସାଉଁଟି ଆଣିଲେ କାହାର କଦାପି କିଛିହେଲେ ହାନି ହେବନାହିଁ । ଭଗବାନ ଦେଖୁଥିଲେ ହୁଏତ ତାରିଫ ମଧ୍ୟ କରିବେ ।

ପିଲା ଦୁଇଟା ପଶିଆସିବା ମାତ୍ରକେ ଫାଟକ କେଁ କରି ହେଲା, କୁକୁରଟା ବି ଥିଲା, ଭୋ କରି ଭୁକି ଉଠିଲା । ପିଲା ଦୁଇଜଣ ଘରର ଜଣେ କାହାରି ଆଖିରେ ପଡ଼ିଗଲେ । ତା'ପରେ ନିମିଷକ ମଧ୍ୟରେ ଘରର ପ୍ରାୟ ସମସ୍ତେ ବାହାରକୁ ଆସି ହୋ' ହୋ' କରିବା ଆରମ୍ଭ କରିଦେଲେ । ଏମାନେ ଚୋର ନୁହନ୍ତି ତ ଆଉ କଣ ? ଏହି ବୟସରେ ଏଇ ପିଲା ଦୁଇଟା ଇସ୍କୁଲରେ ପାଠ ପଢୁଥାନ୍ତେ । ଆମେ ଥିଲାବାଲାମାନେ ଅଧିକ ଭଦ୍ର ହୋଇଥିଲେ ଏହି ଦେଶରେ କୌଣସି ପିଲାକୁ ବଡ଼ିସକାଳୁ ଜରିକାଗଜ ସାଉଁଟିବାକୁ ପଡୁନଥାନ୍ତା ।

ତଳେ, ଆମର ସବୁଯାକ ହତାର ବାହାରେ ରହିଥିବା ମଣିଷମାନେ କ୍ରମେ କେବେ ହୁ'କରି ଭିତରକୁ ପଶି ଆସିବେ ତ, ସେତେବେଳେ ଏହି ସବୁକିଛି ବଦଳିଯିବ । ସେତେବେଳେ ପୁରୁଣା ଶାସ୍ତ୍ର ଯିବ, ନୂଆ ଶାସ୍ତ୍ର ଲେଖାଯିବ । ନୂଆ ବିବେକରେ ସଂସାର ଚାଲିବ । ସଂସାର ରହିବ । ପୃଥିବୀଯାକ ଯୋଉଠି ଯାହା ସତକୁ ସତ ବଦଳିଛି, ଏମିତି ସାହସ କରିବା ଦ୍ୱାରା ବଦଳିଛି । ଉପରମାନେ ତଳମାନଙ୍କୁ ଦୟା କରିବା ଦ୍ୱାରା କିଛି ବଦଳିନାହିଁ । ବଡ଼ଲୋକମାନେ ଦରିଦ୍ର ବ୍ରାହ୍ମଣପିଲାଙ୍କୁ ବଦାନ୍ୟତା ଦେଖାଇ ବ୍ରତ କରିଦେବା ଦ୍ୱାରା ଖବରକାଗଜରେ ଖବର ବାହାରିଛି ସିନା, ମାତ୍ର ଅସରଣମାନଙ୍କର ଅସରଣ କଦାପି ବଦଳିନାହିଁ । ଅସଲ ଉପନୟନଗୁଡ଼ାକୁ ଧୋକା ଦିଆଯାଇଛି । ଯେଉଁମାନଙ୍କୁ ଯୁଗେ ଯୁଗେ ଧୋକା ଦିଆଯାଇ ଆସିଛି, ହତା ବାହାରେ ରଖାଯାଇଛି, ପିଲା ଦେଖି ଜରିକାଗଜ ଗୋଟାଇବାକୁ ବାଧ୍ୟ କରାଯାଇଛି, ସେମାନେ ଧୀରେ ଧୀରେ ହତା ଭିତରେ ପଶି ଯେଉଁଦିନ ଘର ଭିତରକୁ ପଶି ଆସିବେ ଓ ସ୍ୱୀକୃତି ଦାବି କରିବେ, ସେଦିନ ଯାଇ ସୂର୍ଯ୍ୟୋଦୟ ହେବ । ସକାଳ ସକାଳ ପରି ଲାଗିବ ।

୨୫/୧୨/୮୮

# ମଇଁଷିପାଳନ କଂଗ୍ରେସ

ଏବେ ଭାରତବର୍ଷର ରାଜଧାନୀ ଦିଲ୍ଲୀରେ ମହାସମାରୋହରେ ଏକ ଆନ୍ତର୍ଜାତିକ ମଇଁଷିପାଳନ କଂଗ୍ରେସ ଅନୁଷ୍ଠିତ ହୋଇଗଲା । କହିବା ବାହୁଲ୍ୟ, ଦିଲ୍ଲୀରେ ବିଭିନ୍ନ ସ୍ଥାନରେ ବହୁ ମହିଷ ଅଛନ୍ତି । ଦିଲ୍ଲୀରେ ମହିଷ ନ ଥାନ୍ତେ ତ

ବାବୁମାନେ କ୍ଷୀର କୁଆଡୁ ପାଉଥାନ୍ତେ ? ମାତ୍ର ମହିଷମାନଙ୍କର ପାଳନ ବିଷୟରେ ଏହି କଂଗ୍ରେସ ରାଜଧାନୀସ୍ଥ ମହିଷଶାଳା ଗୁଡ଼ିକଠାରୁ ବହୁଦୂରରେ ଏକ ଅତ୍ୟନ୍ତ ନିରାପଦ ସ୍ଥାନରେ ଅନୁଷ୍ଠିତ ହେଉଥିଲା । କଂଗ୍ରେସରେ ଯୋଗଦେବାକୁ ମଇଁଷି ପାଳନ ବିଜ୍ଞାନରେ ବିଶେଷଜ୍ଞ ବହୁ ବୈଜ୍ଞାନିକ ଆସିଥିଲେ । ତେଣୁ ସେମାନଙ୍କର ସଂସ୍କାର ଦୃଷ୍ଟିରୁ କଂଗ୍ରେସଟିର ଆୟୋଜନ ରାଜଧାନୀର ସମ୍ଭବତଃ ସବୁଠାରୁ ଅଧିକ ସାଆନ୍ତିଆ ଓ ସବୁଠାରୁ ଅଧିକ ସରକାରୀ ସୁବିଖ୍ୟାତ ଅଶୋକା ହୋଟେଲରେ ହୋଇଥିଲା । ମଇଁଷିମାନେ ସିନା କଳା, ମାତ୍ର ସେମାନଙ୍କର ଚର୍ଚ୍ଚା କରୁଥିବା ବିଜ୍ଞାନଟି ଆଦୌ କଳା ନୁହେଁ । ତାହା ଏକାଳେକେ ଧଳା । ସେହି ବିଜ୍ଞାନକୁ ଜୀବିକା କରିଥିବା ବୈଜ୍ଞାନିକମାନେ ନିଶ୍ଚୟ ଆହୁରି ଅଧିକ ଧଳା ହୋଇଥିବେ ।

ବିଚରା ମହିଷମାନେ ଓ ସେମାନଙ୍କର ଅଧ୍ୟୟନ କରୁଥିବା ବୈଜ୍ଞାନିକମାନେ ! କହିବା ବାହୁଲ୍ୟ, ଏହି ଆନ୍ତର୍ଜାତିକ କଂଗ୍ରେସକୁ ମୋଟେ କୌଣସି ମଇଁଷିଆଳ ଆସିନଥିବେ । ମଇଁଷିଆଳମାନେ ତ ମଇଁଷି ଚରାନ୍ତି, ମଇଁଷି ପାଳିଥାନ୍ତି, ମଇଁଷି ଧରି ବୁଲୁଥାନ୍ତି; ମଇଁଷି ଯୋଉଠି ଶୁଅନ୍ତି, ସେମାନେ ମଧ୍ୟ ଅଧିକାଂଶ ସ୍ଥଳରେ ସେଇଠି ଶୁଅନ୍ତି । ମାତ୍ର ମଇଁଷିମାନଙ୍କର ବିଜ୍ଞାନ ବିଷୟରେ ସେମାନେ କ'ଣ ଜାଣନ୍ତି ? ବୈଜ୍ଞାନିକମାନେ ଏହି ଅବୈଜ୍ଞାନିକ ପୃଥିବୀରେ ଏକାବେଳେକେ ଏକ ଅଲଗା ଧାତୁରେ ଗଢ଼ା ହୋଇଛନ୍ତି । ତେଣୁ ମଇଁଷିମାନେ ନ୍ୟାୟତଃ ଗୁହାଳରେ ଅଛନ୍ତି, ମଇଁଷିଆଳମାନେ ମଧ୍ୟ ସେହିଠାରେ ଅଛନ୍ତି । ସେମାନଙ୍କର ପ୍ରକୃତରେ ଯେଉଁଠି ରହିବା ଉଚିତ, ସେମାନେ ସେହିଠାରେ ଅଛନ୍ତି; ବୈଜ୍ଞାନିକମାନେ ଅଶୋକା ହୋଟେଲ ଭିତରେ ଅଧ୍ୟୟନ-ଦରବାର ବସାଇ ମଇଁଷି ବିଜ୍ଞାନର ଆଲୋଚନା କରୁଛନ୍ତି । ମଇଁଷିମାନଙ୍କର କିଭଳି ପାଳନ ହେବା ଉଚିତ ସେମାନେ ସେହି ଉଚ୍ଚଥାନରେ ଥାଇ ମୂରୁଖ ମଇଁଷିଆଳମାନଙ୍କୁ ସେହି କଥା ବତାଇ ଦେଉଛନ୍ତି । ସେହି କଥାଗୁଡ଼ାକ ମଇଁଷିଆଳମାନଙ୍କ ଯାଏ ପହଞ୍ଚି ପାରୁଛି କି ନାହିଁ, ସେକଥା ଜାଣିବାଲାଗି ସେମାନଙ୍କର ଫୁରସତ କାହିଁ ?

ବିଜ୍ଞାନ ବହିରେ ରହିଛି । ବିଜ୍ଞାନ ଲାବୋରେଟରିରେ ଅଛି । ସଙ୍ଗା ଉପରେ ଅଛି, ସଙ୍ଗାତଳେ ଗୁହାଳରେ ବନ୍ଧା ହୋଇଥିବା ମଇଁଷିମାନଙ୍କ ଯାଏ ତାହା ପହଞ୍ଚି ପାରୁନାହିଁ । ଆମ ସଫାଗୁଡ଼ାକ ଆମ ମଇଳାଗୁଡ଼ାକ ଯାଏ ମୋଟେ ପହଞ୍ଚି ପାରୁନାହିଁ । ଜ୍ଞାନ ଅଜ୍ଞାନ ଭିତରେ ପଶି ପାରୁନାହିଁ । ଜ୍ଞାନ ଅଜ୍ଞାନକୁ ଭୟ କରୁଛି କି ? ସଫାମାନେ ମଇଳାମାନଙ୍କୁ ଭୟ କରୁଛନ୍ତି କି ? ଯଦି ସତ୍ୟଯୁଗ ଆସନ୍ତା, ହୁଏତ ଆମ ମହିଷ-ବୈଜ୍ଞାନିକମାନେ ମଇଁଷିଆଳ ହେବାକୁ ମୋଟେ ଭୟ ବା ଘୃଣା କରନ୍ତେ

ନାହିଁ । ଅଥବା, ଅନ୍ୟ ଭାବରେ କହିଲେ, ମଇଁଷିଆଳମାନେ ହିଁ ମଇଁଷିବିଜ୍ଞାନ ବିଷୟରେ ଆଲୋଚନା କରନ୍ତେ; ଦିଲ୍ଲୀରେ ଅଶୋକା ହୋଟେଲରେ ନୁହେଁ, ଭାରତବର୍ଷର କୌଣସି ଗାଆଁରେ ବସି ସେମାନେ ବିଜ୍ଞାନର କଥା ପକାନ୍ତେ । ଗୁହାଳ ଭିତରକୁ ମଇଁଷିମାନଙ୍କ ପାଖକୁ ଆସିବା ଲାଗି ସେତେବେଳେ ବିଜ୍ଞାନକୁ ମୋଟେ ଲାଜ ଲାଗନ୍ତାନାହିଁ ।

୧/୧/୮୯

# ସାରା ଦେଶଟା ଆମର

ସ୍ୱୟଂ ସରକାରଙ୍କର ହିସାବ ଅନୁସାରେ, ଆମ ଦେଶରେ ଖରଚ କରାଯାଉଥିବା ମୋଟ ଅର୍ଥପରିମାଣର ଶତକଡ଼ା ପଞ୍ଚାଅଶୀ ଭାଗ ଦରମାରେ ଖରଚ ହୋଇଯାଉଛି । ଏହି ଦରମା ଭିତରେ ଆମ ଦେଶରେ ଦିଆଯାଉଥିବା ବିଭିନ୍ନ ଭତ୍ତାଗୁଡ଼ାକୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଉଛି । ଆମ ସରକାରୀ ଏବଂ ଅର୍ଦ୍ଧସରକାରୀ ଦପ୍ତର ଓ ଦରବାରମାନଙ୍କରେ କାମଗୁଡ଼ିକ କେତେଦୂର କଅଣ ହେଉଛି କେଜାଣି, ସେଠି ଦରମାମାନେ ହୁହୁ ହୋଇ ବଢ଼ିବାରେ ଲାଗିଛନ୍ତି । ବଡ଼ଠାରୁ ସାନ ଦରମାଖିଆମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଟାଣୁଆ ସଙ୍ଗଠନମାନ ରହିଛି । ସ୍ୱାଧୀନ ଭାରତରେ ଏହି ସଙ୍ଗଠନଗୁଡ଼ିକ ହିଁ ଏଠି ପ୍ରାୟ ସବୁଯାକ ଲଢ଼େଇଗୁଡ଼ିକୁ ଲଢୁଛନ୍ତି । ପ୍ରଥମତଃ ଦରମା ବଢ଼ିବା ପାଇଁ ଏହି ଲଢ଼େଇଗୁଡ଼ିକୁ ଲଢୁଛନ୍ତି । ଚାଲୁଣିମାନେ ଛୁଞ୍ଚିର ଅନୁକରଣ କରୁଛନ୍ତି ଓ ଛୁଞ୍ଚିମାନେ ଚାଲୁଣିମାନଙ୍କ ଠାରୁ ପ୍ରେରଣା ପାଇବାରେ ଲାଗିଛନ୍ତି । କେହି କାହାକୁ ଅଟକାଇବାର ମୁହଁ ବି ବନ୍ଦ ହୋଇଯାଇଛି ।

ଦରମାବ୍ୟତୀତ ପେନ୍‌ସନ୍ ରହିଛି । ଏବେ ତ ଭଳି ଭଳି ପେନ୍‌ସନ୍ ବାହାରିଲାଣି । ପେନ୍‌ସନ୍ ପଛକୁ ଭତ୍ତା । ସଂଗ୍ରାମୀମାନଙ୍କୁ ଏଠି ଆଉ ଦିଲ୍ଲୀରେ ଦୁଇମୁଠ କରି ଭତ୍ତା ମିଳୁଛି । ଯେଉଁମାନେ ରାଜ୍ୟର ଆସେମ୍ବ୍ଲି ବା ପାର୍ଲାମେଣ୍ଟକୁ ସଦସ୍ୟ ହୋଇ ଯାଉଛନ୍ତି, ସେମାନଙ୍କ ଲାଗି ଯାବଜ୍ଜୀବନ ଭତ୍ତାର ବ୍ୟବସ୍ଥା ହୋଇ ସାରିଲାଣି । ସେମାନେ ମଲେ ସେମାନଙ୍କର ପରିବାରକୁ ମଧ୍ୟ ଭତ୍ତା ମିଳିବ ବୋଲି ଖାତାରେ ଲେଖା ହୋଇ ସାରିଲାଣି । ଯେଉଁମାନଙ୍କ ହାତରେ ଦେଶର କାଗଜପତ୍ର ରହିଛି, ସେମାନେ ସତେଅବା ଆଗତୁରା ନିଜ ନାମରେ ସବୁକିଛି ଲେଖାଇ ନେଉଛନ୍ତି । ଏମାନଙ୍କ ପରେ ଗୋଛାଏ ସାହିତ୍ୟିକ ଓ କଳାକାର ମଧ୍ୟ ବାହାରିଲେଣି । ସେମାନେ ନିଜକୁ ଦୁଃସ୍ଥ ବୋଲି କହିଲେଣି ଏବଂ ନିର୍ମଳ ବିବେକରେ ଭତ୍ତା ମାଗିଲେଣି, ଭତ୍ତା ପାଇଲେଣି । ଭାରତ ଭଳି ଏକ ବିକାଶଶୀଳ ଦେଶରେ ସବୁଠାରୁ ଅଧିକ ପଇସା

ବିକାଶମୂଳକ କାର୍ଯ୍ୟକ୍ରମମାନଙ୍କରେ ଖରଚ ହେଉଥାନ୍ତା । ଲୋଭୀ ସାମନ୍ତ ଓ ଲୋଭୀ ଶିକ୍ଷିତମାନଙ୍କର କୃପାରୁ ଏବେ ତାହା ଦରମା ଏବଂ ଭତ୍ତାରେ ହିଁ ଖରଚ ହେଉଛି ।

ଦେଶରେ ଅଧିକାଂଶ ମଣିଷ ଶୋଇଛନ୍ତି । ସତେଅବା କେବଳ ଚତୁରମାନେ ହିଁ ଚେଇଁଛନ୍ତି । ଶୋଇଥିବା ମଣିଷର ନିଦ ଭାଙ୍ଗିବା ପୂର୍ବରୁ ସେହି ଚତୁରମାନେ ଦେଶଟାକୁ ଗୋଟାସୁଦ୍ଧା ଚଳୁ କରିଦେବେ ବୋଲି ବିଚାର କରି ବାହାରିଛନ୍ତି । ରାସ୍ତା ତିଆରି ହୋଇପାରୁ ନାହିଁ, ପିଲାଙ୍କ ପାଇଁ ଇସ୍କୁଲଘର ନାହିଁ, ରୋଗୀମାନଙ୍କ ସକାଶେ ଔଷଧ ନାହିଁ କି ଚିକିତ୍ସା ନାହିଁ - ମାତ୍ର ଚତୁରମାନଙ୍କର ଦରମା ଓ ଭତ୍ତା ବଢ଼ିବାରେ ଲାଗିଛି । ସେମାନଙ୍କର ପାରିଲାପଣ ଦେଖି ମନେ ହେଉଛି ସେମାନେ ମଲାବେଳେ ଏହି ଦେଶଟାକୁ ସାଙ୍ଗରେ ଧରି ନିଷ୍ଚୟ ଏକାବେଳେକେ ସ୍ୱର୍ଗକୁ ନେଇଯିବେ । ଏଠି ମୋଟେ ଛାଡ଼ିଦେଇ ଯିବେନାହିଁ । ସେମାନେ ହୁଏତ ସେଠି ମଧ୍ୟ ଭତ୍ତା ଖାଇବେ, ଦରମା ପାଇବେ । ଆନନ୍ଦରେ ରହିପାରିବେ ।

ଅମଲାମାନେ ଯୁଗେ ଯୁଗେ ନ୍ୟାୟତଃ ଚତୁର ହୋଇ ରହିଛନ୍ତି । ଚତୁରପଣରେ ଯୁଗକୁ ଭ୍ରଷ୍ଟ କରିଛନ୍ତି ଓ ଏଠି ଅସଲ ସଂଗ୍ରାମଗୁଡ଼ିକୁ ବିସ୍ମୃତ କରି ରଖିଛନ୍ତି । ମାତ୍ର, ଯୋଉ ଦେଶରେ ସଂଗ୍ରାମୀମାନେ, ସାହିତ୍ୟିକମାନେ ଓ କଳାକାରମାନେ ମଧ୍ୟ ଅମଲାଙ୍କ ପରି ଚତୁର ହୁଅନ୍ତି, ସେହି ଦେଶରେ ଯାବତୀୟ ସଂଗ୍ରାମର ଭାଗ୍ୟ ଫାଟିଯିବାକୁ ବାଧ୍ୟ ହୁଏ । ଯାବତୀୟ ବିକାଶ ସେଠି ଏକାବେଳେକେ ବୋକା ବନିଯାଏ । ଚତୁରମାନେ ହିଁ ସବୁଯାକ ସାହିତ୍ୟ କରନ୍ତି, ସବୁଯାକ ଉତ୍ସବ ପାଳନ କରୁଥାନ୍ତି । ଚତୁର-ଶିରୋମଣିମାନଙ୍କୁ ବିମାନ ଉପରେ ବସାଇ ସେମାନେ ଏଣେ ଦେଶଟାଯାକକୁ ଚରିଯିବାରେ ଲାଗିଥାନ୍ତି । ଉଦୟର ଯାବତୀୟ ମାର୍ଗକୁ ଉଗାଳି ରଖିଥାନ୍ତି । ବିକାଶ ମାଡ଼ ଖାଇ ଯାଉଥାଏ ।

୮।୧।୮୯

# ଯଦି, ଯଦି, ଯଦି,

ଶ୍ରୀ ରାଜୀବ ଗାନ୍ଧୀ ଯଦି ତାଙ୍କର ଅମୁକ ଜାଗାରେ ଥିବା ଫାର୍ମକୁ ଗରିବ ଲୋକଙ୍କ ମଧ୍ୟରେ ବାଣ୍ଟିଦେବେ, ତେବେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଆହ୍ଲାବାଦରେ ରହିଥିବା ନିଜର ସବୁ ସମ୍ପତ୍ତିକୁ ହରିଜନମାନଙ୍କ ଭିତରେ ବାଣ୍ଟିଦେବା ପାଇଁ ପ୍ରସ୍ତୁତ ଅଛନ୍ତି ବୋଲି ଖବର କାଗଜରେ ଘୋଷଣା ଜାରି କରିଛନ୍ତି । ମନେହେଉଛି, ବିଚରା ଏମାନଙ୍କର ଅସଲ ସଂଗ୍ରାମ ହେଉଛି ପରସ୍ପରର ନିର୍ମୂଳୀକରଣ ପାଇଁ, ଏହି ଅପେକ୍ଷମାଣ

ଦେଶକୁ ନୂଆ ଭଦ୍ରତାର ଧାରାରେ ଗଢ଼ିବା ପାଇଁ ମୋଟେ ନୁହେଁ । ଏହି ଦେଶରେ ଅସଲ ପରିବର୍ତ୍ତନର ରାଜନୀତିକ ଧାରାଗୁଡ଼ିକୁ କାମ କରିବାକୁ ଦିଆଯାଉଥିଲେ ଏମାନେ ଦୁଇପକ୍ଷଯାକ ହୁଏତ କୋଉଦିନରୁ ନିର୍ମୂଳ ହୋଇ ସାରନ୍ତେଣି ଅର୍ଥାତ୍ ଭାରତୀୟ ଜୀବନର ନିର୍ମାଣାତ୍ମକ ମୁଖ୍ୟସ୍ରୋତ ସହିତ ମିଶିଯାଇ ସାରନ୍ତେଣି ।

ସ୍ୱାଧୀନ ଭାରତରେ ଦିନକ ପାଇଁ ମଧ୍ୟ ଦିଲ୍ଲୀ ସହରର ଉଚ୍ଚ ଉଚ୍ଚ ଅଟ୍ଟାଳିକା ଏବଂ ଦରିଦ୍ର ମଣିଷର କୁଡ଼ିଆଘରଗୁଡ଼ିକ ପରସ୍ପର ସହିତ ସହାବସ୍ଥାନ କରି ରହି ପାରିବନାହିଁ ବୋଲି ଏକଦା ମହାତ୍ମା ଗାନ୍ଧୀ ଆମ ସମସ୍ତଙ୍କୁ କେଡ଼େ ନିର୍ଭର ଦେଇ କହିଥିଲେ । ଯେକୌଣସି ଭଦ୍ର ଏବଂ ମାନବକାମୀ ରାଜନୀତିରେ ସେହି ସହାବସ୍ଥାନକୁ ପ୍ରକୃତରେ ଏକ ବର୍ବରତା ବୋଲି କୁହାଯାଆନ୍ତା । ଆମର ନେତାମାନେ ଓ ସାଆନ୍ତମାନେ କେଡ଼େ ଗୌରବର ଢ଼ମ କରି ସେହି ବର୍ବରତାଗୁଡ଼ାକୁ ଦେଶରେ ସତେଅବା ଚିରସ୍ଥାୟୀ କରି ରଖିବାକୁ ଇଚ୍ଛା କରୁଛନ୍ତି । ଉପରୁ ମଣିଷମାନଙ୍କୁ ଭୁଲାଇବା ପାଇଁ ଅଥବା ଭଣ୍ଡୁର କରି ରଖିବା ପାଇଁ ପରସ୍ପର ଆଗରେ ମିଛ ଫୁତ୍କାରଗୁଡ଼ାକୁ ମାରିବାରେ ଲାଗିଛନ୍ତି । ଏମାନେ ଯଦି କେହି ସାଧୁ ହୋଇଥାନ୍ତେ ଅଥବା ଏହି ଦେଶରେ ସତକୁ ସତ କିଛି ବଦଳୁ ବୋଲି ଇଚ୍ଛା କରୁଥାଆନ୍ତେ, ତେବେ ଏକ ଆରେକୁ କୌଣସି ଅପେକ୍ଷା ନ ରଖି ଆପଣାର ଉଦ୍‌ବୃତ୍ତ ସମ୍ପତ୍ତିଗୁଡ଼ାକୁ ଅବଶ୍ୟ ଛାଡ଼ିଦେଇ ପାରୁଥାନ୍ତେ । ମାତ୍ର ରଜା ଓ ସାଆନ୍ତମାନେ ଏଡ଼େ ସହଜରେ କଦାପି ତାହା କରି ପାରିବେନାହିଁ । ଏବଂ, ବିଚରା ଦରିଦ୍ର ଓ ହରିଜନମାନେ ! ସେମାନେ ଆଉ କେତେକାଳ ବଡ଼ମାନଙ୍କର ରାଜନୀତି ନାମକ ପଶାପାଲିରେ ଗଡ଼ଗଡ଼ାଉଥିବେ କେଜାଣି ? ଏମିତି ଧାରାରେ କେବେ କିଛି ବଦଳେ ନାହିଁ । ଏହି ଦେଶ ମଧ୍ୟ କଦାପି ବଦଳି ପାରିବନାହିଁ । ଦୟାବାନ ନେତୃତ୍ୱ ଉପରୁ ଦୟା ଦେଖାଇବାର ହୀନ ପ୍ରତିଦ୍ୱନ୍ଦ୍ୱିତାର ତାମସା ଲଗାଇଥିବା ପର୍ଯ୍ୟନ୍ତ ମଣିଷର ଭାଗ୍ୟ ଏଠି କନ୍ଦୁକ ଭଳି ଖାଲି ଏପାଖ ସେପାଖ ହୋଇ ଗଡ଼ିବାରେ ଲାଗିଥିବ । ଦୁଇପକ୍ଷରେ ଦୁଇ ପ୍ରକାର ପଗଡ଼ି ପିନ୍ଧି ଲଢୁଥିବା ଭଳି ଦେଖାଯାଉଥିଲେ ମଧ୍ୟ ସେମାନଙ୍କର ମତଲବ ପ୍ରକୃତରେ ସେହି ଗୋଟାଏ ହୋଇ ରହିଥିବ । ସେହି ଗୋଟାଏ ପ୍ରକାରର ଦରବାର ଲାଗି ରହିଥିବ । ନେତୃତ୍ୱର ଏହି ତାମସାଦ୍ୱାରା ଯେ ସତକୁ ସତ ବେଶୀକିଛି ହୋଇପାରିବ ନାହିଁ, ଗତ ଚାଳିଶି ବର୍ଷର ରାଜନୀତିକ ନାଟକଗୁଡ଼ିକ ତାହା ଏକାଧିକବାର ପ୍ରମାଣ କରି ସାରିଲେଣି । ତଥାପି ତାମସା ଲାଗି ରହିଛି । ସେମାନେ କେହି କ୍ଲାନ୍ତ ହୋଇ ପଡୁନାହାନ୍ତି । କ୍ଲାନ୍ତ ହେବାର କୌଣସି ପ୍ରୟୋଜନ ମଧ୍ୟ ନାହିଁ । ତେଣୁ ଯଦି, ଯଦି ଯଦିର ଚଢ଼ାଉତରାଗୁଡ଼ାକ ଏଠି ଆମକୁ ଭେଳିକି ଲଗାଇ ରହିଛି ।

୧୫/୧/୮୯

# ପାକୁଆ ଆସ, ଦାନ୍ତୁରା ଆସ

ଆଗେ ରାଜନୀତି ଆଗରେ ଏକ ସ୍ୱପ୍ନ ଥିଲା । ତେଣୁ ଯେଉଁମାନେ ରାଜନୀତିକୁ ଆସୁଥିଲେ, ସେମାନେ ତାହାକୁ ଏକ ବ୍ରତପରି ଗ୍ରହଣ କରୁଥିଲେ । ରାଜନୀତିରେ ରହିଥିବା ମଣିଷକୁ ସେତେବେଳେ ସଂଗ୍ରାମୀ ବୋଲି କୁହାଯାଉଥିଲା । ଅନେକଙ୍କ ମତରେ ଏବେ ସେହି ସଂଗ୍ରାମ ସରିଗଲାଣି । ଏବେ ଆମେ ଖାଲି ଶାସନ କରିବା, ଖାଲି ଭୋଗ କରିବା ଓ ଖାଲି ଘୋଡ଼ାରେ ବସି ଦେଶଟାଯାକ ପାରିଧି କରି ବୁଲିବା । ତେଣୁ ଯେଉଁମାନେ ଭୋଗ କରିବା ଏବଂ ଖାଲି ହୁକୁମ ଜାରି କରିବାକୁ ଜୀବନର ସବୁଠାରୁ ଅଧିକ ଆନନ୍ଦଦାୟକ ଫନ୍ଦା ବୋଲି ଗ୍ରହଣ କରି ନେଇଛନ୍ତି, ସେମାନେ ଏବେ ଅଧିକ ସଂଖ୍ୟାରେ ରାଜନୀତି ଭିତରକୁ ଆସିବା ଲାଗି ଇଚ୍ଛା କରୁଛନ୍ତି ।

ଭାରତବର୍ଷରେ ଆଗେ ବୁଢ଼ାଦିନେ ବାନପ୍ରସ୍ଥର ବ୍ୟବସ୍ଥା ରହିଥିଲା । ଏହି ବ୍ୟବସ୍ଥାଟି ଦ୍ୱାରା ବାନପ୍ରସ୍ଥୀମାନଙ୍କର ଯାହା ଲାଭ ହେଉ ବା ନହେଉ, ତରୁଣମାନଙ୍କର ନିଶ୍ଚୟ ଅନେକ ଲାଭ ହେଉଥିଲା । ବୁଢ଼ାମାନଙ୍କର ଉପଦ୍ରବରୁ ସେମାନେ ଅନ୍ତତଃ ରକ୍ଷା ପାଇ ଯାଉଥିଲେ । ଏବେ ସେ ରୀତି ବଦଳି ଗଲାଣି । ବୁଢ଼ାମାନେ ଆଉ ବାନପ୍ରସ୍ଥକୁ ମନ କରୁନାହାନ୍ତି । ପାଟିରେ ଗୋଟିଏ ହେଲେ ଦାନ୍ତ ନଥିଲେ ମଧ୍ୟ ସେମାନେ ତଥାପି ଆହୁରି କେତେ କ'ଣ ଭୁଞ୍ଜିବେ ଓ ଭୋଗିବେ ବୋଲି ମନ କରୁଛନ୍ତି । ପୂର୍ବରୁ କେବେ ରାଜନୀତିରେ ସେମାନଙ୍କର ଯାଆଁବାଳ ବି ପଡ଼ିନଥିଲା । ଜୀବନର ଅନ୍ୟ ଯାବତୀୟ ବେଦୀରେ ବସିପାରି ହାଡ଼ ଚୋବାଇ ଚୋବାଇ ପାକୁଆ ହେବାପରେ ଏମାନେ ପୁନର୍ବାର ବୁଢ଼ାବର ସାଜି ରାଜନୀତିର ବେଦୀରେ ବସିବେ ବୋଲି ଆସୁଛନ୍ତି । ଚଲାଖିପଣରେ ତ ସେମାନେ ଅନ୍ୟ କାହାରିଠାରୁ କୌଣସି ଗୁଣରେ କମ୍ ନୁହନ୍ତି, ତେଣୁ ବୁଢ଼ାଗଛରେ ମଧ୍ୟ ବଉଳିବାକୁ ମନ ନକରିବେ କାହିଁକି ?

ପାକୁଆଙ୍କ ତୁଳନାରେ ଦାନ୍ତୁରାମାନେ ମଧ୍ୟ କାହିଁକି କମ୍ ଧୂରନ୍ଧରପଣିଆର ପ୍ରମାଣ ଦେବେ ? ସେମାନେ ବି ହୁକୁହୁକୁ ହୋଇ ରାଜନୀତି ଭିତରକୁ ପଶି ଆସୁଛନ୍ତି । ବେଳସୁଁ ଦଳର ଖାତାରେ ନାଆଁ ଲେଖାଇ ପକାଉଛନ୍ତି । ସେମାନଙ୍କର ମନ ଭିତରେ ପ୍ରକୃତରେ କୌଣସି ବିଶ୍ୱାସ ଅଛି କି ନାହିଁ, ସେକଥା ଦେଖିବାକୁ ମଧ୍ୟ କାହାର ସାହସ ଅଛି ? ଆଜିକାଲି କାହାର କେଉଁ ବିଶ୍ୱାସ ଅଛି ଯେ ସେମାନଙ୍କର ବିଶ୍ୱାସ ନାହିଁ ବୋଲି ଦାଣ୍ଡରେ ବିଚାର ପଡ଼ିବ ? ତେଣୁ 'ଶୁଭସ୍ୟ ଶୀଘ୍ରମ୍' । ଯେତେ

ଚଞ୍ଚଳ ଆସିବ, ସେତେ ଅଧିକ ଭୋଗ କରିବ । ପାକଳ ଅପାକଳର ଆଦୌ କୌଣସି ପ୍ରଶ୍ନ କଦାପି ଉଠିବନାହିଁ । ଆମ ଯୁଗର ଓ ଆମ ରାଜନୀତିର ଅପାର ଦୟା, ତାହା ଦାନ୍ଦୁରା ଆଉ ପାକୁଆଙ୍କୁ ଏକାଠି ଗୋଟିଏ ତୁଠରେ ଆଣି ଧରା ପକାଇ ଦେଉଛି ।

ଯେଉଁ ଅସଲ ସଂଗ୍ରାମଟି ଆସୁଛି, ଏମାନେ କେହି ସେହି ସଂଗ୍ରାମ ଲାଗି ଯୋଗ୍ୟ ନୁହନ୍ତି । ପୁରୁଣା ଭୋଗଘରଗୁଡ଼ାକରେ ତଥାପି ଯାହାକିଛି ବାକି ରହିଛି, ଏମାନେ କେବଳ ସେଇଥିରୁ ହିଁ ଯତ୍‌କିଞ୍ଚିତ୍ ଭାଗ ମାରିବାଲାଗି ଆସି ପହଞ୍ଚୁଛନ୍ତି । ଏମାନେ ସେହି ଆର ସଂଗ୍ରାମଟି ନିମନ୍ତେ ମୋଟେ ତିଆରି ହୋଇ ନାହାନ୍ତି । କାଳ ଆର ସଂଗ୍ରାମଟିର ଯୋଦ୍ଧାମାନଙ୍କୁ ବାଛିବା ନିମନ୍ତେ ପରୀକ୍ଷା କରି ବାହାରିଲାଣି । ତେଣୁ ଦାଣ୍ଡରେ ନକଲିମାନେ ଭାରି ଦୟନୀୟ ଭାବରେ ଧରାପଡ଼ି ଯାଉଛନ୍ତି । ଆହୁରି କେତେ କେତେ ଅବଶ୍ୟ ଧରା ପଡ଼ିଯିବେ ।

୨୨/୧/୮୯

# ଇତି ବର୍ଗଚରିତ୍ରମ୍

ରାସ୍ତାରେ ବୁଲୁଥିବା ଯେଉଁ କୁକୁରମାନେ ନିତି ଆମର ଆଖିଆଗରେ ହାଉଯାଉ ହେଉଥାନ୍ତି, ସେମାନଙ୍କୁ ନେଇ କେହି ପ୍ରଦର୍ଶନୀ କରେନାହିଁ । ଏହି କୁକୁରମାନେ ହୋଟେଲମାନଙ୍କ ଭିତରେ ମୋଟେ ପଶି ପାରନ୍ତି ନାହିଁ । ହୋଟେଲ ଫାଟକରେ ଜଗୁଆଳି ରହିଥାଏ । ବାବୁମାନଙ୍କ କୁକୁରଙ୍କୁ ନେଇ ପ୍ରଦର୍ଶନୀ ଅନୁଷ୍ଠିତ ହୁଏ । ସେହି ପ୍ରଦର୍ଶନୀ ହୋଟେଲମାନଙ୍କରେ ହୁଏ । ଖୋଦ୍ ମନ୍ତ୍ରୀମାନେ ସେହି ପ୍ରଦର୍ଶନୀର ଉଦ୍‌ଘାଟନ କରିବାକୁ ଆସନ୍ତି, ଶୋଭା ବଢ଼ାନ୍ତି ।

ଆମ ଦେଶରେ ସବୁ ମଣିଷଙ୍କୁ ଗୋଟିଏ ବର୍ଗରେ ସୁମାରି କରିବାର ବିବେକ ଏବେ ମଧ୍ୟ ଜନ୍ମ ଲାଭ କରିନାହିଁ । ଆବହମାନ କାଳରୁ ଏବେ ମଧ୍ୟ ଭାରତବର୍ଷରେ ବ୍ରାହ୍ମଣ ରହିଛନ୍ତି, ଶୂଦ୍ର ରହିଛନ୍ତି । ପାରିବାର ମଣିଷମାନେ ଚିରକାଳ ଭାରତବର୍ଷରେ ବ୍ରାହ୍ମଣ ବୋଲାଇ ଆସିଛନ୍ତି । ପାରିବାର ମଣିଷମାନେ ହିଁ ରାଜନୀତିରେ ସବାବଡ଼ ଆସନ ଉପରେ ଯାଇ ବସିଛନ୍ତି ଓ ତେଣୁ ସେମାନେ ମଧ୍ୟ ବ୍ରାହ୍ମଣମାନଙ୍କ ମଧ୍ୟରେ ସୁମାରି ହୋଇଛନ୍ତି । ବ୍ରାହ୍ମଣମାନେ ଅର୍ଥାତ୍ ବଡ଼ ବଡ଼ ଲୋକମାନେ ଅର୍ଥାତ୍ ବଡ଼ ଲୋକମାନେ ଯେଉଁଠାରେ ସୁମାରି ହେଉଛନ୍ତି, ସେଠାରେ ସେମାନଙ୍କର କୁକୁରମାନେ ବି ସାମିଲ ହୋଇ ପାରିବେ ନାହିଁ କାହିଁକି ? ତେଣୁ ବ୍ରାହ୍ମଣ, ବାବୁ, ବଡ଼ଲୋକ

ଓ କୁକୁର ଏଠି ବର୍ଗନ୍ୟାୟରେ ଗୋଟିଏ ତୁଠରେ ଏକାଠି ହୋଇ ପାରୁଛନ୍ତି, ଉତ୍ସବ କରି ପ୍ରଦର୍ଶନୀ ମଣ୍ଡାଉଛନ୍ତି ଓ ଆପଣା ସମବର୍ଗଚରିତ୍ରର ପ୍ରତିପାଦନ କରୁଛନ୍ତି । ନିର୍ବୋଧ ଶୂଦ୍ରମାନେ ଦୂରରେ ଥାଇ ଭୋ' ଭୋ' ହେଉଛନ୍ତି । ଏହି ଦେଶରେ ଶୂଦ୍ରମାନେ ଆବହମାନ କାଳରୁ ଏହିପରି ଭୋ' ଭୋ' ହୋଇ ଆସିଛନ୍ତି । ସେମାନଙ୍କୁ ମଣିଷ ବୋଲି ସ୍ୱୀକୃତି ଦେବାଲାଗି ବାବୁମାନଙ୍କର ସଭାଘରେ ଏବଂ କଚେରିମାନଙ୍କରେ ଆହୁରି ଅନେକ ଯୁଗ ବାକି ରହିଛି । ସେମାନଙ୍କୁ ପ୍ରଦର୍ଶନୀ ଭିତରେ ଭାଗ ଦେବାର ବେଳଟା ତ ଆହୁରି କେତେ କେତେ ଦୂରରେ ଯାଇ ରହିଛି ।

ବାବୁମାନେ ଏଠି ମଣିଷଙ୍କ ଅପେକ୍ଷା କୁକୁରମାନଙ୍କୁ ଅଧିକ ଭଲ ପାଆନ୍ତି । ତେଣୁ ମଣିଷ ପାଖରେ ହାରି ବା ମଣିଷଙ୍କଠାରୁ ହୁଡ଼ି, ସେମାନେ ସତେଅବା ନିଜ ଲାଜ ଲୁଚାଇବାକୁ ଅଥବା ଅପାରଗତାଗୁଡ଼ାକୁ ଭୁଲିବାକୁ କୁକୁରମାନଙ୍କର ପ୍ରଦର୍ଶନୀ ଭିତରେ ଯାଇ ସାମିଲ ହେବାକୁ ଓର ଉଣ୍ଡିବାରେ ଲାଗିଥାଆନ୍ତି । ଭାରତବର୍ଷରେ ବ୍ରାହ୍ମଣମାନେ ସମ୍ଭବତଃ ସବୁଦିନେ ଏହିପରି ଶୂଦ୍ରମାନଙ୍କ ପାଖରୁ ଲୁଚି ଲୁଚି ଆସିଛନ୍ତି, ଶୂଦ୍ରମାନଙ୍କୁ ହତା ବାହାରେ ରଖି ସେମାନେ ନିଜର ସ୍ୱତନ୍ତ୍ର ପ୍ରଦର୍ଶନୀମାନଙ୍କରେ ଯଜ୍ଞ କରିଛନ୍ତି, ସ୍ୱୟଂବର କରାଇଛନ୍ତି, ସଂସ୍କୃତି କରିଛନ୍ତି, ସାହିତ୍ୟ ମଧ୍ୟ କରିଛନ୍ତି । ଏବେ ମଧ୍ୟ କରୁଛନ୍ତି । ସେହି କୁକୁରମାନଙ୍କୁ ଅନେକ ଧନ୍ୟବାଦ, ଯେଉଁମାନେ କି ଏହିସବୁ ଯାବତୀୟ ପ୍ରଦର୍ଶନୀରେ ନିମିତ୍ତ ରୂପେ କାର୍ଯ୍ୟ କରି ଆସିଛନ୍ତି । ସେମାନେ ଆପଣାର ବ୍ରାହ୍ମଣତ୍ୱକୁ ସାର୍ଥକ କରିଛନ୍ତି ।

ସେଦିନ ମନ୍ତ୍ରୀମାନଙ୍କୁ କୋଡ଼ରେ ବସାଇ ହୋଟେଲ ଭିତରେ ଯେତେବେଳେ ପ୍ରଦର୍ଶନୀ ସଭା ବସିଥିଲା, ସେତେବେଳେ ସେହି ଶୁଭଲଗ୍ନରେ ମଧ୍ୟ ହୋଟେଲ ବାହାରେ ଭିକାରୀମାନେ ଥିଲେ, ଯାଉଥିବା ଆସୁଥିବା ଭଦ୍ରମହୋଦୟମାନଙ୍କୁ ପାଞ୍ଚପଇସା ଦଶପଇସା ଆଶାରେ ହାତ ବଢ଼ାଉଥିଲେ । ସେମାନଙ୍କୁ ହୋଟେଲ ଭିତରକୁ ସିନା ମନା କରାଯାଇ ପାରିବ, ହୋଟେଲ ବାହାରେ ଆପଣାର ଅସ୍ତିତ୍ୱ ଘୋଷଣା କରିବାରୁ କୋଉ ଆଇନ୍ ସେମାନଙ୍କୁ ରୋକି କରି ରଖିଦେଇ ପାରିବ ? ତେଣୁ ଏହି ଲୀଳା ଅଲବତ ଲାଗି ରହିଥିବ । ଭାରତବର୍ଷ ହୁଏତ ଆହୁରି ଅନେକ ଦିନ ଯାଏ ଏହିପରି ଦୁଇଟା ଅଲଗା ଅଲଗା ମିଜାଜରେ ବିଭକ୍ତ ହୋଇ ରହିଥିବ ।

୨୯/୨/୮୯

# ଶାନ୍ତି-ସମ୍ମିଳନୀରେ ନିଶା

ଆମ ସମାଜରେ ଯେଉଁମାନେ ଅନେକ ଅନ୍ୟାୟ କରୁଛନ୍ତି, ଆମ ଶାସନରେ ଯେଉଁମାନେ ବହୁ ଅସଭ୍ୟତାକୁ ନିତି ସ୍ଥାୟୀ କରି ରଖିବାରେ ଲାଗିଛନ୍ତି, – ଅର୍ଥାତ୍, ଗୋଟିଏ କଥାରେ କହିଲେ - ଯେଉଁମାନେ ସ୍ୱୟଂ ଏଠି ବହୁ ଅଶାନ୍ତିର କାରଣ ହୋଇଛନ୍ତି, ସେମାନେ ଯେତେବେଳେ ମହୋତ୍ସବ କଲାପରି ଶାନ୍ତି ସମ୍ମିଳନୀର ଆୟୋଜନମାନ କରୁଛନ୍ତି, ସେତବେଳେ ଉପରେ ଭଗବାନ ଥାଇ ନିଶ୍ଚୟ ହସୁଥିବେ । ତଳେ ପୃଥିବୀରେ ମଧ୍ୟ ଯେଉଁଦିନ ମଣିଷମାନେ ସେମାନଙ୍କର ଅଭିନୟଗୁଡ଼ାକୁ ଦେଖି ହସିବାକୁ ଆରମ୍ଭ କରିବେ, ସଂସାରରେ ସମ୍ଭବତଃ ସେହିଦିନ ଯାଇ ପ୍ରକୃତ ଶାନ୍ତି ଆଡ଼କୁ ଚକଟା ବୁଲିଯାଇ ପାରିବ । ପ୍ରକୃତ ଶାନ୍ତିର ମୂଳଦୁଆ ସେହିଦିନ ପଡ଼ିବ ।

ଏବେ ଦୈତ୍ୟମାନେ ହିଁ ସବୁଠାରୁ ବଢ଼ିଆ ବକ୍ତୃତା ଦେଇ ଶିଖିଲେଣି । ବକ୍ତୃତା ଦେଇ ଯେ ସଂସାରକୁ କେହି ଶାନ୍ତି ଆଣି ପାରିବ ନାହିଁ, ଆପଣାର ଅଲିଅଳ ବିବେକଟା ଦ୍ୱାରା ଦୈତ୍ୟମାନେ ସେହି କଥାଟିକୁ ମୋଟେ ବୁଝିପାରିବେ ନାହିଁ । ବର୍ତ୍ତମାନର ଯେଉଁ ଅବ୍ୟବସ୍ଥାଗୁଡ଼ାକ ସକାଶେ ପୃଥିବୀ ବହୁ ଅଶାନ୍ତିର ଶିକାର ହୋଇଛି, ସେହି ଅବ୍ୟବସ୍ଥାଗୁଡ଼ିକ ବଦଳିଲେ ଯାଇ ଶାନ୍ତି ସମ୍ଭବ ହେବ । ଯେଉଁ ମଣିଷମାନେ ସେହି ଅବ୍ୟବସ୍ଥାର କାରଣ ହୋଇ ରହିଛନ୍ତି, ପୃଥିବୀରେ ଅନ୍ଧାରର ପ୍ରତିନିଧିତ୍ୱ କରିବାରେ ଲାଗିଛନ୍ତି, ସେମାନେ ମଝିରେ ମଝିରେ ଶାନ୍ତି ସମ୍ମିଳନୀଟାଏ କରି ବେତା ବେତା ବକ୍ତୃତା ଦେଲେ କଦାପି ଶାନ୍ତିର ପ୍ରତିଷ୍ଠା ହେବ ନାହିଁ ।

ପୃଥିବୀରେ କେତେକ ମଣିଷ ମଣିଷଙ୍କ ଭିତରେ ବାଘ ହୋଇ ରହିବାକୁ ସଫଳତାର ଉପାୟ ବୋଲି ଗ୍ରହଣ କରିଛନ୍ତି ବୋଲି ପୃଥିବୀ ଅଶାନ୍ତି ଭୋଗୁଛି । ସେହି ବାଘମାନେ ନାନା କାରଣରୁ ଆମ ଶାସନରେ ଅଛନ୍ତି, ଆମ ଶିକ୍ଷା ଭିତରେ ଅଛନ୍ତି, – କ୍ଷମତାର ଚଣ୍ଡ ସ୍ଥାନମାନଙ୍କରେ ଯାଇ ବସିଛନ୍ତି । ଏକଥା ପୃଥିବୀରେ ରହିଛି, ଭାରତବର୍ଷରେ ରହିଛି, ଏଠି ଆମ ଓଡ଼ିଶାରେ ମଧ୍ୟ ରହିଛି । ବାଘମାନେ ବାଘର ବଂଶ ବଢ଼ାଉଛନ୍ତି, ବାଘର ଆଚାରଗୁଡ଼ାକୁ ହିଁ ଯୁଗର ଆଚାର ବୋଲି ଚଳାଇ ଦେଉଛନ୍ତି । ତେଣୁ ଅଶାନ୍ତି ରହିଛି । ଭୟପ୍ରଦର୍ଶନ ରହିଛି, ଭୟାଳୁମାନେ କ୍ଷମତାସ୍ଥଗୁଡ଼ାକୁ ଜାବୁଡ଼ି ଧରି ମଣିଷକୁ ବାଟ ଛାଡ଼ି ଦେଉନାହାନ୍ତି ।

ଅଧିକ କ୍ଷମତା, ଅଧିକ ସୁବିଧା ଓ ଅଧିକ ସମ୍ପତ୍ତିକୁ ମାଡ଼ି ନବସିଲେ ଯିଏ ଥୟ ହୋଇ ରହିପାରେ ନାହିଁ, ସିଏ ହେଉଛି ମଣିଷମାନଙ୍କ ମଧ୍ୟରେ ଅସଲ ଭୟାଳୁ ।

ଭୟାଳୁ ମଣିଷମାନେ ହିଁ ପ୍ରଚଣ୍ଡ ହୁଅନ୍ତି, ଉଗ୍ର ହୁଅନ୍ତି, ସଂସାର ଲାଗି କାଳ ହୋଇ ରହନ୍ତି । ମନୁଷ୍ୟ ଜୀବନର ଅସଲ ସ୍ୱପ୍ନଗୁଡ଼ାକୁ ସେମାନେ ପଣ୍ଡ କରିଦେବାରେ ଲାଗିଥାନ୍ତି । ସଂସାରକୁ ସତେଅବା ବୋକା ବନାଇ ରଖିବାକୁ ସେମାନେ ବଢ଼ିଆ ବକ୍ତୃତା ଦେଇ ବୁଲୁଥାନ୍ତି । ଅଧିକାଂଶ ଶାନ୍ତି ସମ୍ମିଳନୀ ସେହିମାନେ କରନ୍ତି । ପୃଥିବୀର ମଣିଷଙ୍କୁ ଭେଳିକି ଲଗାଇ ରଖିଥାନ୍ତି । ମଣିଷର ସ୍ୱାଭାବିକ ବିଶ୍ୱାସଗୁଡ଼ିକରୁ ଯଥାସମ୍ଭବ ଅଧିକ ଫାଇଦା ଉଠାଇବାକୁ ଚେଷ୍ଟା କରୁଥାନ୍ତି । ପ୍ରକୃତ ଶାନ୍ତି ଇଚ୍ଛା କରୁଥିବା ମଣିଷ ଏମାନଙ୍କୁ ଅବଶ୍ୟ ଚିହ୍ନି ରଖିବ । ନହେଲେ ସିଏ ମଧ୍ୟ ସେମାନଙ୍କ ଜାଲରେ ଯାଇ ପଡ଼ିଯିବ । ଶାନ୍ତିର ସକଳ ସମ୍ମିଳନୀ ସତ୍ତ୍ୱେ ପୃଥିବୀକୁ ଅଶାନ୍ତିମାନେ ହିଁ କାମୁଡ଼ି ଧରିଥିବେ ।

୫।୨।୮୯

# ମାଇକ୍ ମାଧ୍ୟମରେ ଉପାସନା

ପୃଥିବୀରେ ଅଧିକାଂଶ ମଣିଷ ସୁଖର କାମନା ନେଇ ଉପାସନା କରିବାକୁ ଯାଆନ୍ତି । ଏହି ସୁଖକାମନାକୁ ହିଁ ସେମାନଙ୍କର ଚଳନ୍ତି ବିଶ୍ୱାସର ଭାଷାରେ ମୁକ୍ତିକାମନା ବୋଲି କୁହାଯାଏ । ଏହିଭଳି ଉପାସକମାନଙ୍କର ମୁକ୍ତିକାମୁକତାକୁ ନେଇ ଯେତେବେଳେ ବଣିଜ କରାଯାଏ ଓ ଫଳଲାଭର ଅତିଳାଳସାରେ ପଡ଼ି ଉପାସକମାନେ ଯେତେବେଳେ ପ୍ରାୟ କାମୁକ ରଙ୍କ ପରି ଦେଉଳ ଭିତରେ ଯାଇ ପହଞ୍ଚନ୍ତି, ସେତେବେଳେ ସ୍ୱର୍ଗ ଏକାବେଳକେ ମର୍ତ୍ତ୍ୟରେ ଆସି ପହଞ୍ଚି ଯାଇଥିଲା ପରି ମନେ ହୁଏ । ଠାକୁରମାନେ ସତେଅବା ବାରନାରୀ ପରି ଦେଖାଯାଉଥାନ୍ତି । ଆମକୁ ଏକାବେଳକେ ଆକୃଷ୍ଟ କରି ନେଇଯାଆନ୍ତି । ଆମର ଉପାସନା ନୁହେଁ, ସମ୍ଭବତଃ ଆମ ଭିତରେ ରହିଥିବା କାମୁକତାଟା ହିଁ ଅମୋଘ ଆଶ୍ରା ପାଇଯାଏ ।

ଆମେ ଆପେ ଆପେ ଆକର୍ଷିତ ହୋଇ ତାଙ୍କୁ ମନ କରିବା, ତାଙ୍କ ପାଖକୁ ଯିବା, ତାଙ୍କର ଉପାସନା କରିବା, – ସିଏ ହେଉଛି ଏକ ଅନ୍ୟ ପୃଥିବୀର କଥା । ସେହି ପୃଥିବୀଟିକୁ ଆମେ ଆମ ଭିତରେ ହାଡ଼େ ହାଡ଼େ ଭୟ କରୁଛୁ କି କ'ଣ କେଜାଣି, ଆମେ ଏବେ ସେଇଟିକୁ ଆଉ ମୋଟେ ମନ କରି ପାରୁନାହୁଁ । ମଣିଷ ସତକୁ ସତ ଭଲ ପାଇଲେ ମୋଟେ କୌଣସି କୋଳାହଳ କରେ ନାହିଁ । ନିଜ ଜୀବନରେ ତାଙ୍କୁ ସତକୁ ସତ ଲୋଡ଼ିଲେ ଆଉ କୌଣସି କୋଳାହଳ କରିବାକୁ ଇଚ୍ଛା ହୁଏ ନାହିଁ । ନିଜର ଅସଲ ସିଂହାସନରେ ତାଙ୍କୁ ପ୍ରତିଷ୍ଠିତ କରି ରଖାଇବାକୁ ସତକୁ

ସତ ଶ୍ରଦ୍ଧା ଜାତ ହେଲେ ବାହାରେ ମାଇକ୍ ଲଗାଇ ତାଙ୍କୁ ଟାପରା କରିବାକୁ ମୋଟେ ଭଲ ଲାଗେ ନାହିଁ । ଏବେ କେଜାଣି କାହିଁକି ଆମ ଜୀବନର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ସତେଅବା ଏହି ଟାପରା କରିବାକୁ ହିଁ ସବୁଠାରୁ ଅଧିକ ମନ ହେଉଛି । ଟାପରାଗୁଡ଼ାକୁ ଚାଲୁ ରଖିବା ଲାଗି ଏଯୁଗର ବଣିକମାନେ ମଧ୍ୟ ଭଳି ଭଳି ପଣ୍ୟମାନ ଆଣି ଖଞ୍ଜି ଦେଉଛନ୍ତି ।

ଦେଉଳମାନେ ଯେତିକି ବଢ଼ୁଛନ୍ତି, ବଣିଜଗୁଡ଼ାକ ମଧ୍ୟ ସେତିକି ଅଧିକ ହେବାରେ ଲାଗିଛି । କୋଳାହଳ ବହୁଗୁଣିତ ହେଉଛି । ଆପଣା କୋଳାହଳ ଦ୍ୱାରା ମଣିଷ ଭିତରର ବିଟମାନେ ମଣିଷ ଭିତରେ ତଥାପି ରହିଥିବା ଉପାସକଟିକୁ କୁଆଡ଼େ ମନ କୁଆଡ଼େ ପୋତି ପକାଇବାର ଷଡ଼ଯନ୍ତ୍ର କରୁଛନ୍ତି । ଏବେ ଠାକୁର ମନ୍ଦିରକୁ ଯିବାର ପ୍ରାୟ ଯାବତୀୟ ଅବସରରେ ମାଇକ୍ ବାଜିଲାଣି, କୋଳାହଳର ନହବତ ବସିଲାଣି । ସେଠି ପାଦ ଦେଉ ଦେଉ ମଣିଷର ଆଖି ଆଉ କାନ ଲାଗି ଏତେ ଏତେ ଉତ୍ତେଜକ ଆଣି ଖଞ୍ଜି ଦିଆଯାଉଛି ଯେ, ମଣିଷର ହୃଦୟଯାଏ ପହଞ୍ଚି ପାରିବାକୁ ଆଉ ମୋଟେ ଫୁରସତ ରହୁନାହିଁ । ଦେଉଳ ଭିତରେ ରହିଥିବା ଦିଅଁଟିକୁ ଆମେ ହୁଏତ ଭାରି ଈର୍ଷା କରୁଛୁ, ତେଣୁ ସିଏ ଯେପରି ଆମକୁ ଛୁଇଁ ପାରିବାକୁ ଆମଯାଏ ମୋଟେ ଆସି ପାରିବେ ନାହିଁ, ସେଥିଲାଗି ତାଙ୍କ ଘରଭିତରେ ଆମେ କାନଅତଡ଼ା ପକାଇ ରଖିବା ନିମନ୍ତେ ମାଇକ୍ ବାନ୍ଧି ରଖିଛୁ । ତାଙ୍କର ସାନ କଥାଗୁଡ଼ାକ କାଳେ ଆମ କାନବାଟେ ହୃଦୟଯାଏ ଗଳି ଚାଲିଯିବ, ସେଥିଲାଗି ଆମେ ସତେଅବା ମାଇକ୍ ସାହାଯ୍ୟରେ ନିଜକୁ ନିରାପଦ କରି ରଖିଦେଇଛୁ ।

୧୨/୨/୮୯

# ଯୁଗକୁ ଚାହି ଚାଷ

କୃଷି କହିଲେ ସବାଆଗ କୃଷକକୁ ବୁଝାଏ । ଯିଏ ଜମି ଚାଷ କରେ, ସେଇ କୃଷକ । କୃଷକର ଆବଶ୍ୟକତା ଅନୁସାରେ ହିଁ କୃଷି । ଆମେ ଯେଉଁସବୁ ଶସ୍ୟକୁ ଖାଦ୍ୟରୂପେ ବ୍ୟବହାର କରୁଛୁ, ତାହାରି ଚାଷ ହେଉଛି କୃଷକର ସର୍ବପ୍ରଥମ ଆବଶ୍ୟକତା । ଯେଉଁ ଦେଶରେ ଅଧିକାଂଶ କୃଷକର ପେଟକୁ ଯଥେଷ୍ଟ ଅନ୍ନ ମିଳେନାହିଁ, ସେହି ଦେଶରେ କୃଷି କହିଲେ ସବାଆଗ ସେହି ଅନ୍ନ - ଉତ୍ପାଦନକୁ ହିଁ ବୁଝାଇବା ଉଚିତ । ମାତ୍ର, ଯେତେବେଳେ ତୁଚ୍ଛା ଅଣକୃଷକ ମାମଲତକାରମାନେ କୃଷକ ପାଇଁ ଚିନ୍ତା କରିବାର ଦାୟିତ୍ୱ ନେଇଥାନ୍ତି ଏବଂ ସେହି ଦାୟିତ୍ୱ ତୁଲାଇବା ପାଇଁ

ସରକାରଙ୍କଠାରୁ ଦରମା ଖାଉଥାନ୍ତି, ସେଠି ଅଧିକାଂଶ ସମୟରେ ଯାବତୀୟ ଅସ୍ୱାଭାବିକ ଘଟଣା ଘଟିଥାଏ ।

ଏବେ କୋରାପୁଟ ଓ କଳାହାଣ୍ଡିରେ ଗରିବମାନଙ୍କର ଉତ୍‌ଥାନ ନିମନ୍ତେ ସରକାର ବିଶେଷ ଭାବରେ ଟଙ୍କା ଖରଚ କରୁଛନ୍ତି । କଥାଟା ଉଠି ଉଠି ଭୁବନେଶ୍ୱରରୁ ଦିଲ୍ଲୀଯାଏ ଗଲାଣି । କୋଟି କୋଟି ଟଙ୍କାର ଖର୍ଚ୍ଚ ବରାଦ ହୋଇ ତେଣୁ ଆସି ପହଞ୍ଚୁଛି । ଯେଉଁଠି ପାଣି ମାତ୍ରୁ ନଥିଲା, ସେଠାରେ ମଧ୍ୟ ଏଣିକି ଚାଷ ହୋଇପାରିବ । ସେଠି କି ଚାଷ ହେବ ? ଏକଥା ଯଦି ସେହି ଗାଆଁମାନଙ୍କର ଚାଷୀକୁ ପଚରାଯାଏ, ତେବେ ସିଏ କହିବ ଯେ, ଧାନଚାଷ ହେବ, କାନ୍ଦୁଲ ଚାଷ ହେବ, ମାଣ୍ଡିଆ ଚାଷ ହେବ । ଏସବୁର ଚାଷ ହେଲେ ପେଟ ପୂରିବ, ବିଲର ଫସଲ ସିଧା ଘରକୁ ଆସିବ ।

ମାତ୍ର ସରକାରୀ ମାମଲତକାରମାନେ ଅଲଗା କଥା କହୁଛନ୍ତି । ସେମାନେ କୃଷକ ନୁହନ୍ତି, ସେମାନେ କେବେ ଚାଷ କରିନାହାନ୍ତି, ତାଙ୍କ ଘରେ କେବେ ଖାଇବାର ଅଭାବ ହୋଇନାହିଁ । ସେମାନେ ଯାହାର ଖାଉଛନ୍ତି, ଆଗ ତାଙ୍କର ଆୟ ବା ଅର୍ଥ ବଢ଼ାଇବାକୁ ଅଡ଼ି ବସିଛନ୍ତି । ସେମାନେ କହୁଛନ୍ତି ଏଠି କଫି ଚାଷ ହେଉ, ଚାହାବାଗାନ ହେଉ, ବାରବର୍ଷିଆ ଲାଗୁ; ସରକାର ସେଥିରୁ ଅଧିକ ଲାଭ ପାଇବେ । 'ବାଣିଜ୍ୟେ ବସତି ଲକ୍ଷ୍ମୀଃ' ବୋଲି ଶାସ୍ତ୍ରରେ କୁହାଯାଇଛି । କଫି, ଚାହା ଓ ଝୋଟ ବାହାରକୁ ରପ୍ତାନି ହେବ । ସେଥିରୁ ବହୁତ ଟଙ୍କା ମିଳିବ । ସ୍ଥାନୀୟ ଆଦିବାସୀମାନେ ସେହିସବୁ କାମରେ ମୂଲିଆ ହୋଇ କାମ କରିବେ । ପଇସା କମାଇବେ । ମାଣ୍ଡିଆ ଓ ଚାଉଳ କିଣି ଖାଇବେ । ସେମାନଙ୍କର ଆଦୌ କୌଣସି ଅସୁବିଧା ହେବନାହିଁ ।

ଏକଥା ଶୁଣି ଏବେ ଏହି ଅଞ୍ଚଳର ଅଧିବାସୀ ବୋକାଙ୍କ ପରି ଉପରକୁ ଅନାଉଛି । ସିଏ ଏସବୁ କିଛି ବୁଝି ପାରୁନାହିଁ । ସୌଦାଗରମାନଙ୍କର ବୁଦ୍ଧିଗୁଡ଼ାକ ଭିତରେ ସିଏ ମୋଟେ ପଶି ପାରୁନାହିଁ । ଏଥର ଯୁଗକୁ ଚାହିଁ ଚାଷ ହେବ ବୋଲି ସିଏ ହୁଏତ ନିଜର ମନକୁ ବୋଧ ଦେବାର ଚେଷ୍ଟା କରୁଛି । ଯୁଗ ଉପରେ ତା'ର କୌଣସି ଅକ୍ତିଆର ରହିବନାହିଁ । କୃଷକମାନେ ମୂଲିଆ ହେବେ । କିଣିଖିଆ ହେବେ, ଗାଆଁ ଡଙ୍ଗରରେ ଯାହା ଫଳିବ, ଏଣିକି ତାହା ଆଉକୁଆଡ଼େ ଚାଲିଯିବ । ଯୁଗଯୁଗର ଧାରାକୁ ପଇସାରେ ହିଁ ସମ୍ପତ୍ତିର ହିସାବ କରୁଥିବା ଚାକିରିଆମାନେ କେଇଟା ବର୍ଷରେ ଗୋଟାସୁଦ୍ଧା ବଦଳାଇ ଦେବେ । ତେଣୁ ଆଦିବାସୀର ମନ ଏଥିରେ ମୋଟେ ପାଉନାହିଁ । ସିଏ ବି ଏଣିକି ଆଖି ଖୋଲି ଭାବିବାକୁ ଆରମ୍ଭ କରୁଛି । ଆଗ ମାଣ୍ଡିଆ ଫଳୁ, - ତାପରେ ଜମି ବଳିଲେ ସେଥିରେ ବାବୁମାନେ କଫି ଲଗାଇବେ ବୋଲି ସିଏ କହୁଛି ।

୧୯।୨।୮୯

# ବିଦେଶୀ ହାତ ରହିଛି

ଓଡ଼ିଶାର ବାଲିଆପାଳ ଅଞ୍ଚଳରେ ଏକ ଦୂରସମର୍ଥ କ୍ଷେପଣାସ୍ତ୍ର ଘାଟି ନିର୍ମାଣ କରିବେ ବୋଲି ସରକାରଙ୍କର ସାମରିକ ବିଭାଗ ବେଶ୍ କେତେବର୍ଷ ହେଲା ଘୋଷଣା କରି ଆସୁଛନ୍ତି ଏବଂ, ବାଳିଆପାଳର ଅଧିବାସୀମାନେ ଆରମ୍ଭରୁ ହିଁ ତାହାର ବିରୋଧ କରି ଆସୁଛନ୍ତି । ତେଣେ ସରକାର ଯେତିକି ତୋଡ଼ରେ କ୍ଷେପଣାସ୍ତ୍ର ଘାଟି ଅବଶ୍ୟ ବନିବ ବୋଲି କହୁଛନ୍ତି, ଏଣେ ସେହି ଅଞ୍ଚଳର ଅଧିବାସୀମାନେ ମଧ୍ୟ ସେତିକି ଦୃଢ଼ତାର ସହିତ ତାହାର ବିରୋଧ କରୁଛନ୍ତି । ସମରବିଭାଗ ଜିତିବ କି ଜନମତ ଜିତିବ, ତାହାର କୌଣସି ଫଇସଲା ହୋଇନାହିଁ ।

ମାତ୍ର, ସାମରିକ ବିଭାଗରେ ଯେଉଁ ବୈଜ୍ଞାନିକମାନେ ରହିଛନ୍ତି, ସେମାନେ କ୍ରମେ ଉଚ୍ଛନ୍ନ ହୋଇ ପଡୁଥିଲା ପରି ମନେ ହେଉଛି । ସେମାନଙ୍କୁ ଆଉ ମୋଟେ ତର ସହୁନାହିଁ । ଏବେ, ସରକାରୀ ସେହି ମନ୍ତ୍ରଣାଳୟର ପରାମର୍ଶଦାତା ଶ୍ରୀଯୁକ୍ତ ଅରୁଣାଚଳମ୍ ଅଭିଯୋଗ କରିଛନ୍ତି ଯେ, ବାଳିଆପାଳର ଜନବିରୋଧ ପଛରେ କୌଣସି ବିଦେଶୀ ହାତ ରହିଛି । ଭାରି କଉତୁକର କଥା ଯେ ତାଙ୍କର ଆହୁରି ଉପରେ ଥିବା ଅନ୍ୟମାନେ ଏପର୍ଯ୍ୟନ୍ତ ସେଭଳି ଅଭିଯୋଗ କରିନାହାନ୍ତି । ତାଙ୍କରି ମୁହଁଦେଇ କଥାଟାକୁ କୁହାଇ ଉହାଡ଼ରେ ରହିଯିବାର ମତଲବରେ ଯଦି ଉପରର ରଜାମାନେ ସେପରି କରିଥାନ୍ତି, ତେବେ ତାହା ଏକାବେଳକେ ଅନ୍ୟକଥା ହେବ । ବିଚରା କର୍ମଚାରୀମାନେ ଅନେକ ସମୟରେ ସେପରି କରିଥାନ୍ତି । ମାତ୍ର, ଅରୁଣାଚଳମ୍ ଯଦି କାହାରି ଶିଖାରେ ନପଡ଼ି ସତକୁ ସତ ଆପଣା ବୁଦ୍ଧିରେ ସେକଥା କହିଥାନ୍ତି, ତେବେ ଏହାକୁ ତାଙ୍କରି ଏକ ଭୀଷଣ ଦୁର୍ବୁଦ୍ଧି ବୋଲି କହିବାକୁ ହେବ । ଭଗବାନ ଏହିପରି ଦୁର୍ବୁଦ୍ଧିଆମାନଙ୍କ ହାତରୁ ଦେଶକୁ ସବୁଦିନେ ରକ୍ଷା କରନ୍ତୁ ।

ବାଳିଆପାଳର ଆନ୍ଦୋଳନ ପଛରେ ପ୍ରକୃତରେ ବିଦେଶୀ ହାତ ରହିଛି କି ନାହିଁ, ସେକଥା ସମୟ ଅବଶ୍ୟ କହିବ । ମାତ୍ର ଏଥିରେ କୌଣସି ସନ୍ଦେହ ନାହିଁ ଯେ ଅରୁଣାଚଳମ୍ ଓ ତାଙ୍କ କାଟର ଯେଉଁ ଅନ୍ୟମାନେ ଆମର ଏଠି ବିଦେଶୀ ଭଳି ରହିଛନ୍ତି ଓ ଉପରେ ଉପରେ ଉଡ଼ୁଛନ୍ତି, ବାଳିଆପାଳ ସେହିମାନଙ୍କ ବିରୋଧରେ ଆନ୍ଦୋଳନର ସଂକଳ୍ପ ଗ୍ରହଣ କରିଛି । ସେହି ମଣିଷମାନେ ହିଁ ଦେଶଟାକୁ ବିଦେଶ ବୋଲି ସମଝୁଛନ୍ତି ଓ ଉପରେ ରହିଛନ୍ତି ବୋଲି ଏଠି ଯାହା ଇଚ୍ଛା ତାହା ଅଳବତ କରିପାରିବେ ବୋଲି ଆଣ୍ଡ ବାନ୍ଧିଛନ୍ତି । ସେମାନେ ତାଙ୍କ ବିଜ୍ଞାନକୁ ମହେଶ୍ୱର କରି ବସାଇବାକୁ ମନ

କରୁଛନ୍ତି । ରାଷ୍ଟ୍ରାୟତ୍ତ ବିଜ୍ଞାନ ଅତୀତରେ ମଣିଷର ଆଦୌ କମ୍ ଅନିଷ୍ଟ କରିନାହିଁ । ଏବେ ମଧ୍ୟ କରୁଛି ।

ରାଷ୍ଟ୍ରାୟତ୍ତ ବୈଜ୍ଞାନିକମାନେ ଅନେକ ସମୟରେ ଠିକ୍ ରାଷ୍ଟ୍ରମାନଙ୍କ ପରି ଆଖି ହରାଇବସନ୍ତି । ନିଜର ବିବେକ ବିକି ଦିଅନ୍ତି । ଅବିବେକୀ ରାଷ୍ଟ୍ରର ଦରମା ଖାଉ ଖାଉ ସେହି ରାଷ୍ଟ୍ର ପାଖରେ ହିଁ ଗୋଲାମ ହୋଇ ଯାଆନ୍ତି । ଏମିତି ଗୋଲାମ ସବୁ ରାଷ୍ଟ୍ରରେ ଥାଆନ୍ତି । ଆମେ ସେମାନଙ୍କଠାରୁ ଅବଶ୍ୟ ସାବଧାନ ରହିବା ।

୨୬/୨/୮୯

# ବିଫଳ ବିପ୍ଳବର ସଫଳ ହାକିମମାନେ

ସାନ ଉପରକୁ ବଡ଼, ବଡ଼ ଉପରକୁ ଆହୁରି ବଡ଼ ଓ ଆହୁରି ବଡ଼ମାନଙ୍କ ଉପରକୁ ସବାବଡ଼ମାନେ, – ଭାରତବର୍ଷରେ ହାକିମମାନେ ଏହିପରି ସଜା ହୋଇ ରହିଛନ୍ତି ଓ ଏହି ଦେଶର ଧନୁଯାତ୍ରାକୁ କାଏମ ରଖିଛନ୍ତି । ତାଲୁକା ସ୍ତରରୁ ଜିଲ୍ଲା, ଜିଲ୍ଲାସ୍ତରରୁ ରାଜ୍ୟ ଓ ରାଜ୍ୟସ୍ତରରୁ କେନ୍ଦ୍ରଯାଏ ଥାଟ ବାନ୍ଧି ରହିଛନ୍ତି । ସେମାନେ ସରକାରଙ୍କଠାରୁ ମୋଟା ଦରମା ଖାଇ ଭାରତବର୍ଷର ଭାବୀ ବିପ୍ଳବକୁ କାର୍ଯ୍ୟକାରୀ କରାଉଛନ୍ତି । ସିଆଡୁ ପାହାଡ଼ ଭିତରେ ରହିଥିବା କେଉଁ ସୁକୁମାର ଶୈଳନିବାସରୁ ତାଲିମ ନେଇ ଆସିଛନ୍ତି । ସରକାରୀ ବିପ୍ଳବଗୁଡ଼ାକରେ ଖାନଦାନୀ ଗୁମାସ୍ତା ହୋଇ ରାଜ୍ୟ ଚଳାଉଛନ୍ତି । ଏବଂ, ସେମାନେ ପ୍ରାୟ ସମସ୍ତେ ଘୋର ନିଷ୍ଠାର ସହିତ ବିଶ୍ୱାସ କରୁଛନ୍ତି ଯେ ଦେଶରେ ଯାବତୀୟ ଉଦ୍ୟମ କେବଳ ବିଫଳ ହିଁ ହେବାରେ ଲାଗିଛି ।

ସେମାନେ କେଡ଼େ ଖୁସି ହୋଇ ତୁମେ ନପଚାରିଲେ ମଧ୍ୟ ତୁମକୁ ହୁଏତ କହିବାକୁ ଲାଗନ୍ତି ଯେ, ଶୈଳବିହାରରେ ସେମାନଙ୍କର ତାଲିମ ସମୟରେ ସେମାନଙ୍କୁ କେତେ ନା କେତେ ବିଷୟରେ ଶିକ୍ଷା ଦିଆଯାଇଛି । ଘୋଡ଼ାଚଢ଼ା ଶିକ୍ଷା ଦିଆଯାଇଛି, କୁଆଡ଼େ ଯୋଗ ମଧ୍ୟ ଶିକ୍ଷା ଦିଆଯାଇଛି । ମାତ୍ର, ଅତ୍ୟନ୍ତ ଦୁର୍ଯୋଗର ବିଷୟ ଯେ, ସେମାନେ ଯେଉଁ କାର୍ଯ୍ୟଟି ସକାଶେ ଆମ ଶାସନର ହାତୀଶାଳରେ ଆମ ଭାଗ୍ୟଅରଣ୍ୟର ସବୁଠାରୁ ଅଧିକ ଗେହ୍ଲା ହାତୀରୂପେ ମୁତୟନ ହୋଇ ରହିବେ, ସେହି କାର୍ଯ୍ୟଟିକୁ ଦକ୍ଷ ଭାବରେ ତୁଲାଇ ପାରିବା ଲାଗି ସେମାନଙ୍କୁ ପ୍ରାୟ କୌଣସି ଶିକ୍ଷା ଦିଆଯାଇନାହିଁ ।

ଭାରତର ସମ୍ବିଧାନ ଅନୁସାରେ ଯେଉଁ ସାମାଜିକ ବିପ୍ଳବ ହେବ ବୋଲି ଲେଖାହୋଇ ରହିଛି, ସେହି ବିପ୍ଳବର ଦୃଷ୍ଟିକୋଣରୁ ବିଚାର କଲେ ଏଠି ଆମ ଘରେ

ସେମାନେ ସତେଅବା କୁଣିଆ ହୋଇ ରହିଛନ୍ତି । ଭାରତରେ ଆଦୌ କିଛି ନହେଉ ବୋଲି ଓ ଏହିପରି ସାଆନ୍ତମାନଙ୍କର ସବୁଦିନ ପାଳକ ପଡ଼ିଥାଉ ବୋଲି ନିଜର ମନ ଭିତରୁ ଇଚ୍ଛା କରୁଛନ୍ତି । ଯୋଉ କାମ ପାଇଁ ସେମାନେ ନିଯୁକ୍ତ ହୋଇ ରହିଛନ୍ତି, ସେମାନଙ୍କର ସେଥିରେ କୌଣସି ବିଶ୍ୱାସ ନାହିଁ । ଲଗା ନାହିଁ କି ପଘା ନାହିଁ । ସେମାନେ ବିଫଳ ନହୁଅନ୍ତେ ବା କିପରି ?

ଭାରତର ଯାବତୀୟ ବିପ୍ଳବ ବିଫଳ ହୋଇଯାଉଛି, ରାଜନୀତିକ ଯାବତୀୟ ସ୍ୱପ୍ନକୁ ଭୂତ ଖାଇଯାଉଛି । ସ୍ୱପ୍ନର ଯାବତୀୟ ଘରେ ଖଣ୍ଡ ପଶିଛନ୍ତି । ଖଣ୍ଡମାନେ ହିଁ ଏଠି ଯାବତୀୟ ବାଟକୁ ଓଗାଳି ରହିଛନ୍ତି । ଖଣ୍ଡମାନେ ହିଁ ସଫଳ ହେଉଛନ୍ତି । ସେମାନଙ୍କର ହାତୀ ଘୋଡ଼ାକୁ ହିସାବ କରି ହେଉନାହିଁ । ବୋଇତ ବୋଇତ କାଗଜପତ୍ର ଧରି ସେମାନେ ଆମର ଏଠି ଗୁଡ଼ାଏ ମିଛ ବେପାର ଲଗାଇ ରଖିଛନ୍ତି । ବିପ୍ଳବଗୁଡ଼ିକୁ ବିଫଳ କରି ସେମାନେ ନିଜକୁ ହିଁ ସବୁ ବିଧିରେ ସଫଳ କରିବାରେ ଲାଗିପଡ଼ିଛନ୍ତି । ଏହି ରାଜାମାନଙ୍କ ସକାଶେ ସତେ ଯେପରି ଦେଶଟାଯାକ ଗୋଟି ହୋଇ ଖଟୁଛି ।

ଏହି ହାକିମମାନଙ୍କର ଆଦୌ କୌଣସି ରାଜନୀତିକ ଶିକ୍ଷା ନାହିଁ ବୋଲି ଏମାନଙ୍କ ହାତରେ ପଡ଼ି ସବୁ ବିଫଳ ହୋଇଯାଉଛି । ଯେଉଁ ରାଜନୀତିକ ଶିକ୍ଷା ଗୋଟିଏ ଦେଶର ନିୟତି ବିଷୟରେ ସେହି ଦେଶର ଜଣେ ନାଗରିକକୁ ସଚେତନ କରାଏ, ଦେଶକୁ ନିଜର ବୋଲି ଅନୁଭବ କରି ଦେଶପ୍ରତି ଅଧିକ ଦାୟିତ୍ୱଶୀଳ କରାଏ, ଆମ ହାକିମ ଓ ସାଆନ୍ତମାନେ ସେହି ଶିକ୍ଷାଠାରୁ ବହୁଦୂରରେ ଏକାବେଳେକେ ଅନ୍ୟଗୋଠ ହୋଇ ରହିଛନ୍ତି । ଦୃଶ୍ୟ ଓ ଅଦୃଶ୍ୟ ବହୁ ପ୍ରକାରେ ସ୍ୱୟଂ ବିଫଳ ହେବାରେ ଲାଗିଛନ୍ତି । ଉଦ୍ଧତ ହେଉଛନ୍ତି । ଦେଶର ଭାଗ୍ୟ ଧୋକା ଖାଇଯାଉଛି । ସଫଳ ହାକିମ ଓ ସାମନ୍ତମାନେ ଦେଶଟାକୁ ସତେଅବା ଗୋଟାଏ ଜଙ୍ଗଲ ବୋଲି ମଣି କେତେ ଖୁସିରେ ପାରିଧି କରିବାରେ ଲାଗିଛନ୍ତି ।

୫/୩/୮୯

# କ୍ଷତିକି ଭୀତି ହେଲା ପ୍ରବଳ

ଭଗବାନ ମଣିଷକୁ ଅଭୟ ଦିଅନ୍ତି ବୋଲି ପୃଥିବୀର ଅଧ୍ୟାତ୍ମଶାସ୍ତ୍ରମାନଙ୍କରେ ଲେଖା ହୋଇଛି । ଭଗବାନ ମଣିଷକୁ ଶରଣ ଦିଅନ୍ତି ବୋଲି ଭକ୍ତମାନେ କାଳେ କାଳେ କହି ଆସିଛନ୍ତି । ମାତ୍ର, ଆମର ଏହି ଯୁଗଟାରେ କେତେକ ମଣିଷ

ଭଗବାନଙ୍କଠାରୁ ମଧ୍ୟ ଅଧିକ ପ୍ରବଳ ହେଲେଣି କି କ'ଣ, ଏବେ ପୃଥିବୀରେ ଭୟ ବଢ଼ି ବଢ଼ି ଚାଲିଛି, ସତେଅବା କୌଣସି ସ୍ଥାନରେ ମଧ୍ୟ ନିର୍ଭରଯୋଗ୍ୟ ଶରଣଟିଏ ରହିନ୍ଥି ବୋଲି ଅଧିକରୁ ଅଧିକ ମଣିଷଙ୍କର ଆଉ ମୋଟେ ବିଶ୍ୱାସ ହେଉନାହିଁ ।

ପୃଥିବୀରେ ସମ୍ପତ୍ତି ବଢୁଛି, ତେଣେ ଦାରିଦ୍ର୍ୟ ମଧ୍ୟ ବଢୁଛି । ବିଦ୍ୟାଗୁଡ଼ାକ ଯେତିକି ଯେତିକି ବହୁଶାଖା ହୋଇ ବିସ୍ତାରିତ ହୋଇ ଯାଉଛି, ଏଣେ ଥୋକେ ମଣିଷଙ୍କର ମୁଣ୍ଡ ଭିତରେ ରହିଥିବା ଦୁଷ୍ଟାଟା ଅତ୍ୟନ୍ତ ନିର୍ଲଜ ଭାବରେ ବାହାରକୁ ଡ଼େଇଁପଡ଼ି ସେତିକି ଉତ୍ପାତ କରିବାକୁ ଲାଗିଲାଣି । ଅଧିକ ସାହସୀମାନେ ହାତରେ ଗୋଟାଏ ଗୋଟାଏ ଛୁରୀ ଧରି ଆମକୁ ପଛରୁ ଆସି ଭୁଷିଦେବେ ବୋଲି ଭୟ ଦେଖାଇଲେଣି । କ୍ଷମତାସୀନ ଶାସକମାନେ ଏବେ ତାଲିମପ୍ରାପ୍ତ ଗୁଣ୍ଡାଙ୍କ ପରି ଆଚରଣ କଲେଣି ଓ ସତେଅବା ସିଧା ଭଗବାନଙ୍କ ଠାରୁ ପରମିଟ କାଟି ଆସିଥିବା ପରି ଆଉ ମୋଟେ କାହାରି କଥା ଶୁଣିବାକୁ ରାଜି ହେଉନାହାନ୍ତି । ସେମାନେ ଏହି ସଂସାରରେ ମନକଲେ ସବୁ କରିଦେଇ ପାରିବେ ବୋଲି ବିଶ୍ୱାସ କଲେଣି । ନିଜ ଭିତରେ ସେମାନେ କେଉଁଠି ସତେଅବା ଗୋଟିଏ ଦୁର୍ବିନୀତ ମେଣ୍ଢାଟିଏ ହୋଇ ରହିଛନ୍ତି କେଜାଣି, ଜ୍ଞାନ ବଳରେ, ବିଜ୍ଞାନ ବଳରେ, ସମ୍ପତ୍ତି ବଳରେ ଏକାବେଳେକେ ଆମ ସମସ୍ତଙ୍କୁ ତୁଚ୍ଛା ମେଣ୍ଢା କରି ରଖିବେ ବୋଲି ହାତ ଧରାଧରି ହୋଇ ବାହାରିଲେଣି । ଆମ ପୃଥିବୀର ପଣ୍ଡିତମାନଙ୍କୁ କିଣି ନେବାର ମନସ୍ଥ କଲେଣି ।

କ୍ଷିତିକୁ ଏପରି ଅସମ୍ଭାଳ ଭାବରେ ଭୀତି ପ୍ରବଳ ହେବାରେ ଲାଗିଥିବା ବେଳେ ଆମକୁ ସମ୍ଭାଳି ଧରିବାର ଅସଲ ସମର୍ଥମାନେ ପୁଣି କେଉଁଠାରୁ ଆସିବେ ? ଅତୀତର ମହାନ ଅବତାରମାନେ ପ୍ରତାପୀମାନଙ୍କର କବଳରେ ପଡ଼ି, ଏପରି ଗୋଟାସୁଦ୍ଧା ପଥର ହୋଇ ସାରିଲେଣି ଯେ 'ସମ୍ଭବତଃ ଭବିଷ୍ୟତରେ କୌଣସି ଅବତାର ଆଉ ପୃଥିବୀପୃଷ୍ଠକୁ ଆସିବା ଲାଗି ମୋଟେ ସାହସ କରିବେ ନାହିଁ । ଆସିଲେ ହୁଏତ ଆପଣାର ପୂର୍ବ ସୂରୀମାନଙ୍କ ପରି ପେଡ଼ି ଭିତରେ ବନ୍ଦ ହୋଇ ରହିଯିବେ । ସଂପ୍ରଦାୟଗୁଡ଼ାକର ସାମିଆନା ତଳେ ରଜାଘରୁ ଅର୍ଥ ଆଣି ସଂକୀର୍ତ୍ତନ ଲାଗିଥିବ ସତ, ମାତ୍ର ଭଗବାନମାନେ ପେଡ଼ି ଭିତରେ ରହିଥିବେ, ଗଦ ସୁଂଘି ଅଚେତ ହୋଇ ରହିଥିବେ । କାଳ ଜିତି ଜିତି ଯାଉଥିବ ।

ପୃଥିବୀର କୋଟି କୋଟି ସାନ ଓ ସାଧାରଣ ମଣିଷମାନେ ହିଁ ତଥାପି ପୃଥିବୀକୁ ବଞ୍ଚାଇ ରଖିବେ । ବାହାରକୁ ସାନ ଦେଖା ଯାଉଥିଲେ ମଧ୍ୟ ଯାହା ଭିତରେ ଜୀବନ ପ୍ରତି ବିଶ୍ୱାସ ତଥାପି ବଳିଷ୍ଠ ହୋଇ ରହିଥିବ, ମିଥ୍ୟାମାନେ ଭେରେଣ୍ଡା ହୋଇ

ନାଚିବାରେ ଲାଗିଥିଲେ ମଧ୍ୟ ଯିଏ ତଥାପି ଆପଣାର ଭିତରେ ଏବଂ ବାହାରେ ସତ୍ୟର ଆହ୍ୱାନଗୁଡ଼ିକୁ ପ୍ରତ୍ୟକ୍ଷ କରି ପାରୁଥିବ, ଯିଏ ଠାକୁରମାନଙ୍କ ଠାରୁ ରୂପ, ଧନ, ଯଶଃ ଓ ଏପରିକି ମନୋରମା ଭାର୍ଯ୍ୟାଟିଏ ମଧ୍ୟ ମାଗିବା ଲାଗି ମୋଟେ ମନ ନକରି ତାଙ୍କରି ଶକ୍ତି ମାଗୁଥିବ ଓ ସ୍ୱୟଂ ସେହି ଶକ୍ତିର ବାହନ ହେବାକୁ ପ୍ରସ୍ତୁତ ଥିବ, ସେହି ଆମ କ୍ଷିତିରେ ଉପସ୍ଥିତ ଯାବତୀୟ ଭୀତିକୁ ମହୌଷଧି ହୋଇ ବାହାରି ପାରିବ । ସେହି ସାନ ମଣିଷମାନେ ହିଁ ଯୁଗେ ଯୁଗେ ଅଧିକ ସମ୍ମତ ଭାବରେ ଯୁଗବିଧାତାର କାର୍ଯ୍ୟ କରି ଆସିଛନ୍ତି । ଭୀତିର ବିରୋଧରେ ଆସନ୍ନ ବିଶ୍ୱଯୁଦ୍ଧରେ ପୁନର୍ବାର ସେହିମାନଙ୍କ ଲାଗିହିଁ ଡାକରା ଆସିବ । ସେମାନେ ବଞ୍ଚି ରହିଥାନ୍ତୁ, ବିଶ୍ୱାସର ସହିତ ବଞ୍ଚି ରହିଥାନ୍ତୁ ।

୧୨/୩/୮୯

# ଅସହାୟଙ୍କର ସହାୟ କମ୍

ଗୋଟାଏ ଗୋଟାଏ ସମାଜ ଅଛି, ଯେଉଁଥିରେ ସହାୟ ରହିଥିବା ମନୁଷ୍ୟମାନଙ୍କର ତୁଳନାରେ ସହାୟ ନଥିବା ମନୁଷ୍ୟମାନଙ୍କର ଅଧିକ ଯତ୍ନ ଓ ଅଧିକ ତତ୍ତ୍ୱ ନିଆଯାଇଥାଏ । ଏବଂ ଆଉ ଏପରି ଗୋଟାଏ ଗୋଟାଏ ସମାଜ ମଧ୍ୟ ଏହି ପୃଥିବୀରେ ରହିଛି, ଯେଉଁଥିରେ ସହାୟ ଥିବା ମଣିଷମାନେ ସହାୟ ନଥିବା ମଣିଷମାନଙ୍କୁ ଅଧିକ ଉପେକ୍ଷା ପ୍ରଦର୍ଶନ କରନ୍ତି । ଅନ୍ୟକୁ ଅସହାୟ କରି ଭଗବାନ ଯେ ସେମାନଙ୍କୁ ସହାୟସମ୍ପନ୍ନ କରି ରଖିଛନ୍ତି, ଏଥିରେ କେତେକ ମଣିଷ ଅତ୍ୟନ୍ତ ଖଳ ଭାବରେ ଗୋଟିଏ ପ୍ରକାରର ହୃଷ୍ଟତା ମଧ୍ୟ ଅନୁଭବ କରିଥାନ୍ତି ।

ସଂସାରରେ ସହାୟବାନ୍ ଅଥବା ଅସହାୟ ହେବାଟାକୁ ମଣିଷର ଭାଗ୍ୟଦ୍ୱାରା ନିର୍ଦ୍ଧାରିତ ହୋଇ ରହିଥିବା ଏକ ସ୍ଥିତି ବୋଲି ଯେଉଁଠି ସମାଜରେ ବିଶ୍ୱାସ କରାଯାଏ, ସେଠାରେ ସମର୍ଥମାନେ ପ୍ରାୟ ନିୟମତଃ ନିର୍ଦ୍ଦୟ ହୁଅନ୍ତି, କର୍ତ୍ତାମାନେ ବଧିର ଓ ଅମଙ୍ଗ ହୋଇ ରହିବାକୁ ପ୍ରାୟ ଏକ ପୌରୁଷ ବୋଲି ଭାବନ୍ତି । ଅନ୍ଧ ମଣିଷଟିକୁ ଆମ ସମାଜରେ ସମର୍ଥ ମଣିଷମାନେ ସାଧାରଣତଃ ଏତେ ଅଧିକ ପରିମାଣରେ ଗୋଟିଏ ଅନ୍ଧ ବୋଲି ଦେଖୁଥାନ୍ତି ଯେ, ତାକୁ ମଣିଷଟିଏ ବୋଲି ଦେଖିବା ଲାଗି ଆଉ ପ୍ରାୟ କୌଣସି ଫୁରସତ ରହେନାହିଁ । ଅନ୍ଧ ପିଲାଟିଏ ଆଗ ପିଲାଟିଏ, ସେକଥା ଆମର ତଥାକଥିତ ଆଖି ରହିଥିବା ଉଦ୍ଧତ କର୍ତ୍ତାମାନେ ସହଜରେ ଅନୁଭବ କରି ପାରନ୍ତି ନାହିଁ । ତେଣୁ ଯିଏ ଅସମର୍ଥ, ତାକୁ ଯଥାସମ୍ଭବ ଆହୁରି ଅଧିକ ଅସମର୍ଥ କରି ରଖିବା ଲାଗି ସମର୍ଥମାନେ କେଡ଼େ ପ୍ରଚଣ୍ଡ ହୋଇ ବାହାରି ଆସନ୍ତି । ବୋଲିବା ବାହୁଲ୍ୟ,

ସଚରାଚର ଅଧିକ ସମର୍ଥମାନେ ହିଁ ଏକ ଅପବିଧିର ବିଧାନ ଅନୁସାରେ କର୍ତ୍ତାର ଆସନ ଉପରେ ବସିଥାନ୍ତି, ତେଣୁ ଅଧିକ ଉଦ୍ଧତ ହୁଅନ୍ତି ।

ଆମ ସମାଜର ଚଳନ୍ତି ଶାସ୍ତ୍ରଗୁଡ଼ାକ ସଭ୍ୟମାନଙ୍କ ଦ୍ୱାରା ଲେଖା ହୋଇଥିଲେ ଏବଂ ସଭ୍ୟମାନେ ଆମର କର୍ତ୍ତୃତ୍ୱର ସ୍ଥାନଗୁଡ଼ିକରେ ଯାଇ ବସିଥିଲେ, ଜୀବନର ବେଭାର ଏଠି ଅନ୍ୟପ୍ରକାରେ ଚାଲୁଥାନ୍ତା । କର୍ତ୍ତାମାନଙ୍କ ପାଖରେ ବିନୟ ମଧ୍ୟ ରହିଥାନ୍ତା । ବିନୟର ବଳକୁ ଶାସନପ୍ରହାରର ଦଣ୍ଡ ଅପେକ୍ଷା ଅଧିକ ମୂଲ୍ୟ ମଧ୍ୟ ଦିଆଯାଉଥାନ୍ତା । ଉଚ୍ଚ ଆସନରୁ ଆପେ ଓହ୍ଲାଇ ଆସି ଦୁର୍ଗତ ମଣିଷର ଦୁଆରେ ଠିଆ ହୋଇ ପାରିବାକୁ ଉତ୍ତମର୍ଣ୍ଣ ଉଚ୍ଚାସୀନଙ୍କୁ ମୋଟେ ଲାଜ ଲାଗୁନଥାନ୍ତା । ଜୀବନର ସଂଘର୍ଷରେ ଅଧିକ ସମର୍ଥ କମ୍ ସମର୍ଥର ସହାୟକାରୀ ହୋଇ ରହିଥାନ୍ତା ।

ଆମ ସମାଜରେ ଆଖି ନଥାଇ ଅନ୍ଧ କମ୍ ସଂଖ୍ୟାରେ ଅଛନ୍ତି । ଆଖି ଥାଇ ଅନ୍ଧ ଅଧିକ ସଂଖ୍ୟାରେ ରହିଛନ୍ତି । କ୍ଷମତା ହିଁ ଭାରତବର୍ଷରେ ଉପେକ୍ଷାର ନର୍ମସହଚର ହୋଇ ରହିଛି । ସମର୍ଥତା ଅସମର୍ଥତାକୁ ବହୁ ପ୍ରକାରେ ବିଦ୍ରୂପ କରିଆସିଛି । ସ୍ୱାଧୀନ ଭାରତରେ ଉଦ୍ଦଣ୍ଡମାନେ ହୁଏତ ଅଧିକ ଉଦ୍ଦଣ୍ଡ ହୋଇଛନ୍ତି । ତେଣୁ ଉପେକ୍ଷାକୁ ମଧ୍ୟ ଦାଣ୍ଡକୁ ଆସି ହୁଙ୍କାର ମାରିବାକୁ ଆଉ ମୋଟେ ଲାଜ ଲାଗୁନାହିଁ । ଅସହାୟ ରାସ୍ତାକଡ଼ରେ କ୍ଷମତାପନ୍ନମାନଙ୍କର ଅନୁଗ୍ରହ ଲାଗି ଅପେକ୍ଷା କରି ରହିଛି । ରାସ୍ତାଟା ପରି ସେହି ରାସ୍ତା ଉପରେ ଚାଲି ଯାଉଥିବା ଅନ୍ୟ ମଣିଷମାନେ ଅତ୍ୟନ୍ତ ସମ୍ବେଦନାହୀନ ଭାବରେ ଚାଲି ଯାଉଛନ୍ତି । ରାଜାଙ୍କର କୃପା ହେଲେ ସିନା ସିଏ ଏହି ଅସହାୟମାନଙ୍କର ଦୁଃଖ ବୁଝିବାକୁ ଆସିବେ ।

୧୯/୩/୮୯

# ସୁଖବାସୀ ସତ୍ୟାଗ୍ରହ

ପ୍ରାୟ କେତେଟା ମାସ ତଳେ ପ୍ରଧାନମନ୍ତ୍ରୀ ଯେଉଁସବୁ ଅଞ୍ଚଳକୁ ଗସ୍ତ କରି ଆସିଥିଲେ, ଆମର ଗାଡ଼ିଟା ଆମକୁ ସେଇ ଆଡ଼କୁ ନେଇ ଯାଉଥାଏ । ଥୁଣ୍ଟା ଅରଣ୍ୟଭିତରେ ଯେଉଁଠି ସବୁ ତଥାପି ମଣିଷମାନଙ୍କରେ ବାସ ରହିଛି, ସେସବୁ ଥାନରେ ଗାଆଁଗୁଡ଼ାକ ବଡ଼ ଅଲକ୍ଷଣା ହୋଇ ଦିଶୁଥାଏ । ସମ୍ଭବତଃ ଶହେବର୍ଷ ତଳେ ଯେମିତି ଅଲକ୍ଷଣା ହୋଇ ଦିଶୁଥିଲା, ବର୍ତ୍ତମାନ ଆମ ଦେଶରେ ଏତେ ଏତେ ରାଜନୀତି ହୋଇ ସାରିବାପରେ ମଧ୍ୟ ପ୍ରାୟ ସେମିତି ଅଲକ୍ଷଣା ଦେଖାଯାଉଛି । ପ୍ରଧାନମନ୍ତ୍ରୀ ଆସିବାବେଳେ ଏସବୁ ଥାନରେ କେଡ଼େ ଗହଳ ଲାଗି ଯାଉଥିବ । ବାହାରୁ କେତେ

ହାକିମ ବାଧ୍ୟହୋଇ ପ୍ରଧାନମନ୍ତ୍ରୀଙ୍କର ତମ୍ବୁ ବୋହି ଆସିଥିବେ । ରାମଚନ୍ଦ୍ରଙ୍କୁ ସେତେବେଳେ କେତେ କୁବୁଜ ସୁନା କୁଲେଇରେ ହୀରାଫଳ ପରଷି ଦେବାକୁ ଲଣ୍ଡଭଣ୍ଡ ହୋଇ ପଡ଼ିଥିବେ ।

ଗାଡ଼ି ଆଗକୁ ଆଗକୁ ଚାଲିଥାଏ । ଗାଆଁ ପରେ ଗାଆଁ ପଛକୁ ରହି ଯାଉଥାଏ । କୋଉ କାଳରୁ ତାଳପତ୍ରରେ ଫାଟକ ସବୁ ବନା ହୋଇ ଥିଲା, ସେଗୁଡ଼ାକ କାନ୍ଧଭଙ୍ଗା ମ୍ଲେଚ୍ଛଙ୍କ ପରି ଛିଡାହୋଇ ରହିଥାନ୍ତି । ହଠାତ୍ ମୁଁ ଦେଖିବାକୁ ପାଇଲି, ଏହିପରି ଗୋଟିଏ ଶୁଖିଲା ପତ୍ରର ତୋରଣ ଉପରେ ବଡ଼ ବଡ଼ ଇଂରାଜୀ ଅକ୍ଷରରେ କ'ଣ ସବୁ ଲେଖା ହୋଇଛି । ଯାହା ପଢ଼ିଲି, ତାହାର ଅର୍ଥ ହେଉଛି ଅମୁକ ଗାଆଁର ଭୂମିହୀନ ଲୋକମାନେ ପ୍ରଧାନମନ୍ତ୍ରୀଙ୍କୁ ସ୍ୱାଗତ ଜଣାଉଛନ୍ତି : The land-less people of ..... welcome the Prime Minister- ଯୋଉଦିନ ପ୍ରଧାନମନ୍ତ୍ରୀ ସେହି ବାଟରେ ଯାନବାହନ ନେଇ ଯାଉଥିଲେ, ସେଦିନ ଗାଆଁର ଭୂମିହୀନ ଲୋକେ ଏହିପରି ଏକ ବାନା ତିଆରି କରି ଫାଟକ ଉପରେ ମାରି ଦେଇଥିଲେ ।

ଇଂରାଜୀରେ ଯେତେବେଳେ କଥାଗୁଡ଼ାକ ଲେଖା ହୋଇଛି, ବିଚରା ପ୍ରଧାନମନ୍ତ୍ରୀ ତାକୁ ନପଢ଼ି ଚାଲି ଯାଇଥାନ୍ତେ କିପରି ? ସାଙ୍ଗରେ ଥିବା ବନ୍ଧୁଙ୍କଠାରୁ ଶୁଣିଲି, ପଢ଼ିସାରି ପ୍ରଧାନମନ୍ତ୍ରୀ ଗାଡ଼ି ଅଟକାଇଲେ, ତଳକୁ ଓହ୍ଲାଇଲେ, ଲୋକମାନଙ୍କ ସହିତ କଥା ହେଲେ । ସେମାନଙ୍କ ଲାଗି ଭୂମିର ବରାଦ କରିଦେବାକୁ ସ୍ଥାନୀୟ ସରକାରୀ ବାବୁମାନଙ୍କୁ ନିର୍ଦ୍ଦେଶ ଦେଲେ । ପୁଣି ଗାଡ଼ି ଚାଲିଲା, ଆଗକୁ ଛୁଟି ଚାଲିଗଲା । ଗାଆଁର ଭୂମିହୀନମାନେ ଗୋଟାଏ କେଡ଼େ ବଡ଼ ବିଜୟ ହାସଲ କରିଥିବା ପରି ଘରକୁ ଫେରିଲେ ।

ପଶ୍ଚିମ ଓଡ଼ିଶାରେ ଭୂମିହୀନମାନଙ୍କୁ ସୁଖବାସୀ ବୋଲି କୁହାଯାଏ । 'ସୁଖବାସୀ' ଶବ୍ଦଟି ନିଶ୍ଚୟ ସୁଖରେ ରହୁଥିବା ଅଚାଷୀ ଜମିମାଲିକମାନଙ୍କ ଦ୍ୱାରା ତିଆରି ହୋଇଛି ଓ ସାନ୍ତ୍ୱନା ସ୍ୱରୂପ ଭୂମିହୀନମାନଙ୍କୁ ଦିଆଯାଇଛି । ସେହି ଯୋଉ ଗାଆଁଟିରେ ଭୂମିହୀନମାନଙ୍କ ତରଫରୁ ପ୍ରଧାନମନ୍ତ୍ରୀଙ୍କ ଲାଗି ବାନା ଉଡ଼ାଇ ଦିଆଯାଇଥିଲା, ସେହି ଗାଆଁରେ ଭୂମିମାଲିକମାନେ ମଧ୍ୟ ନିଶ୍ଚୟ ଥିବେ । ପ୍ରଧାନମନ୍ତ୍ରୀ ଆସିବା ଆଗରୁ ରଜାଘରର ଦୂତମାନେ କେତେଥର ସେହିବାଟେ ପଇଁତରା ମାରିବାକୁ ଆସିଥିବେ । ଏପରି ଗୋଟିଏ ବାନାର ପ୍ରଦର୍ଶନ କରାଯାଉ ବୋଲି ସେମାନେ କଦାପି ଚାହିଁନଥିବେ । ତଥାପି ବଡ଼ମାନଙ୍କର ଅସମ୍ମତି ସତ୍ତ୍ୱେ ସେତିକି ମଧ୍ୟ ଯେ ସମ୍ଭବ ହୋଇ ପାରିଲା,

ତାହା ଆଦୌ କମ୍‌କଥା ନୁହେଁ । ମୂକମାନଙ୍କର ବି ପାଟି ଅଛି ବୋଲି ଜଣାପଡ଼ିଗଲା ।

କ୍ରମେ ଏହିପରି ପାଟି ଖୋଲୁ । ସାଧବମାନେ ଗାଆଁ ବାଟ ଦେଇ ଯାଉଥିବା ବେଳେ ଗାଆଁବାଲା ସେମାନଙ୍କୁ ଖାଲି ସେମିତି ମୋଟେ ବାଟ ଛାଡ଼ି ନଦିଅନ୍ତୁ । ସେମାନେ ଏପରି ଫନ୍ଦିମାନ ହୁଏତ କରନ୍ତୁ, ଯାହାଦ୍ୱାରା କି ସେମାନଙ୍କ ଗାଡ଼ି ଅଲବତ ଅଟକିବ । ମଣିଷ ଇଚ୍ଛାକଲେ ଇନ୍ଦ୍ରମାନଙ୍କର ଗାଡ଼ି ଅଲବତ ଅଟକିବ ।

୨୬/୩/୮୯

# ଆମ ଗାଆଁ ସ୍କୁଲର ମାଆ ବୁଆ ନାହାନ୍ତି

ଗୋଡ଼ଫୁଲା ନଦୀର କୂଳରେ ଥିବା ଗଡିବେଡ଼ା ଗାଆଁରେ ସାହେବ ସଦଳବଳ ପହଞ୍ଚିବା ବେଳକୁ ଖରାବେଳ ହୋଇଆସିଲାଣି । ଗାଆଁମୁଣ୍ଡକୁ ଗାଆଁବାଲା ଯାହିତାହି ଫାଟକେଟିଏ କରିଦେଇଛନ୍ତି । ସାହେବ ଆସିବେ ବୋଲି ସରକାରୀ ଖବର ଆସିନଥିଲେ ମଧ୍ୟ ଏହି ଜଙ୍ଗଲ ଭିତରେ ଖବର ଆସି ପହଞ୍ଚିଯିବାକୁ କ'ଣ ବାଟର ଅଭାବ ରହିଛି ?

ସାହେବଙ୍କ ଜିପ୍ ସିଧା ଗାଆଁ ଇସ୍କୁଲରେ ଯାଇ ଅଟକିଲା । ଭଙ୍ଗାଘର ତିନିବଖରା, ସିଏ ହେଉଛି ଗାଆଁର ଇସ୍କୁଲ । ଇସ୍କୁଲରେ ସାତଟି ଶ୍ରେଣୀ, ମଝି ବଖରାଟିରେ ଜଣେ ଶିକ୍ଷକ ସେମାନଙ୍କୁ ପାଠ ପଢ଼ାଇବାର ସାଧନା କରୁଥାଆନ୍ତି । ସାତୋଟି ଶ୍ରେଣୀରେ ବାର କି ଚଉଦଟି ପିଲା । ହାଜିରା ବହିରେ ତାହାର ପ୍ରାୟ ପାଞ୍ଚଗୁଣ ପିଲାଙ୍କର ନାଆଁ ରହିଛି । ଇସ୍କୁଲରେ ସରକାରୀ ଖାତା ଅନୁସାରେ ତିନିଜଣ ଶିକ୍ଷକ ନିଯୁକ୍ତ ହୋଇଛନ୍ତି । ତିନିଜଣଯାକ ଏଠୁ ବହୁଦୂରର ବାସିନ୍ଦା । ସେମାନେ ନିଜର ଘରକଥା ବୁଝିବେ ନା ଏଠି ସ୍କୁଲରେ ପାଠ ପଢ଼ାଇବେ ? ଘରର ଭିତରଟା ମଧ୍ୟ ବାରଣ୍ଡାପରି ଆବଡ଼ା ଖାବଡ଼ା ହୋଇ ରହିଥାଏ । ପିଲାମାନେ ତିନିଟିଯାକ ବଖରାରେ ଶ୍ରେଣୀ ଅନୁସାରେ ବାଣ୍ଟିହୋଇ ବସିବା କଥା । ମାତ୍ର, ଆର ଦୁଇଟି ବଖରା ଏପରି ସନ୍ତସନ୍ତିଆ ହୋଇ ପଡ଼ିଛି ଯେ ସେଠାରେ ମଣିଷକୁ ଘଡ଼ିକ ଭିତରେ ସନ୍ନିପାତ ଧରି ପକାଇବ । ପିଲା ତ କମ୍, ତେଣୁ ତରୁଣ ଶିକ୍ଷକଜଣଙ୍କ ସେମାନଙ୍କୁ ନେଇ ଗୋଟିଏ ବଖରାରେ ବସାଇଛନ୍ତି ଓ ସେମାନଙ୍କର ବିଦ୍ୟାର୍ଜନରେ ସାହାଯ୍ୟ କରୁଛନ୍ତି ।

ଇସ୍କୁଲର ପ୍ରଧାନ ଶିକ୍ଷକ ପ୍ରାୟ ପାଞ୍ଚମାସ ହେଲା ନିଜ ଗାଆଁକୁ ଯାଇଛନ୍ତି ଯେ ଆଜିଯାଏ ଆସିନାହାନ୍ତି । ସାହେବ ରାଗିଯିବା ଅତ୍ୟନ୍ତ ସ୍ୱାଭାବିକ । ସିଏ ବିଦ୍ୟାଳୟର

ଶିକ୍ଷକ ଉପସ୍ଥାନ ଖାତା ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ସେ ବହିଟା ସ୍କୁଲରେ ନଥିଲା । ପ୍ରଧାନ ଶିକ୍ଷକ ନିଜ ଘରକୁ ଗଲାବେଳେ ଉପସ୍ଥାନ ଖାତାଟିକୁ ସାଙ୍ଗରେ ନେଇ ଯାଉଛନ୍ତି ବୋଲି ତଥ୍ୟ ପ୍ରକାଶ ପାଇଲା । ସିଏ ଯୋଉଦିନ ଫେରିବେ ଖାତା ସେଦିନ ଯାଇ ଫେରିବ । ମାତ୍ର ସିଏ କୋଉଦିନକୁ ଫେରିବେ କେଜାଣି ?

ସାହେବ ଆସିବାପରେ ଗାଆଁର କେତେ ମଣିଷ ଆସି ଇସ୍କୁଲ ବାରଣ୍ଡାରେ ଭର୍ତ୍ତି ହୋଇଗଲେଣି । ସେମାନଙ୍କ ମଧ୍ୟରୁ କେତେଜଣ ଘରଭିତରକୁ ପଶି ସାହେବଙ୍କର ଇସ୍କୁଲ ପରିଦର୍ଶନକୁ ଭାରି କୌତୂହଳ ସହିତ ଦେଖିବାରେ ଲାଗିଥାଆନ୍ତି । ସାହେବଙ୍କ ପଛରେ ଠିଆ ହୋଇଥିବା ବୁଢ଼ାଟିଏ ହଠାତ୍ ମନ୍ତବ୍ୟଟାଏ ପ୍ରକାଶ କରି କହି ପକାଇଲା, ଆଜ୍ଞା, ଆମ ଗାଆଁ ସ୍କୁଲର ମାଆବୁଆ କେହିହେଲେ ନାହାନ୍ତି । ଯୋଉ ଦେଶରେ ସରକାର ମାଆବୁଆ ହୋଇ ସବୁକିଛି କରିଦେବେ ବୋଲି ଢମ କାଢୁଛନ୍ତି, ସେଠି ଆଦୌ କୌଣସି କ୍ଷେତ୍ରରେ ଯଥାର୍ଥରେ କୌଣସି ମାଆବୁଆ ନଥିବାହିଁ ଅତି ସ୍ୱାଭାବିକ । ଶିକ୍ଷା, ସାହିତ୍ୟ, ସଂସ୍କୃତି, ରାଜନୀତି, ନୀତି, ଏଠି ସତକୁ ସତ କାହାରି ମାଆବୁଆ ନାହାନ୍ତି । କୋଉ ଜନ୍ମରୁ ତପସ୍ୟା କରିଥିଲେ ବୋଲି ଏଠି ସରକାରହିଁ ସବୁକିଛିର ମାଆବୁଆ ହୋଇ ରହିବାର ବରଲାଭ କରିଛନ୍ତି ।

ଏଥିପାଇଁ ଦାୟୀ କିଏ ହେବ ? ଆମ ମନ୍ତ୍ରୀମାନେ ତ କେବଳ ବିଧାନସଭା ପାଖରେ ଦାୟୀ ଏବଂ, ବିଧାନସଭାର ଅସଭ୍ୟମାନେ ଇତିମଧ୍ୟରେ ଭୁବନେଶ୍ୱରରେ ଯାଇ ଘର କରି ରହି ସାରିଲେଣି । ସେଠାରେ ସେମାନଙ୍କ ଲାଗି ସ୍ୱତନ୍ତ୍ରଭାବରେ ଜମି ମିଳିଛି । ଏଠି ଗାଆଁ ଛେଉଣ୍ଡ ହୋଇ ପଡ଼ିଛି ।

୯।୪।୮୯

# ଆମ ଲୋକମାନେ ଅଛନ୍ତି ତ ?

ଦେଶର ପ୍ରଧାନମନ୍ତ୍ରୀ ରାଜ୍ୟ ପରିଦର୍ଶନରେ ଆସିବେ । ସିଏ ତେଣେ ରାଜଧାନୀରେ ରହନ୍ତି । ଅକାଳେ ସକାଳେ ଏଣେତେଣେ ମୁହଁ ମାରିଦେଇ ଆସିବା ବ୍ୟତୀତ ଆମର ଏହି ଆଧୁନିକ କାଳରେ ତାଙ୍କର ଆଉ ଉପାୟାନ୍ତର ବା କ'ଣ ଅଛି ? ସିଏ ଆସିଲେ ଘଡ଼ିକ ପାଇଁ ଆସନ୍ତି । ରାଜପୁତ୍ର ପରି ଆସନ୍ତି, ରାଜପୁତ୍ରଙ୍କ ପରି ଚାଲିଯାଆନ୍ତି । ରାଜ୍ୟର ଘୋଡ଼ାମାନେ ତାଙ୍କରି ମୁଲକ ବୁଲିବା ଲାଗି ସବୁକିଛି ଖଞ୍ଜିକରି ରଖିଥାନ୍ତି । ସିଏ କ'ଣସବୁ ଦେଖିବେ, କ'ଣସବୁ ନଦେଖିବେ, କ'ଣ

ଶୁଣିବେ ବା ନଶୁଣିବେ, ସେସବୁ ଆଗରୁ କୋଠି ପକା ହେଲାପରି ଯୋଗାଡ଼ ହୋଇ ରହିଥାଏ ।

ରାଜ୍ୟରେ ଶାସନ କହିଲେ ଥାକ ଥାକ ହୋଇ ରହିଥିବା ସାନ ବଡ଼ ହାକିମମାନଙ୍କୁ ବୁଝାଏ । ହାକିମମାନେ ଦେଶରେ କାନ୍ଥପରି କାମ କରନ୍ତି । ରାଜାଙ୍କୁ ଲୋକମାନଙ୍କ ଠାରୁ ଉହ୍ଲୁଆଳ କରି ରଖିଥାନ୍ତି । କାରଣ ରାଜା ଯଦି ଲୋକମାନଙ୍କ ହାବୁଡ଼ରେ ପଡ଼ିଯିବେ, ତେବେ ରାଜ୍ୟର ପାଣି ବେଲୁନଗୁଡ଼ାକ କାଳେ ଠୋ' ଠା' ହୋଇ ଫାଟିଯିବ, ସେଥିଲାଗି ରାଜ୍ୟସ୍ତରରେ କଠୋର ସତର୍କତା ଅବଲମ୍ବନ କରାଯାଇଥାଏ । ସତକଥା ଗୁଡ଼ାକ ଦେଖିଲେ ବା ଶୁଣିଲେ ରାଜା ଯେ ସତକୁସତ କ'ଣ ଗୋଟାଏ କରି ପକାନ୍ତେ, ସେକଥା ମୋଟେ ନୁହେଁ । ତଥାପି ସତର୍କ ରହିବାକୁ ପଡ଼େ ।

ସତର୍କତା ଅବଲମ୍ବନ କରିବାର ଅମୋଘ ଉପାୟ ହେଉଛି, ସବୁଠାରେ ଆମ ଲୋକମାନେ ମହଜୁଦ ହୋଇ ରହିବେ । ଆମ ଲୋକ ଅର୍ଥାତ୍ ଆମ ପଟକୁ ସମର୍ଥନ କରି ସବୁକଥା କହିପାରୁଥିବାର ଲୋକ । ରଜା ଯାଉ ଯାଉ ମଝିରେ ମଝିରେ ଅଟକି ଯାଉଥିବେ । ତାଙ୍କରି ଗାଡ଼ି ଅଟକିଯିବା ମାତ୍ରକେ ଲୋକମାନେ ମଧ୍ୟ ତାଙ୍କୁ ଘେରି ଯାଉଥିବେ । ମାତ୍ର କେଉ ଲୋକମାନେ ? ସେଇଥିପାଇଁ ସବୁବେଳେ ଆମ ଲୋକମାନଙ୍କର ମହଜୁଦ ହୋଇ ରହିଥିବା ଆବଶ୍ୟକ ହୋଇଥାଏ । ସେହି ଆମ ଲୋକମାନେ ଛଦ୍ମବେଶରେ ରହିଥାନ୍ତି । ସାଧାରଣ ମଣିଷଙ୍କ ପରି ଦେଖାଯାଉଥାନ୍ତି । ରଜା ଅଟକି ଲୋକମାନଙ୍କୁ ପ୍ରଶ୍ନ ପଚାରି ପ୍ରକୃତ କଥା ଜାଣିବାକୁ ମନ କଲେ ଏହି ଆମର ଲୋକମାନେ ହିଁ ସେଗୁଡ଼ିକର ଉତ୍ତର ଦିଅନ୍ତି । ସବୁ ଠିକ୍ ଭାବରେ ଚାଲିଛି, ରାଜ୍ୟର ହାକିମ ଓ ତହୁଁ ବଡ଼ମାନେ ପୂରାପୂରି ରଜାଙ୍କର ବିଶ୍ୱସ୍ତ, ଅନୁରକ୍ତ ଭାବରେ ଶାସନ କରୁଛନ୍ତି ବୋଲି କହନ୍ତି । ରଙ୍ଗମଞ୍ଚରେ ରଙ୍ଗଟାକୁ ଆବିଷ୍କାର କରିବାର ଆଉ କୌଣସି କ୍ଲୁ ନଥାଏ । ରଜାଙ୍କର ବି କ୍ଲୁ' ଆସିବ କୁଆଡୁ ?

ତଳିଆ ହାକିମମାନଙ୍କର ସାହାଯ୍ୟରେ ଏହି ଆମଲୋକମାନଙ୍କୁ ଠିକ୍ କରି ରଖାଯାଇଥାଏ । ରଜା ଆସିବାର ଦିନକ ପୂର୍ବରୁ ସ୍ଥାନୀୟ ମହକୁମାମାନଙ୍କରେ ସରକାରୀ ଧର୍ମାବତାରମାନେ ହାକିମମାନଙ୍କୁ ଡକାରି ଅଣାନ୍ତି । ରଜା ଯେଉଁସବୁ ଜାଗାକୁ ଏଥର ପାଦ ପକାଇବାର କାର୍ଯ୍ୟକ୍ରମ ରହିଛି, ସେସବୁ ଥାନରେ ଏହି ଆମଲୋକମାନେ ଅଛନ୍ତି କି ନାହିଁ ବୋଲି ସମସ୍ତଙ୍କୁ ପଚରାଯାଏ । ଯୋଉ ହାକିମ ଆମଲୋକମାନଙ୍କୁ ଯୋଗାଡ଼ କରିପାରି ନଥାଏ, ତାଙ୍କୁ ନିତାନ୍ତ ଅଯୋଗ୍ୟ ବୋଲି

ବିବେଚନା କରାଯାଏ । ବିଚରା ହାକିମ ବି ତ ମଣିଷ, ତା'ର ଘରେ ବି ତା' କୁଟୁମ୍ବ ଥାଆନ୍ତି, ତାହାରି ଭାଗ୍ୟ ଉପରେ ନିର୍ଭର କରି ରହିଥାନ୍ତି । ସିଏ ସେମାନଙ୍କ ପ୍ରତି ନିଜର କର୍ତ୍ତବ୍ୟକୁ ସମ୍ଭାଳିବ ନା ନିଜର ବିବେକଟାକୁ ସମ୍ଭାଳିବ ? ବିବେକ ଆଉ ଯାହାକିଛି କରୁ ପଛକେ, ବିବେକ ଦ୍ୱାରା କଦାପି ପେଟ ପୂରେ ନାହିଁ । ତଥାପି ଯେତେବେଳେ ଜଣେ ଜଣେ ହାକିମ ବିବେକର ବୋଲ ମାନି କାର୍ଯ୍ୟ କରିଥାନ୍ତି, ଅର୍ଥାତ୍ ଅସଲ କାର୍ଯ୍ୟଟିକୁ କରିନଥାନ୍ତି, ତାକୁ ନେଇ ଦରବାରରେ ହୁଲସ୍ଥୁଲ ପଡ଼ିଯାଏ । ସିଏ ନିତାନ୍ତ ବେକୁବ ବୋଲି ସାବ୍ୟସ୍ତ ହୁଅନ୍ତି, କୋପଦୃଷ୍ଟିରେ ପଡ଼ନ୍ତି, ଶାସ୍ତି ଭୋଗ କରନ୍ତି । ଅଧିକ ଚଲାଖ ଅନ୍ୟମାନେ କରୁଣାପୂର୍ଣ୍ଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଅନାଇ ଥାଆନ୍ତି ସତ, ତଥାପି କିଛି କହି ପାରନ୍ତି ନାହିଁ । ସେମାନେ ପାରୁପର୍ଯ୍ୟନ୍ତ ଆପଣାର ବିବେକଟିକୁ ସାଧ୍ୟ କରି ରଖିଥାନ୍ତି ।

୧୬।୪।୮୯

# ରାଜ୍ୟର ତେୟାଳିଶି ଭାଗ ଲୋକ

ଓଡ଼ିଶା ନାମକ ରାଜ୍ୟରେ ଶହେରେ ତେୟାଳିଶି ଜଣ ମଣିଷ ଏବେ ମଧ୍ୟ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି ବୋଲି ସୁଧୀ ଓ ସାଧୁମାନେ ହିସାବ କରି ଖରବକାଗଜରେ ବାହାର କରିଛନ୍ତି । ଯେଉଁମାନେ ଏହି ହିସାବ ବାହାର କରିଛନ୍ତି, ସେମାନେ କେହି ଦାରିଦ୍ର୍ୟର ସୀମାରେଖା ତଳେ ନାହାନ୍ତି । ସେମାନେ ସମସ୍ତେ ଗାର ଉପରେ ଅଛନ୍ତି, ଏକାବେଳେକେ କେତେ ଉପରେ ଯାଇ ରହିଛନ୍ତି । ସୀମାରେଖାଟି ସତକୁସତ କେଉଁଠି, କେତେ ତଳେ ବା କେତେ ଉପରେ ଯାଇରହିବ, ସେକଥାଟିକୁ ଅଙ୍କକଷି ବାହାର କରିବାର ଲୋକେ ପୃଥିବୀରେ ସବୁବେଳେ ଗାର ଉପରେ, ଅନେକ ଉପରେ ଯାଇ ରହିଥାନ୍ତି । ସାଧୁମାନେ କେତେବେଳେ ହେଲେ ଗାର ତଳେ ନଥା'ନ୍ତି । ସୁଧୀମାନେ ବି ନଥାନ୍ତି ।

ଗାର ଉପର ଲୋକମାନେ ଗାର ତଳେ ରହିଥିବା ଲୋକମାନଙ୍କର ସଂଖ୍ୟା ସୁମାରି କରିବେ ଓ ତାହାକୁ ସର୍ବସମକ୍ଷକୁ ଆଣିବେ, ଆମ ଆଧୁନିକ ଯୁଗର ଇଏ ହେଉଛି ଗୋଟିଏ ନିତାନ୍ତ ଅଭଦ୍ରତା । ଗାର ଉପରେ ରହିଥିବା ମଣିଷମାନେ ଗାର ତଳକୁ ରହିଥିବା ମଣିଷମାନଙ୍କର ଗାର ତଳେ ଯାଇ ରହିଥିବାର ଦୁର୍ଦ୍ଦଶା ନିମନ୍ତେ ଯେ ଅନେକ ପରିମାଣରେ ଦାୟୀ, ଏହି ସତ୍ୟଟାକୁ ସେପରି କରିବା ଦ୍ୱାରା ସଚରାଚର କେଡ଼େ କୌଶଳର ସହିତ ଘୋଡ଼ାଇ କରି ରଖି ଦିଆଯାଏ । କେବଳ କାଗଜପତ୍ରରେ

ବାବୁମାନଙ୍କର ମୁଣ୍ଡ ଘୁରୁଥାଏ, ବେଦନାମାନେ ସକେଇବାରେ ଲାଗିଥାନ୍ତି । ତଥାପି ଉପର ଉପରେ ଥାଏ, ତଳ ତଳେ ରହିଥାଏ । ଅଭଦ୍ର ସମାଜମାନଙ୍କରେ ତାହାକୁ ମଣିଷର ଭାଗ୍ୟ ବା କର୍ମଫଳ ବୋଲି କୁହାଯାଇଥାଏ । ଉପର ଓ ତଳ ଏକାଠି ମିଶି ଏକ ଅନ୍ୟ ସମାନ ବ୍ୟବସ୍ଥାର ମସୁଧା କରି ଏଭଳି ଏକ ପ୍ରତିକାରର ପନ୍ଥା ବାହାର କରିବେ, ଯାହାଦ୍ୱାରା କି କେହି ଉପରେ ବା କେହି ତଳେ ରହିବେ ନାହିଁ, ସମସ୍ତେ ମଣିଷ ପରି ସମଭାଗୀ ହୋଇ ରହିବେ, ସେକଥା ତ ଆହୁରି ଅଧିକ ଦୂରର ବ୍ୟାପାର ବୋଲି କହିବାକୁ ପଡ଼ିବ ।

ହିସାବ ଅନୁସାରେ ଯେଉଁ ତେୟାଳିଶି ଭାଗ ଦାରିଦ୍ର୍ୟସୀମାର ତଳକୁ ଅଛନ୍ତି, ସେମାନେ ଏହି ବିଷୟରେ କଣ କହୁଛନ୍ତି ? ଏହି ଦେଶରୁ କୋଟି କୋଟି ମନୁଷ୍ୟଙ୍କୁ ଅପମାନିତ କରି ରଖିଥିବା ଦାରିଦ୍ର୍ୟ ସତକୁ ସତ ଦୂର ହେବ, ସେ କଥା କ'ଣ ସବୁଦିନ ଲାଗି ଅତି ଉପରେ ଯାଇ ବହୁଭୂଜ ହୋଇ ବସିଥିବା ଅଳପଙ୍କର ଅନୁଗ୍ରହ ଉପରେ ହିଁ ନିର୍ଭର କରୁଥିବ ? ଆମ ଦେଶର କୋଟି କୋଟି ନିରକ୍ଷରଙ୍କୁ ସାକ୍ଷର କରିବା ଲାଗି ଯେପରି ଉପରୁଥାଇ ଇନ୍ଦ୍ରମାନେ ନିରନ୍ତର ଭାଳି ହେଉଛନ୍ତି ଓ ଦେଶରେ ଯେପରି ନିରକ୍ଷରମାନଙ୍କ ସଂଖ୍ୟା ତଥାପି ବଢ଼ିବାରେ ଲାଗିଛି, ଇଏ ବି କ'ଣ ସେହିଭଳି ଏକ ବର୍ବରତା ନୁହେଁ କି ? ଆଦିବାସୀଙ୍କର ଦୁଃଖ ଦୂର ହେବ ବୋଲି ଉପରେ ଥାଇ କର୍ତ୍ତାମାନେ ମୁଠା ମୁଠା ଟଙ୍କା ବିଞ୍ଚିବାରେ ଲାଗିଛନ୍ତି, ତଥାପି ବିଚରା ଆଦିବାସୀ ବାବୁମାନଙ୍କ ଆଡ଼କୁ ହାତ ଯୋଡ଼ି ଛିଡ଼ା ହୋଇଛି । ସ୍ୱେଚ୍ଛାସେବୀ ତଥା ସରକାରୀ କୈବର୍ତ୍ତମାନେ ଜାଲ ନେଇ ଦିନରାତି ସେମାନଙ୍କର ଉପକାର କରିବେ ବୋଲି ଲାଗି ପଡ଼ିଛନ୍ତି । ତଥାପି ରାତି ପାହୁନାହିଁ ।

ଅନୁଗ୍ରହ ଦ୍ୱାରା କିଛି ବଦଳେ ନାହିଁ । ଭାରତବର୍ଷରେ ରାଜା ହିରଣ୍ଡନ୍ଦ୍ରଙ୍କଠାରୁ ଆରମ୍ଭ କରି ଆମ ଗାଆଁ ହରିସାଆନ୍ତଙ୍କ ପର୍ଯ୍ୟନ୍ତ ଯୁଗେ ଯୁଗେ କେତେ କିଏ ଅନୁଗ୍ରହ ଦେଖାଇଛନ୍ତି । ତଦ୍ୱାରା ପୁରୁଣା ଚେରଗୁଡ଼ାକ ଆଦୌ ଦୋହଲି ଯାଇ ପାରିନାହିଁ । ମଣିଷ, ବଂଚିତ ଓ ପ୍ରବଞ୍ଚିତ ମଣିଷ ତାର ସମ୍ମାନ ବିଷୟରେ ସଚେତନ ହେଲେ ଯାଇ ଯଥାର୍ଥ ପରିବର୍ତ୍ତନ ସମ୍ଭବ ହୋଇଛି । ଅନୁଗୃହୀତ ହୋଇ ରହିବାକୁ ଅପମାନ ବୋଲି ହୃଦୟଙ୍ଗମ କରିପାରିଲେ ଯାଇ ମଣିଷମାନଙ୍କ ଉପରେ ଲଦାହୋଇ ରହିଥିବା ପଥରଗୁଡ଼ାକ ଖସି ପଡ଼ିବାକୁ ଆରମ୍ଭ କରିଛି । ତେଣୁ, ଗାରତଳ ମଣିଷ ହିଁ ଗାରତଳେ ରହିଥିବାର ଦୁର୍ଭାଗ୍ୟକୁ ବଦଳାଇ ପାରିବ ।

୨୩/୪/୮୯

# ତଥା ଏବ ଭବତୁ

ସେଦିନ ମୁହଁସଞ୍ଜ ହୋଇ ଆସୁଥିବା ସମୟରେ କ୍ଳାନ୍ତ ଦୂରଯାତ୍ରୀମାନଙ୍କୁ ନେଇ ଆମର ଦ୍ରୁତଗାମୀ ବସ୍‌ଟା ଯେତେବେଳେ ସାନ ସହରଟାର ପେଣ୍ଠ ଜାଗାରେ ହଠାତ୍ ଯାଇ ଅଟକିଗଲା, ସେତେବେଳେ ମୁଁ ଖିଡ଼ିକିବାଟେ ଆଗରେ ଦେଖା ଯାଉଥିବା ପାଚେରିଟା ଆଡ଼କୁ ଅନାଇ ଦେଲି । ପାଚେରି ଉପରେ ଗାରିଆ ଗାରେଇ ହୋଇ ଢେ଼ଗାଢେ଼ଗା ଅକ୍ଷରରେ କେତେ କ'ଣ ଲେଖା ହୋଇଥାଏ । ଏକାଧିକ ଆନ୍ଦୋଳନର ଘୋଷଣା କରୁଥାଏ । ଏହିପରି ଗୋଟିଏ ଲେଖା ହଠାତ୍ ମୋର ଦୃଷ୍ଟିକୁ ଆକର୍ଷିତ କରିନେଲା । ବସ୍ ଛାଡ଼ି ଘାଟି ଚଢ଼ିଲା ପର୍ଯ୍ୟନ୍ତ ମଧ୍ୟ ମୁଁ ସେହି ଲେଖାଟି ବିଷୟରେ ଭାବୁଥିଲି । ସମ୍ଭବତଃ ଖୁସି ହୋଇ ଭାବୁଥିଲି ।

ଧଳା ପାଚେରି ଉପରେ ନାଲି ଖଡ଼ିରେ ଲେଖା ହୋଇଥିଲା, ମୁସଲମାନମାନେ ରାମ ଜନ୍ମଭୂମିରେ ନମାଜ ପଢ଼ିଲେ ହିନ୍ଦୁମାନେ ତୁମ ମସଜିଦ୍‌ରେ ହନୁମାନ ଚାଳିଶା ପଢ଼ିବେ । ପ୍ରକୃତରେ କେଡ଼େ ସୁନ୍ଦର କଥାଟିଏ ! ଉତ୍ତେଜିତ ମଣିଷମାନେ ଅନେକ ସମୟରେ ନିପଟ ବୋକା ବନି କେତେ କେତେ ମହାନ କଥାକୁ ବ୍ୟକ୍ତ କରି ଆଣିବାରେ ନିମିତ୍ତ ପରି କାର୍ଯ୍ୟ କରିଥାନ୍ତି । ଭାରତବର୍ଷରେ ପ୍ରାୟ ଆବହମାନ କାଳରୁ ଧର୍ମ ଏବଂ ସମ୍ପ୍ରଦାୟମାନେ ନିଜ ନିଜର ଗୋଟିଏ ଗୋଟିଏ ଗଡ଼ିଆ ଖୋଳି ତାହାରି ଭିତରେ ଜାଆଁଳ ହୋଇ ଖେଳି ଆସିଛନ୍ତି । ଯେଝା ଗଡ଼ିଆକୁ ଯିଏ ସ୍ୱର୍ଗକୁ ସିଧା ପାବଚ୍ଛ ବୋଲି କହିଛନ୍ତି ଓ ଗଡ଼ିଆ କମ୍ପାଇଛନ୍ତି । ସେହି ଗଡ଼ିଆଗୁଡ଼ିକୁ ନାନାକାଳରେ ବୈଦିକ, ବୈଷ୍ଣବ, ଶାକ୍ତ ଓ ଶୈବ ବୋଲି କୁହାଯାଇଛି । ପ୍ରତ୍ୟେକେ ନିଜ ଗଡ଼ିଆଟିର ପଥରରେ ପ୍ରବଳ ଭକ୍ତିରେ ଗୋଡ଼ ଘଷିଛନ୍ତି ଓ ତାହାକୁ ହିଁ ମହାଭାଗ୍ୟ ମଣିଛନ୍ତି । ଆହୁରି ଆଗକୁ ଆସି ଗଡ଼ିଆଗୁଡ଼ିକୁ ମନ୍ଦିର, ମସ୍‌ଜିଦ, ଗୀର୍ଜା ବା ଗୁରୁଦ୍ୱାରା ବୋଲି ମଧ୍ୟ କୁହାଗଲାଣି । ଗଡ଼ିଆଗୁଡ଼ିକ ଉପରେ ଅଲଗା ଅଲଗା ପତାକା ଉଡ଼ୁଛି । ଭକ୍ତମାନେ ସନ୍ତରଣ କରିବାରେ ଲାଗିଛନ୍ତି । ଏ ଗଡ଼ିଆର ଭକ୍ତ ସେ ଗଡ଼ିଆର ଭକ୍ତମାନଙ୍କୁ ଈର୍ଷା କରି ଆସିଛନ୍ତି ।

ଯଦି ଆଲ୍ଲା କେବେ ରାମଙ୍କର ଗଡ଼ିଆ ଭିତରେ ପ୍ରବେଶ କରନ୍ତେ ଏବଂ ଯଦି ହନୁମାନେ କେବେ ଆଲ୍ଲାଙ୍କ ଘରକୁ ଯାଆନ୍ତେ, ତେବେ ତାହା କେଡ଼େବଡ଼ କଥା ନହୁଅନ୍ତା ! ଭାରତବର୍ଷରେ ଯାହା କେବେ ହୋଇନାହିଁ, ତାହା ସମ୍ଭବ ହୁଅନ୍ତା । ଯଦି ପ୍ରକୃତରେ ଈଶ୍ୱର ବୋଲି କେଉଁଠାରେ ଥାଆନ୍ତେ, ତେବେ ସେତେବେଳେ ସିଏ ଜଳଜଳ ହୋଇ ଦିଶିବାକୁ ଆରମ୍ଭ କରନ୍ତେ । ସବୁ ଗଡ଼ିଆର ସବୁ ମଣିଷଙ୍କୁ

ସେତେବେଳେ ଈଶ୍ୱର ହିଁ ଦୃଷ୍ଟିଗୋଚର ହୁଅନ୍ତେ । ଏକାଳର ଉପଦ୍ରବୀମାନେ ନାକୋଇହୋଇ ପଳାଇ ଯାଆନ୍ତେ ।

ବାଟଗୁଡ଼ିକ ତାଙ୍କ ପାଖକୁ ପଡ଼ିଛି ବୋଲି ଈଶ୍ୱରଦ୍ରଷ୍ଟାମାନେ ଯୁଗେ ଯୁଗେ କହି ଆସିଛନ୍ତି । ପଙ୍କ ଭିତରେ ଧର୍ମବିହାର କରୁଥିବା ଉଗ୍ର ମଣିଷଗୁଡ଼ାକ ଏବେ ସେହି ବାଟଗୁଡ଼ାକୁ ହିଁ ଭଗବାନ ବୋଲି କହିଲେଣି । କେବଳ ସେହିମାନଙ୍କର ସାହିଲୋକ ବ୍ୟତୀତ ସେହି ବାଟରେ ଅନ୍ୟ କେହି ଚାଲି ପାରିବେ ନାହିଁ ବୋଲି ଧମକ ଦେଇ ସେମାନେ ଖଣ୍ଡା ପକାଇ ରଖିଲେଣି । ପରସ୍ପରର ବାଟ ଓଗାଳି ରଖିଛନ୍ତି । ବାଟ ଓଗାଳିବାରେ ରାଜନୀତି ମାମଲତକାର ହୋଇ ସେମାନଙ୍କୁ ସାହାଯ୍ୟ କରିବାକୁ ମାଡ଼ି ଆସୁଛି । ଏତିକିବେଳେ ବାଟଗୁଡ଼ାକୁ ଗୋଳେଇ ପୁଳେଇ ଦେଲେ ସମ୍ଭବତଃ ପୃଥିବୀର କେତେ ଉପକାର ହୁଅନ୍ତା । ସବୁ ବାଟରେ ନମାଜ ପଢ଼ିହୁଅନ୍ତା, ହନୁମାନ ଚାଳିଶା ବି ପଢ଼ି ହୁଅନ୍ତା । ଏକାବେଳେକେ ଏକାଠି ଗୋଟିଏ ଥାନରେ ବସି ନମାଜ, ହନୁମାନ ଚାଳିଶା ଓ ଆହୁରି ସବୁକିଛି ପଢ଼ି ହୁଅନ୍ତା । ଗଡ଼ିଆ ଭିତରେ ପଦ୍ମଫୁଲ ଫୁଟନ୍ତା । ସେତେବେଳେ ଖାଲି ପଦ୍ମଫୁଲ ହିଁ ଦେଖାଯାଆନ୍ତା, ଗଡ଼ିଆଗୁଡ଼ାକ ଆଦୌ ଦେଖା ଯାଆନ୍ତେ ନାହିଁ ।

କ୍ରମେ ଭାରତବର୍ଷରେ ସେହି ନୂତନ ପର୍ବଟି ଉଦ୍‌ଘାଟିତ ହୋଇ ଆସୁ । କ୍ରମେ ଅସଲ ଭକ୍ତମାନେ ବାହାରନ୍ତୁ । ସେମାନେ ଆଉ କୌଣସି ସାହି ନବାରନ୍ତୁ, ବହି ନବାରନ୍ତୁ । ଭାରତୀୟ ଜୀବନରେ ସେହି ମହାମୁହୂର୍ତ୍ତଟି ନିକଟବର୍ତ୍ତୀ ହୋଇ ଆସୁ । ନଦୀସ୍ରୋତରେ ମହାସାଗରଗାମୀ ପାଣି ଆସି ଗଡ଼ିଆଗୁଡ଼ାକ ଭିତରେ ପଶୁ ଓ ଗଡ଼ିଆଗୁଡ଼ିକୁ ଏକାକାର କରିଦେଉ ।

୩୦/୪/୮୯

# ମଇଁଷିଙ୍କର ମହାଭାଗ୍ୟ

ମଣିଷମାନେ ନାନା କାରଣରୁ ଅନେକ ସମୟରେ ମଇଁଷି ହୋଇଯିବାକୁ ଭାରି ଭଲ ପାଆନ୍ତି । ସେତେବେଳେ ସେମାନଙ୍କର ସୁଖସମୃଦ୍ଧିର ବିଧାନ କରିବା ଲାଗି ଉପରେ ସରକାର ବସିଥାନ୍ତି । ସରକାରଙ୍କ ତରଫରୁ ଯୋଗ୍ୟ ଓ ତାଲିମପ୍ରାପ୍ତ ମଇଁଷିଆଳମାନେ ରହିଥାନ୍ତି । ମଇଁଷିଶାସନର ଶାସ୍ତ୍ରରେ ସେମାନଙ୍କୁ ହାକିମ ବୋଲି କୁହାଯାଇଥାଏ ।

କୌଣସି ରାଜନୀତିକ ଦଳର ଅବର ସାଧାରଣମାନେ ବି ଅନେକ ସମୟରେ ମଣିଷ ଅପେକ୍ଷା ମଇଁଷି ହୋଇ ରହିବାକୁ ହିଁ ସତେଅବା ଅଧିକ ସୁଖ ପାଆନ୍ତି ।

ସେମାନଙ୍କର ପ୍ରଣୟସୂତ୍ରଗୁଡ଼ାକ ଏକାବେଳେକେ ସବା ଉପରେ ଯାଇ କୋଉ ଅଦୃଶ୍ୟ ଖୁଣ୍ଟ ସହିତ ବନ୍ଧାହୋଇ ରହିଥାଏ । ତାହାକୁ ଆଧୁନିକ ଚଳଣିର ଭାଷାରେ ହାଇକମାଣ୍ଡ ବୋଲି କୁହାଯାଏ । ସେମାନଙ୍କୁ ବସ୍‌ଉଠ୍ କରାଇବାକୁ ସେମାନଙ୍କ ହାତରେ ଗୋଟାଏ ଯୋଡି ଧରାଇଦେଇ ଭୂଆଁ ବୁଲାଇବାକୁ ସ୍ଥାନୀୟ ମଇଁଷିମାନେ ମଧ୍ୟ ରହିଥାନ୍ତି । ମାତ୍ର ମଣିଷ ହେବାକୁ ମନ କରିବା ମାତ୍ରକେ ବିଧି ଅଲଗା ପ୍ରକାରର ହୋଇଯାଏ । କାରଣ ସେତେବେଳେ ଯାବତୀୟ ବିଧିର ପଶ୍ଚାତ୍‌ରେ ଏକ ରାଜନୀତିକ ବିବେକ ରହିଥାଏ । ବିବେକ ଭଦ୍ର ଦେଖେ, ଭଦ୍ର ହୁଏ, ସମ୍ମାନ ଦିଏ, ସ୍ୱୀକୃତି ବି ଦିଏ । ସେତେବେଳେ ସେମାନଙ୍କର ଭିତରେ ଏକ କେନ୍ଦ୍ର ରହିଥାଏ ଏବଂ ସେହି କେନ୍ଦ୍ରକୁ ସମସ୍ତେ ଅତ୍ୟନ୍ତ ସ୍ୱାଭାବିକ ଭାବରେ ସ୍ୱୀକୃତି ମଧ୍ୟ ଦିଅନ୍ତି । ଉପରୁ ତଳଯାଏ ମଇଁଷି ହେବାକୁ ମନ କଲେ ରୀତି ଏକାବେଳେକେ ଅଲଗା ପ୍ରକାରର ହୋଇଯାଏ । କାରଣ ସେତେବେଳେ ଯାବତୀୟ ବିଧିର ପଶ୍ଚାତ୍‌ରେ ଏକ ରାଜନୀତିକ ବିବେକ ରହିଥାଏ ।

ସ୍ୱାଧୀନତା ପରେ ଆମ ଦେଶରେ କ୍ରମେ ଅଧିକରୁ ଅଧିକ ମଣିଷ ମଇଁଷି ହେବା ନିମନ୍ତେ ସତେଅବା ଅଧିକ ପସନ୍ଦ କରୁଛନ୍ତି । ତଥାକଥିତ ମଇଁଷିଆଳମାନେ ମଧ୍ୟ ତଳମାନଙ୍କ ଉପରେ ମଇଁଷିଆଳ ହୋଇ ରହିବା ସକାଶେ ଉପରମାନଙ୍କ ପାଖରେ ମଇଁଷି ହେବାକୁ ଏକାନ୍ତ ଆବଶ୍ୟକ ବୋଲି ମନେ କରୁଛନ୍ତି । ଅର୍ଥାତ୍ ନିଜ କଲିଜାର ସ୍ତରରେ ମଇଁଷିଟିଏ ହୋଇ ରହିଛନ୍ତି ଏବଂ ନେତୃତ୍ୱର କ୍ଷେତ୍ରରେ ମଇଁଷିଆଳର ପ୍ରତାପ କାଢୁଛନ୍ତି ।

ତେଣୁ ଦେଶ ପ୍ରଧାନତଃ କାଗଜପତ୍ରରେ ଚାଲିଛି । ବିଧିମାନେ ସେହି କାଗଜ ଭିତରେ ଥାକ ମରାହୋଇ ରହିଛନ୍ତି । ମାତ୍ର ମର୍ଜି ଅନୁସାରେ ହିଁ ରାଜ୍ୟ ଚାଲୁଛି । ପ୍ରଧାନତଃ ଗୋଟାଏ ଭାଗ୍ୟବାଦୀ ଦେଶ ଲାଗି ଏହାଠାରୁ ଅଧିକ ଉପାଦେୟ ବ୍ୟବସ୍ଥା ଆଉ କ'ଣ ହୋଇ ପାରନ୍ତା ? ଭାରତବର୍ଷ ସେହି ବ୍ୟବସ୍ଥାରେ ଚାଲିଛି । ତେଣୁ ସତକୁସତ ମୋଟେ ଚାଲି ପାରୁନାହିଁ । ଯାବତୀୟ ନେତୃତ୍ୱ କର୍ତ୍ତୃତ୍ୱ ପାଖରେ ମାଡ଼ ଖାଇ ଯାଉଛି । ମଇଁଷି ହୋଇ ରହିବାକୁ ହିଁ ମହାଭାଗ୍ୟ ବୋଲି ମନେ କରାଯାଉଛି ।

ମଇଁଷିମାନଙ୍କୁ ପୁନର୍ବାର ମନୁଷ୍ୟର ପାହାଚକୁ ଫେରାଇ ଆଣିବାକୁ ହେଲେ ଏଦେଶରେ କର୍ତ୍ତୃତ୍ୱ ଅପେକ୍ଷା ନେତୃତ୍ୱର ହିଁ ଅଧିକ ଲୋଡ଼ା ପଡ଼ିବା ଆବଶ୍ୟକ । ଭିତରେ ଯିଏ ଭୀରୁ ମଇଁଷିଟିଏ ହୋଇ ରହିଥାଏ, ମଉକା ପଡ଼ିବା ମାତ୍ରକେ ସେଇ ଅନ୍ୟମାନଙ୍କ ଉପରେ ମଇଁଷିଆଳ ହୋଇ ଦାଉ ସାଧି ବାହାରେ । ଅନ୍ଧାର ଭିତରେ ହିଁ ସଫଳ ହେବାର ପ୍ରତିଯୋଗିତା ଚାଲିଥାଏ । ସମସ୍ତେ ଭୃତ୍ୟ ହୋଇ ରହିଥାନ୍ତି,

ମଉକା ପଡ଼ିଲେ ହାକିମ ହୁଅନ୍ତି । ମଣିଷମାନେ କୋଉଠି ନଥାନ୍ତି, ସମ୍ମାନ ବି କାହାରି ନଥାଏ ।

୭।୫।୮୯

# ମୁଁ ଯଦି ମନ୍ତ୍ରୀ ହୋଇଥାନ୍ତି

ଆପଣାର ଦାବୀ ପୂରଣ କରାଇବା ଲାଗି ଯଦି ଅଧ୍ୟାପକମାନେ ଆନ୍ଦୋଳନ କରୁଥାନ୍ତେ ଓ ଯଦି ମୁଁ ସେମାନଙ୍କର ମନ୍ତ୍ରୀ ହୋଇଥାନ୍ତି, ତେବେ ସେମାନଙ୍କର ମନ ପୂରିବା ପର୍ଯ୍ୟନ୍ତ ମୁଁ ସେମାନଙ୍କର ଦାବୀଗୁଡ଼ିକ ପୂରଣ କରାଇ ଦିଅନ୍ତି । ସେମାନଙ୍କର ଅଣ୍ଟି ଭର୍ତ୍ତି ହେଲାଯାଏ ମୁଁ ସେମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦିଅନ୍ତି । ଦେବାରେ ମୋଟେ କୌଣସି କପଟ କରନ୍ତି ନାହିଁ । ସେମାନଙ୍କଠାରୁ କୌଣସି ଦୂରତା ରଖନ୍ତି ନାହିଁ ଅଥବା ସେମାନଙ୍କ ସହିତ ମିଛଟାରେ କୌଣସି ଖେଳ ଖେଳନ୍ତି ନାହିଁ ।

ମାତ୍ର, ସେମାନଙ୍କ ଦାବୀଗୁଡ଼ିକର ପୂରଣ ହୋଇ ସାରିବା ପରେ ସେମାନଙ୍କୁ ମୁଁ ପୁନର୍ବାର ଡାକନ୍ତି । ମୋ' ଆଡୁ ସେମାନଙ୍କର ପ୍ରତିନିଧିମାନଙ୍କୁ ଡାକି ସେମାନଙ୍କ ସହିତ ଏକାଠି ଆଲୋଚନା କରନ୍ତି, କଥାବାର୍ତ୍ତା ହୁଅନ୍ତି । ସେମାନେ ସତକୁ ସତ ଜଣେ ଜଣେ ଅଧ୍ୟାପକ ହୋଇପାରିବା ବିଷୟରେ ସେମାନଙ୍କୁ ମଙ୍ଗାଇବାର ଚେଷ୍ଟା କରନ୍ତି । ଅଧ୍ୟାପକ ସତକୁ ସତ ଅଧ୍ୟାପକଟିଏ ହୋଇଥିଲେ ଆମ ପାଠଥାନଗୁଡ଼ାକ କ'ଣ ପ୍ରକୃତରେ ଏଭଳି ଅସନା ଓ ଅଳିଆ ହୋଇ ପଡ଼ିଥାଆନ୍ତା ? ପାଠ-ଡିହରେ ବିଲୁଆ ଡ଼େଉଁଥାନ୍ତେ ଓ ଅଧ୍ୟାପକମାନେ ନିଜର ଅସଲ କାମଟିକୁ ଛାଡ଼ି ଅନ୍ୟ ନାନାବିଧ ଥାନ ଏବଂ ଅଥାନରେ ଯଜମାନି କରି ବୁଲୁଥାନ୍ତେ ? ମୂଳତଃ ବିଦ୍ୟାଳୟମାନଙ୍କରେ ଯାହାସବୁ ହେଉନାହିଁ ବୋଲି ଆମର ଯୁଗଟା କ୍ରମଶଃ ଅଧିକରୁ ଅଧିକ ମ୍ଳେଛ ହୋଇଯିବାରେ ଲାଗିଛି, ମୁଁ ସାହସର ସହିତ ସେମାନଙ୍କ ସହିତ ସେହି କଥାଟିର ଆଲୋଚନା କରନ୍ତି । ଗତ ବହୁ ବର୍ଷର ପାରମ୍ପରିକ ଅଧୋଗମନ ଫଳରେ ବହୁ ଅଧ୍ୟାପକ ଜାଣତ ବା ଅଜାଣତ ଯେଉଁ ପ୍ରକାରେ ହେଉ ପଛକେ ଇତିମଧ୍ୟରେ ପ୍ରାୟ ମ୍ଳେଛ ହୋଇ ସାରିଥିଲେ ମଧ୍ୟ ମୋ କଥା ସେମାନେ ଅବଶ୍ୟ ଶୁଣିବେ ବୋଲି ମୁଁ ବିଶ୍ୱାସ ରଖିଥାନ୍ତି । ସେମାନଙ୍କ ମଧ୍ୟରୁ ଅନ୍ତତଃ କେତେଜଣ ବୁଝିବେ ବୋଲି ମୁଁ ଦୃଢ଼ ବିଶ୍ୱାସ ରଖିଥାନ୍ତି ।

ତେବେ ସିନା ଆମ ଗୁହାଳଗୁଡ଼ାକ ପରିଷ୍କାର ହୋଇପାରନ୍ତା । ମ୍ଳେଛମାନଙ୍କର ଦରମା ବଢ଼ିଲେ ସେମାନେ କୋଉଠି ମଣିଷ ହେବା ଲାଗି ମନ

କରିଥିବାର ଦୃଷ୍ଟାନ୍ତ ପୃଥିବୀରେ ନାହିଁ । ମ୍ଳେଚ୍ଛମାନେ ମଣିଷ ହେବାଲାଗି ମନ କଲେ ଯାଇ ମଣିଷ ହୋଇପାରିବେ । ତେବେ ଶିକ୍ଷକର ଆନ୍ଦୋଳନ ଆଉ କଦାପି ତୁଚ୍ଛା ଦରମା ବଢ଼ାଇବାର ଆନ୍ଦୋଳନରେ ପରିଣତ ହୋଇ ରହିବ ନାହିଁ । ସ୍ୱାଧୀନତା ପରେ ଶିକ୍ଷାରେ ଯେଉଁସବୁ ଆନ୍ଦୋଳନ ଅବଶ୍ୟ ହେବା ଉଚିତ ଥିଲା, ସେହିସବୁ ଆନ୍ଦୋଳନ ଏହି ଦେଶରେ ସତକୁ ସତ ହେବ ଏବଂ ଅଧ୍ୟାପକମାନେ ସବାଆଗ ଏହିପରି ଏକ ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିବେ ।

କିନ୍ତୁ, ମୁଁ ନିଜେ ଠିକଣା ମନ୍ତ୍ରୀଟିଏ ହୋଇଥିଲେ ସିନା ସେକଥା କରିପାରନ୍ତି ! ଯଦି ଅକସ୍ମାତ୍ ଆସି ମୁଁ ଶିକ୍ଷା ଭିତରେ ପଶି ଯାଇଥିବି ଓ ହାଟରୁ ଦାମୁଡ଼ି କିଣିବାକୁ ଯଦି ମୋର ଅସଲ ରାଜନୀତି ବୋଲି ଗ୍ରହଣ କରିଥିବି, ତେବେ ମୁଁ ଏତେ ଏତେ କଥା ସମ୍ଭବ କରାଇବାର ଯୋଗ୍ୟ ବା ହୋଇପାରିବି କିପରି ? ଆଗ ମନ୍ତ୍ରୀଙ୍କ ଗୋଡ଼ ଖସିଲେ ଅଧ୍ୟାପକମାନଙ୍କର ମଧ୍ୟ ଗୋଡ଼ ଖସିବାକୁ ଆରମ୍ଭ କରେ ଅଥବା ଅଧ୍ୟାପକମାନେ ସତକୁ ସତ ଗୋଡ଼ ଖସାଇ ଦେବାକୁ ମନକଲେ ଭଗବାନ ସେମାନଙ୍କ ଲାଗି ଗୋଡ଼ ଖସି ଯାଉଥିବା ମନ୍ତ୍ରୀଟିଏ ଆଣି ଜୁଟାଇ ଦିଅନ୍ତି, ସେକଥା କେବଳ ବିଧାତାଙ୍କୁ ହିଁ ଗୋଚର ଥିବ । ତେଣୁ ଦରମା ବଢ଼ିଲେ ବି ଗୁହାଳର ଗୁହାଳଦଶା ମୋଟେ କଟିବନାହିଁ । ଉଭୟ ପଟ ଛକାପଂଝା ହୋଇ ଦ୍ୟୁତକ୍ରୀଡ଼ାରେ ମତ୍ତ ରହିଥିବେ ଓ ମୂର୍ଖମାନଙ୍କ ଦେଶରେ ଶିକ୍ଷାଦେବୀଙ୍କର ଦ୍ୱାହି ଦେବାରେ ଲାଗିଥିବେ । ଉଭୟେ ଉଭୟଙ୍କୁ ଚିତା କାଟିବାରେ ଲାଗିଥିବେ ଓ ଚିତା କାଟିବାକୁ ହିଁ ପରମ ବିଜୟ ବୋଲି କୁହା ଯାଉଥିବ ।

୨୧/୫/୮୯

# ସାହିତ୍ୟ ଓ ସାମ୍ମୁଖ୍ୟସମର

ସାହିତ୍ୟର ଅସଲ ସମରରେ ସାହିତ୍ୟିକମାନେ ଯେତେବେଳେ ବନ୍ଧ୍ୟା ବୋଲି ପ୍ରମାଣିତ ହୁଅନ୍ତି, ସେତେବେଳେ ସେମାନେ ସାମ୍ମୁଖ୍ୟ ଭିତରେ ଯାଇ ପଶନ୍ତି ଓ ଆମେ କଦାପି ବନ୍ଧ୍ୟା ନୋହୁ ବୋଲି ପ୍ରତିପାଦିତ କରିବା ଲାଗି ହିଁ ପରସ୍ପର ସହିତ ସମର କରନ୍ତି । ଘରର କବାଟଗୁଡ଼ାକୁ ଯେତେ ବନ୍ଦ କରି ରଖିବାର ସାବଧାନତା ଅବଲମ୍ବନ କରାଯାଉଥିଲେ ମଧ୍ୟ ତଥାପି ସମରର ସେହି ସମ୍ବାଦଗୁଡ଼ିକ ଖବରକାଗଜକୁ ଆସେ, ଭାରି ଆଚମ୍ବିତ କରାଏ । ସଂପୃକ୍ତ ସେମାନେ ସତକୁ ସତ ବନ୍ଧ୍ୟା ବୋଲି ପ୍ରମାଣିତ ହୋଇଯାନ୍ତି ।

ଅଧିକାଂଶ ସ୍ଥଳରେ ଦଶରଥମାନଙ୍କର ଅନୁଗ୍ରହରୁ ହିଁ ବନ୍ଧ୍ୟାମାନଙ୍କର ଏହି ସାଲୁଖ୍ୟ ଲାଗି ହର୍ମ୍ୟମାନ ନିର୍ମାଣ କରି ଦିଆଯାଇଥାଏ ଏବଂ ବିଚାରୀ ଶୁକ୍ଲାଭିସାରିଣୀ ବନ୍ଧ୍ୟାମାନେ ସେହି ହର୍ମ୍ୟମାନଙ୍କରେ ସଭା ମଣ୍ଡାଇ ହାତ ପତାଇ ଦଶରଥମାନଙ୍କଠାରୁ ଚରୁଭିକ୍ଷା କରୁଥାନ୍ତି। ଚରୁ ପାଇ ସତେଅବା ସଫଳା ହୋଇଗଲେ ବୋଲି ଏକ ଚମତ୍କାର ପ୍ରତ୍ୟୟ ମଧ୍ୟ ଲାଭ କରନ୍ତି । ଚରୁ ପାଇଁ ପ୍ରତିଯୋଗିତା ଆରମ୍ଭ ହୁଏ, ମଲ୍ଲୀମାଳ ହାତରେ ଧରି ମନ ତୋଷିବାରେ ପ୍ରତିଯୋଗିତା ହୁଏ । କିଏ କେତେ ପାରୁଶକୁ ଯାଇ ପାରିବ, କିଏ କେତେ ଆଖିଦୃଶିଆ ଭାବରେ କାମସ୍ପର୍ଶ ଲାଭ କରିପାରିବ, ସେଥିପାଇଁ ପ୍ରତିଯୋଗିତା ହୁଏ । ପ୍ରତିଯୋଗିତାରୁ ହିଁ କନ୍ଦଳର ଉଙ୍କୁ ହୁଏ, ସମର ହୁଏ । ବନ୍ଧ୍ୟା ହୋଇ ରହିଥିବାର, ଅସଲ ଶ୍ୟାମ ପାଖରେ ଶଠତା କରିଥିବାର ଅନ୍ତର୍ଗ୍ଲାନି ଓ ଅନ୍ତଃକ୍ରୋଧଗୁଡ଼ାକ ଏକାଠି ସିଝି ବାହାରେ ଗୋଟାସୁଦ୍ଧା ଗୁଣ୍ଡାଗିରି ଆତ୍ମପ୍ରକାଶ କରେ । ସତେଅବା ଜାଣି ଜାଣି ନୀବିବନ୍ଧଗୁଡ଼ାକୁ ଖସାଇ ଦିଆଯାଏ ଏବଂ ତା'ପରେ ଯାହାସବୁ ଘଟେ, ତାହା ଖବରକାଗଜରେ ବାହାରେ ।

ସାହିତ୍ୟିକର ଅସଲ ସମରଗୁଡ଼ିକ ପ୍ରକୃତରେ କ'ଣ ? ସାହିତ୍ୟ ଅସତ୍ୟକୁ ପଦାରେ ପକାଇ ଦେଉଥାନ୍ତା, ସତ୍ୟର ଉଦ୍‌ଘାଟନ କରୁଥାନ୍ତା । ଅନୁରାଗ-ରାଜ୍ୟରୁ ଯାବତୀୟ କପଟତା ଓ କୃତ୍ରିମତାକୁ ନିକାଲି ଦେଇ ପାରୁଥାନ୍ତା । ମନୁଷ୍ୟଜୀବନର ଗଭୀରତାର ରତ୍ନକୋଷ ଭିତରେ ସତକୁସତ ଯେଉଁ ମହିମାମୟ ଐଶ୍ୱର୍ଯ୍ୟସମ୍ଭାବନାମାନ ପ୍ରଚ୍ଛନ୍ନ ହୋଇ ରହିଛି, ସାହିତ୍ୟିକ ଆମକୁ ତାହାରି ବାରତା କହି ପାରୁଥାନ୍ତା । ମନୁଷ୍ୟସମୂହର ଅସଲ ଜୀବନାକାଙ୍‌କ୍ଷାଗୁଡ଼ିକର ଯାତ୍ରାକ୍ଷେତ୍ରରେ ପୁରୋଗାମୀ ହୋଇ ରହିଥାନ୍ତା । ଏହିପରି ସମର କରି ସାହିତ୍ୟିକ ଧନ୍ୟ ହେଉଥାନ୍ତା, ଅନ୍ନରୁ ଆନନ୍ଦ ପର୍ଯ୍ୟନ୍ତ ଆମର ଯାବତୀୟ ଅଭିଯାତ୍ରାରେ ସେ ଆମର ସର୍ବୋତ୍ତମ ବନ୍ଧୁ ହୋଇ ରହିଥାନ୍ତା ।

ମାତ୍ର, ଏହି ସମରଟିକୁ କ'ଣ ସମସ୍ତେ ପାରନ୍ତି ? ତେଣୁ, ଭଗବାନଙ୍କଠାରୁ ବର ପାଇ ମଧ୍ୟ, ହାତରେ କଲମ ଓ କାଗଜ ଧରିଥିଲେ ମଧ୍ୟ ଥୋକେ ଦୋଚାରୁଣୀ ହୁଅନ୍ତି । ସେମାନେ ସଭାକୁ ଯାଆନ୍ତି, ଆସନ ଦେଖି ଲାଳ ଗଡ଼ାନ୍ତି, ଯାବତୀୟ ସାଲୁଖ୍ୟରେ ତୁଚ୍ଛା ଆପଣାଟାକୁ ହିଁ ମୁଖ୍ୟତମ ବିଟ କରି ବସାଇବେ ବୋଲି ଲଣ୍ଡଭଣ୍ଡ ହେଉଥାନ୍ତି । ତେଣୁ ହାସ୍ୟାସ୍ପଦ ସମରମାନଙ୍କରେ ଲିପ୍ତ ହୋଇ ପଡ଼ନ୍ତି । ପୋଇଲୀଙ୍କ ପରି କଳହ କରନ୍ତି । ମଙ୍ଗରାଜଙ୍କ ସାହୀଟାକୁ ସମରମୁଖର କରି ରଖିଥାନ୍ତି । ଅସଲ ସମରଟିକୁ ପାରିଲେ ନାହିଁ ବୋଲି ପ୍ରମାଣ କରି ଦିଅନ୍ତି । ଆପଣାକୁ ଯେଡ଼େ ଛଦ୍ମରେ ଗୋଟାଏ ଗୋଟାଏ ତୁଚ୍ଛା ଯୁବା ବୋଲି ଦେଖାଇ ହେବାର ତାମସା କରୁଥିଲେ ମଧ୍ୟ

ବୁଢ଼ା ହୋଇ ସାରିଥାନ୍ତି । ଆପଣାର ଅସଲ ଉତ୍ତରାଧିକାରଗୁଡ଼ିକୁ ହରାଇ ଥାଆନ୍ତି, ତେଣୁ ଅନ୍ୟ ଉଆସଗୁଡ଼ାକରେ ଆଶ୍ରୟ ନେଇ ରହିଯିବାର ପାଞ୍ଚ କରୁଥାନ୍ତି ।

୨୮/୫/୮୯

# ଗଣେଶ, ଗରୁଡ଼, ଶୀତଳା

ଧର୍ମର ନାଆଁ ସନାତନ । ସେଥିରେ ଅନ୍ଧବିଶ୍ୱାସଗୁଡ଼ାକ ବି ପ୍ରାୟ ଅଟଳ ଭାବରେ ସନାତନ । ଚରମ ଆସ୍ତିକତାର ପଥରପୂଜା ଗୁଡ଼ାକ ଭିତରେ ଚରମ ମୁଗ୍ଧତାର ନାସ୍ତିକତା । ଭଗବାନ ସଂସାରେ ପାଳନ କରନ୍ତି । ଭଗବାନ ସଂସାରେ ମଙ୍ଗଳ କରନ୍ତି । ଯଦି ମୁଁ ସଚେତନ ଭାବରେ ସତକୁ ସତ ତାଙ୍କରି ସଂସାରେ ଜଣେ ହୋଇ ରହିଥିବି, ତେବେ ସିଏ ମୋର କେବଳ ମଙ୍ଗଳ ହିଁ କରିବେ । ଯେତେବେଳେ ଭୂମିସଂସ୍କାର ଲାଗି ସର୍ବପ୍ରଥମ ଆନ୍ଦୋଳନ ହୋଇଥାନ୍ତା, ସ୍ୱାଧୀନତାର ସଂଗ୍ରାମରେ ଲୋକମାନଙ୍କର ସହଯୋଗ ଲାଭ କରିଥିବା ସେଦିନର କଂଗ୍ରେସ ସ୍ୱାଧୀନ ଭାରତୀୟ ସରକାରଙ୍କର ଏହାହିଁ ସର୍ବପ୍ରଥମ କାର୍ଯ୍ୟ ହେବ ବୋଲି ବାରମ୍ବାର ଘୋଷଣା କରିଆସିଥିଲା । ଏବେ ମଧ୍ୟ ସେହି ଘୋଷଣା କାର୍ଯ୍ୟକାରୀ ହୋଇ ପାରିନାହିଁ । ଜମି ଚଷିବା ଲୋକର ହାତକୁ ଜମି ଗଲାନାହିଁ । ମଝିରେ ଦଳେ ବାବାଜୀ ବାହାରି ଉପରେ ଥିବା ମଣିଷଙ୍କର ହୃଦୟ ପରିବର୍ତ୍ତନ ଦ୍ୱାରା ଭୂମିସମସ୍ୟାର ସମାଧାନ ହୋଇପାରିବ ବୋଲି କେତେଦିନ ବୁଲି କଲେ । କାଳକ୍ରମେ ସେମାନେ ଯାହାର ହୃଦୟ ପରିବର୍ତ୍ତନ କରିବାକୁ ବାହାରିଥିଲେ, ସେହିମାନଙ୍କର ପଲଭିତରେ ଯାଇ ମିଶିଗଲେ । ଅଣକୃଷକମାନେ ହିଁ ପ୍ରାୟ ସବୁଯାକ କୃଷକ ଆନ୍ଦୋଳନର ତଣ୍ଟିକୁ କାମୁଡ଼ିଧରି ରହିଲେ । ଫଳରେ ସମାବେଶଗୁଡ଼ାକ ହିଁ ଅଧିକରୁ ମୁହଁ ପାଇଲା । ତଳୁ କୌଣସି ନେତୃତ୍ୱର ବିକାଶ ହେଲା ନାହିଁ । କୃଷକ-ଆନ୍ଦୋଳନକୁ ସତେଅବା ଗୋଟାଏ ଗୋଟାଏ ଗଡ଼ିଆରେ ପରିଣତ କରିଦେଇ କୁନି ଓ କୁଜି ନେତାମାନେ ତାହାରି ଭିତରେ ପହଁରିବାକୁ ଲାଗିଲେ, କେଡ଼େ ବଡ଼ ହୋଇ ଦେଖାଗଲେ ।

କୃଷକ ଆନ୍ଦୋଳନ ଯଥାର୍ଥରେ ଜମି ଚଷୁଥିବା ମଣିଷମାନଙ୍କଠାରୁ କେବେ ଆରମ୍ଭ ହେବ, ଭୂମିହୀନମାନେ ଏଠି କେବେଯାଇ ଆପଣାର ଭୂମି ଫେରି ପାଇବାକୁ ଦାବୀକରି ବାହାରିବେ? ରାଜଧାନୀର ସମାବେଶୀମାନେ ତାହାର ଉତ୍ତର ଦେଇ ପାରିବେ ନାହିଁ । ଯିଏ ବଞ୍ଚିତ, ମଣିଷର ଚେତନାରେ ସେଇ ତା' ଉପରେ ହେଉଥିବା ବଞ୍ଚନାଗୁଡ଼ିକୁ ବୁଝିଲେ ଯାଇ ଭାରତରେ ନୂଆ ନେତୃତ୍ୱ ସମ୍ଭବ ହେବ । ଅସଲ ଆନ୍ଦୋଳନ ସେତିକିବେଳେ ହେବ ।

୧୧/୬/୮୯

# ଧର୍ମ ଓ ରାଜନୀତି

ଧର୍ମ ଓ ରାଜନୀତି, - ଏହି ଦୁଇଟା ମଧ୍ୟରୁ କେଉଁଟା ପୃଥିବୀରେ ମଣିଷମାନଙ୍କୁ ଅଧିକ ପରିମାଣରେ ଅନ୍ଧ କରାଏ ? ଏକ ଅନ୍ଧବିଶ୍ୱାସ ବନି ମଣିଷମାନଙ୍କୁ ଅଧିକ ପରିମାଣରେ ଉନ୍ମତ୍ତ କରାଏ, ଉନ୍ମତ୍ତ କରାଇ ହାସ୍ୟାସ୍ପଦ ମଧ୍ୟ କରାଏ ? ମଣିଷ ଭିତରେ ଏପରି ଗୋଟିଏ ବିଚିତ୍ର ବିଷୟବୃତ୍ତି ପ୍ରଚ୍ଛନ୍ନ ହୋଇ ରହିଥାଏ, ଯାହାକି ଉପରକୁ ଆସି ମଣିଷର ବିବେକକୁ ଅକ୍ତିଆର କରି ପକାଇବାର ପ୍ରଶ୍ରୟ ପାଇଲେ ସତେଅବା ଗୋଟାଏ ଗୋଟାଏ ଅଫିମରେ ପରିଣତ ହୋଇଯାଏ । ସେହି ରୀତିରେ ଧର୍ମ ବି ଅଫିମ ହୋଇପାରେ, ରାଜନୀତି ମଧ୍ୟ ଅଫିମ ହୋଇପାରେ । ଅଫିମର ଉପଦ୍ରବ ଆରମ୍ଭ ହୋଇଗଲେ ମଣିଷର ଆଉ ହୋସ୍ ରହେ ନାହିଁ । ତା'ର ଧର୍ମରେ କୌଣସି ହୋସ୍ ରହେ ନାହିଁ କିମ୍ବା ତା'ର ରାଜନୀତିରେ ମଧ୍ୟ କୌଣସି ହୋସ୍ ରହେ ନାହିଁ ।

ପଶ୍ଚିମ ଇଉରୋପୀୟ ରାଷ୍ଟ୍ରମାନେ ଇସ୍ରାଏଲ୍‌କୁ ମୁହଁ ଦେଉଥିବାରୁ ପାଲେଷ୍ଟାଇନ୍ ସମସ୍ୟାର କୌଣସି ସମାଧାନ ହୋଇପାରୁ ନାହିଁ । ସେଥିଲାଗି ଏବେ ଇରାନ୍ ଦେଶର ବାଚସ୍ପତି ପାଲେଷ୍ଟାଇନ୍ ସଂଗ୍ରାମ ସାମ୍ମୁଖ୍ୟକୁ ସଂତ୍ରାସବାଦୀ ଉପାୟରେ ପଶ୍ଚିମ ଇଉରୋପର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ହତ୍ୟା କରିବା ଲାଗି ପରାମର୍ଶ ଦେଇଛନ୍ତି । ଧର୍ମ ନାମରେ ଓ ତଥାକଥିତ ରାଜନୀତିର କ୍ଷେତ୍ରରେ ଅଫିମ ଖାଇ ଅଣଅକ୍ତିଆର ଏବଂ ଉନ୍ମତ୍ତ ହୋଇଥିବାର ଏହା ହେଉଛି ଏକ ଅତି ଘୃଣ୍ୟ ଦୃଷ୍ଟାନ୍ତ । ଘୃଣା ଆହୁରି ଅଧିକ ଘୃଣାର ଜନନୀରୂପେ କାର୍ଯ୍ୟ କରେ । ସ୍ଥାନୀୟ ଘୃଣା ଉତ୍ସାହ ପାଇ ଏକ ବିଶ୍ୱବ୍ୟାପୀ ଘୃଣାରେ ପରିଣତ ହୁଏ । ତଥାପି ଅନେକ ଲୋକ ଥାଆନ୍ତି, ଯେଉଁମାନେ କି ଅଫିମ ଅପେକ୍ଷା ଏକ ବିବେକକୁ ହିଁ ଅଧିକ ନିର୍ଭରଯୋଗ୍ୟ ବୋଲି ଅନୁଭବ କରୁଥାନ୍ତି ଏବଂ ତେଣୁ ବିବେକରେ ଥାଆନ୍ତି । ଅଫିମ ଭିତରକୁ ଯାଆନ୍ତି ନାହିଁ ।

ଇରାନୀ ବାଚସ୍ପତିଙ୍କର ଉକ୍ତ ପରାମର୍ଶକୁ ସ୍ୱୟଂ ପାଲେଷ୍ଟାଇନ୍ ମୁକ୍ତି ସଂସ୍ଥା ଆଗ୍ରାହ୍ୟ ବୋଲି ଘୋଷଣା କରିଛି । ପୃଥିବୀର ରାଜନୀତିକ ବିବେକର ଆଧୁନିକ କ୍ଷେତ୍ରରେ ଏହା ଏକ ଉଲ୍ଲେଖଯୋଗ୍ୟ ଘଟଣା । ମୁକ୍ତି ସାମ୍ମୁଖ୍ୟ କହିଛି ଯେ, ଇଂଲଣ୍ଡ ଓ ଆମେରିକା ପ୍ରଭୃତି ପଶ୍ଚିମ ରାଷ୍ଟ୍ର ଇସ୍ରାଏଲକୁ ଅତ୍ୟଧିକ ଭାବରେ ଘଣ୍ଟ ଘୋଡ଼ାଇ ପାଲେଷ୍ଟାଇନ ମୁକ୍ତି ଆନ୍ଦୋଳନରେ ବହୁ ବାଧା ଯେ ସୃଷ୍ଟି କରୁଛନ୍ତି, ସେଥିରେ କୌଣସି ସନ୍ଦେହ ନାହିଁ ଏବଂ ସେଥିରେ ସେମାନେ ଇରାନ୍ ସରକାରଙ୍କ ସହିତ ସମ୍ପୂର୍ଣ୍ଣ ଏକମତ । କିନ୍ତୁ ତା' ବୋଲି ପଶ୍ଚିମ ରାଜ୍ୟଗୁଡ଼ିକର ନିରୀହ ବ୍ୟକ୍ତିମାନଙ୍କୁ ହତ୍ୟା କରି

ସେମାନେ ପୃଥିବୀଯାକ ଏକ ସନ୍ତ୍ରାସବାଦୀ ପରିବେଶ ସୃଷ୍ଟି କରିବେ, ଏହି ପରାମର୍ଶଟି ଲାଗି ସେମାନେ ଆଦୌ କୌଣସି ସମର୍ଥନ କଦାପି ଦେବେ ନାହିଁ । ତଦ୍ୱାରା ପୃଥିବୀରେ ତ୍ରାସ ବଢ଼ିବ, କ୍ରୋଧ ବଢ଼ିବ, ଶତ୍ରୁତାମାନେ ପ୍ରବଳତର ହେବେ । ଅର୍ଥାତ୍ ତଦ୍ୱାରା ପୃଥିବୀରେ ଯାବତୀୟ ମୁକ୍ତି ଆନ୍ଦୋଳନ ଅତ୍ୟନ୍ତ ଶୋଚନୀୟ ଭାବରେ ବାଧାପ୍ରାପ୍ତ ହେବେ । ଆମ ପୃଥିବୀର ବହୁତ ଭାଗ୍ୟ ଯେ, ଏଠି ଇରାନ୍ ସାଙ୍ଗକୁ ପାଲେଷ୍ଟାଇନ୍ ମୁକ୍ତି ସାମ୍ମୁଖ୍ୟ ମଧ୍ୟ ରହିଛି, ଅଫିମ ସାଙ୍ଗକୁ ବିବେକ ରହିଛି । ସେଇଥିପାଇଁ ବିଶ୍ୱ ବଞ୍ଚି ରହିଛି, ଭବିଷ୍ୟତ ସକାଶେ କିଛି ଭଲ ଓ କିଛି ଅନ୍ୟ ଆଶା କରି ହେଉଛି । ନହେଲେ ଏଠି ରାଜନୀତି ଗୋଟାସୁଦ୍ଧା ବିଲୁଆମାନଙ୍କ କବଳରେ ଯାଇ ପଡ଼ି ଯାଇଥାନ୍ତା, ଆଉ ଆଗକୁ କୌଣସି ବାଟ ଦିଶୁନଥାନ୍ତା ।

୧୮/୬/୮୯

# ଜିନ୍ଦାବାଦ ଜିନ୍ଦାବାଦ

ଅଣକୃଷକ ନେତୃତ୍ୱରେ ପରିଚାଳିତ ଦେଶର କୃଷକ ଆନ୍ଦୋଳନ ଜିନ୍ଦାବାଦ, ଜିନ୍ଦାବାଦ । ଅଣଛାତ୍ରଙ୍କ ନେତୃତ୍ୱରେ ପରିଚାଳିତ ଛାତ୍ରମାନଙ୍କ ମହାଆନ୍ଦୋଳନ ଜିନ୍ଦାବାଦ, ଜିନ୍ଦାବାଦ । ଅଣଅଧ୍ୟାପକମାନଙ୍କର ନେତୃତ୍ୱରେ ପରିଚାଳିତ ଅଧ୍ୟାପକମାନଙ୍କର ଆନ୍ଦୋଳନ ସତକୁ ସତ ଜିନ୍ଦାବାଦ, ଜିନ୍ଦାବାଦ । ଅଣମେହେନ୍ତରଙ୍କ ନେତୃତ୍ୱରେ ପରିଚାଳିତ ହେଉଥିବା ମେହେନ୍ତରମାନଙ୍କର ଆନ୍ଦୋଳନ ମଧ୍ୟ ଜିନ୍ଦାବାଦ, ଜିନ୍ଦାବାଦ । ଅଣଶ୍ରମିକ ନେତୃତ୍ୱ ଦ୍ୱାରା ପରିଚାଳିତ ଶ୍ରମିକମାନଙ୍କର ଆନ୍ଦୋଳନକୁ ସେହିପରି ସହସ୍ର ଥର ପାଇଁ ଜିନ୍ଦାବାଦ, ଜିନ୍ଦାବାଦ ।

ଭାରତବର୍ଷରେ ସମ୍ଭବତଃ ଏହି ମୂଳ କାରଣଟି ପାଇଁ ଆନ୍ଦୋଳନଗୁଡ଼ାକ ଫୁସ୍‌କି ଯିବାରେ ଲାଗିଛନ୍ତି । ଆନ୍ଦୋଳନ ପଛକୁ ଆନ୍ଦୋଳନ ଲାଗିରହିଛି, ଜିନ୍ଦାବାଦ ଧ୍ୱନିରେ ଧରଣୀ କମ୍ପୁଛି । ମାତ୍ର ତଥାପି ସବୁ କୁଆପାଡ଼ ପରି ଫୁସ୍‌କି ଯାଉଛି । କୋଉଠି ଧାରଣା ଦିଆ ହେଉଛି ତ ଆଉ କେଉଁଠି ଘେରାଉ ଚାଲିଛି । କୋଉଠି ପ୍ରତିବାଦ, ଶୋଭାଯାତ୍ରା ତ ଆଉ କେଉଁଠି ସିଧା ଅନଶନ । ଖବରକାଗଜରେ ସେହିସବୁ ତୋଫାନ ବିଷୟରେ କେତେ କ'ଣ ବିବରଣୀ ବାହାରୁଛି । ମାତ୍ର ରଜ୍ଜୁଗୁଡ଼ାକ ନିଜ ହାତମୁଠାରେ ରଖି କୋଉଠି କୋଉ ମିଛ ନେତୃତ୍ୱ ମୁଗୀମାନଙ୍କୁ ନଚାଇବାରେ ଲାଗିଛି କେଜାଣି, ମୁଗୀମାନେ ମୁଗୀ ହୋଇ ହିଁ ରହିଛନ୍ତି । ଚଲାଖମାନେ ସବୁଠାରେ ନେତା ହୋଇ ବସିଛନ୍ତି, ସବୁଠାରେ ଯାଇ ପଶିଯାଉଛନ୍ତି, ସବୁଠାରେ ଅସଲ ଜାଗରଣଟିକୁ ଭଣ୍ଡୁର କରି ରଖୁଛନ୍ତି ।

ନେତାମାନେ ତଳୁ ତିଆରି ହୁଅନ୍ତି, ଉପରୁ ଆସି ମୋଟେ ଲଦା ହୁଅନ୍ତି ନାହିଁ। ଭାରତବର୍ଷରେ ଏହି ଶୈଳୀଟା ଠିକ୍ ଓଲଟା ଆଡୁ କାର୍ଯ୍ୟକାରୀ ହୁଏ । ଉପରୁ ବିରାଡ଼ିମାନେ ପିଠା ବାଣ୍ଟିବାର ଢ଼ଙ୍ଗ କରି ଆସି ପହଞ୍ଚିଯାଆନ୍ତି । ମୂଷାମାନଙ୍କର ଘଲରେ ସତେଅବା ବାଘ ପରି ଦେଖାଯାଉଥାନ୍ତି । ସେମାନେ ପାଠ ପଢ଼ିଥାଆନ୍ତି । ରାଜନୀତିର ଗଳିମାନଙ୍କରେ ଦିଗ୍‌ବିଜୟୀ ବୋଲି ସାବ୍ୟସ୍ତ ହୋଇଥାନ୍ତି । ସେହିମାନେ ହିଁ ଆନ୍ଦୋଳନ ପରେ ଆନ୍ଦୋଳନର ପରିଚାଳନା କରନ୍ତି । ଆନ୍ଦୋଳନ ଚାଲିଥାଏ, ମାତ୍ର ଅସହାୟ ମଣିଷମାନେ ସର୍ବଦା ସେହିପରି ଅସହାୟ ହୋଇ ହିଁ ରହିଥାନ୍ତି । ମଣିଷ ଭିତରୁ ଯେ ଅସଲ ଶକ୍ତିର ଉଦୟ ହୁଏ ଏବଂ ଶକ୍ତିମାନ୍‌ମାନେ ସଂଘ ଗଢ଼ିଲେ ଯେ ସେଥିରୁ ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ, ନେତାମାନେ ସେମାନଙ୍କୁ କେବେହେଲେ ସେହି କଥାଟି କହନ୍ତି ନାହିଁ । ସେମାନେ ଆପଣାକୁ ସର୍ବଦା ଅପରିହାର୍ଯ୍ୟ କରି ରଖିଥାନ୍ତି । ମନଇଚ୍ଛା ଅସାଧୁ ହୁଅନ୍ତି । ନେତାମାନଙ୍କର ସ୍ୱେଚ୍ଛାଚାର ବୃଦ୍ଧି ପାଉଥିବା ସଙ୍ଗେ ସଙ୍ଗେ ଆନ୍ଦୋଳନ ମଧ୍ୟ ଭାଗ ଭାଗ ହୋଇ ଯାଉଥାଏ । ଗେଧମାନଙ୍କର ସଂଖ୍ୟା ଅନୁସାରେ ଦଳ ଓ ଦଳର ଆନ୍ଦୋଳନ ମଧ୍ୟ ସେତିକି ଭାଗରେ ବିଭକ୍ତ ହୋଇଥାଏ । ଶ୍ରମିକ ଶ୍ରମିକଙ୍କ ସହିତ ଲଢ଼ନ୍ତି, ଛାତ୍ର ଛାତ୍ରଙ୍କ ସହିତ ଲଢ଼ନ୍ତି, କୃଷକ କୃଷକ ସହିତ ଲଢ଼ନ୍ତି । ଅନ୍ୟମାନେ ମଜା ଦେଖୁଥାନ୍ତି ।

ନେତାମାନେ କେବଳ ନିମିତ୍ତ ହେଉଥାନ୍ତେ । ସେମାନେ ବାହାରେ ହିଁ ରହିଥାନ୍ତେ । ସତକୁସତ ଯେପରି ଭିତରୁ ହିଁ ଏକ ସଚେତନ ନେତୃତ୍ୱ ଗଠିତ ହୋଇ ଆସିବ, ସେଥିଲାଗି ବାଟ ଛାଡ଼ି ଦେଉଥାନ୍ତେ । ମାତ୍ର, ତାହା ହେଉଛି ଏକ ଅନ୍ୟ ରାଜନୀତିକ ବିବେକର କଥା । ଏକାଧିକ କାରଣରୁ ଭାରତବର୍ଷରେ ସେହି ବିବେକଟିକୁ ଆମ ସାମୂହିକ ସକଳ ଉଦ୍ୟମ ଭିତରୁ ବାସନ୍ଦ କରି ରଖାଯାଇଛି । ରାଜନୀତି ପ୍ରବଳ ହୋଇଛି ସତ, ମାତ୍ର ରାଜନୀତିକ ଚେତନା କୋଉଠି ହେଲେ ନାହିଁ। ଉପରେ ନାହିଁ କି ତଳେ ନାହିଁ। ରାଜନୀତିକ ନେତୃତ୍ୱସ୍ଥାନ ଗୁଡ଼ିକ ଅକାମୀମାନଙ୍କର କର୍ମସଂସ୍ଥାନରେ ପରିଣତ ହୋଇଛି । ଏମାନେ ଆମକୁ ଅସଲ ଆନ୍ଦୋଳନଗୁଡ଼ିକର କଥା ମୋଟେ କହିବେ ନାହିଁ । ଏମାନେ ଆମକୁ ସଦାନିର୍ଭରଶୀଳ କରି ରଖିଥିବେ, ଆମ ଶକ୍ତିହୀନତାରୁ ଫାଇଦା ଉଠାଉଥିବେ ।

୨୫/୬/୮୯

# ଏକତା ମହୋତ୍ସବ

ମନୁଷ୍ୟ-ସମାଜରେ ଅସଲ ଏକତା ଆସନ୍ତା, ଯଦି ମନୁଷ୍ୟ ମାତ୍ରକେ ସମସ୍ତେ ପେଟପୂରା ଖାଇବାକୁ ପାଆନ୍ତେ । ଅର୍ଥାତ୍, ସମସ୍ତେ କାମ ପାଆନ୍ତେ, ସମସ୍ତଙ୍କର

ନିଜର ଘର ଥାଆନ୍ତା, ପିଲା ମାତ୍ରକେ ସମସ୍ତେ ପାଠ ପଢ଼ନ୍ତେ ଓ ସର୍ବୋପରି, ସବୁ ମଣିଷଙ୍କୁ ଯଥାର୍ଥ ମଣିଷର ସମ୍ମାନ ଓ ସ୍ୱୀକୃତି ବି ପ୍ରାପ୍ତ ହେଉଥାନ୍ତା । ମାତ୍ର, ଆମ ପୃଥିବୀରେ ଏଭଳି ମଣିଷ ଅଛନ୍ତି, ଆମ ଯୁଗରେ ମଧ୍ୟ ଅଛନ୍ତି, ଯେଉଁମାନେ କି ସେହି ଯଥାର୍ଥ ଏକତାକୁ ଆଦୌ ମନ କରନ୍ତି ନାହିଁ । ସେମାନେ ସେହି ଏକତାକୁ ପ୍ରକୃତରେ ଭୟ କରନ୍ତି । ସେହି ଏକତାର ପ୍ରତିଷ୍ଠା ହୋଇଗଲେ ବିଚରା ଏମାନଙ୍କର ଖଟୁଲିଗୁଡ଼ାକ ହୁଏତ ଏକାବେଳେକେ ଓଲଟି ପଡ଼ିବ ବୋଲି ଏମାନେ ଭୟ କରୁଥାନ୍ତି ।

ତେଣୁ, ପ୍ରସଙ୍ଗ ବଦଳାଇ ଅର୍ଥାତ୍ ଅସଲ ଓ ସବାଆଗ ପ୍ରସଙ୍ଗଟିକୁ ଭୁରୁଡ଼ାଇ ଅସଲ ଏକତାକୁ ମୋଟେ ମନ ନକରୁଥିବା ଭୟାଳୁ ମଣିଷମାନେ ତଥାକଥିତ ଏକତା ମହୋତ୍ସବଗୁଡ଼ିକୁ ମନ କରନ୍ତି । ସେମାନେ ଧର୍ମକୁ ନେଇ, ଭେକକୁ ନେଇ, ରାଜନୀତିକ ଅଥବା ଅନ୍ୟ କୌଣସି ଉପରଠାଉରିଆ ବାଦ କିମ୍ବା ସଂପ୍ରଦାୟକୁ ନେଇ ଏକତାର କଥା କହନ୍ତି ଏବଂ ପାଟ ପିନ୍ଧି ମହୋତ୍ସବ କରନ୍ତି । ଅସଲ ଭୋକଗୁଡ଼ାକୁ ଭୁଲାଇ ରଖିବା ନିମନ୍ତେ ସେମାନେ ଉତ୍ସବପାଳନର ଡାକରା ଦିଅନ୍ତି । ଅସଲ ମଣିଷ ଆହ୍ୱାନଗୁଡ଼ିକର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୁଏ, ଏକଜୁଟ ହୁଏ । ମଣିଷଙ୍କ ମଧ୍ୟରେ ଥିବା ସିଆଣିଆ ଶୂକରମାନେ ହିଁ ସାହୀଦାଣ୍ଡରେ ଠାକୁର ବାହାର କରିବାରେ କେଡ଼େ ବ୍ୟସ୍ତ ହୋଇ ରହିଥାନ୍ତି । ଘିଡ଼ିଘିଡ଼ି ହୋଇ ରଥଗୁଡ଼ାକ ଟଣା ହେବାରେ ଲାଗିଥାଏ । ସହରର ଭଙ୍ଗା କାନ୍ଥଗୁଡ଼ାକ ନାଲି ଖଡ଼ିରେ ଲେଖା ହୋଇଥିବା ଆବୁରୁ ଜାବୁରୁ ବହୁ ଅସଣ୍ଢା ବାକ୍ୟରେ କଦାକାର ହେବାରେ ଲାଗିଥାଏ ।

ଏକତା ପକ୍ଷରେ ନରହି, ଅର୍ଥାତ୍ ଆପଣା ଭାଗ୍ୟକୁ ଏଠି ସବୁ ମଣିଷଙ୍କର ଭାଗ୍ୟ ସହିତ ସାମିଲ ନକରି ଆମେ ଯେଉଁମାନେ ଏକତାର ମହୋତ୍ସବମାନ ପାଳନ କରୁଛୁ ଓ ଦେଶରେ ବହୁ ଅକାରଣ ଉପଦ୍ରବର କାରଣ ହେଉଛୁ, ସେମାନଙ୍କର ପେଟ କେବେ ହେଲେ ଅପୂରା ରହେ ନାହିଁ । ଅନ୍ୟ ଅନେକଙ୍କୁ ସେମାନଙ୍କର ସର୍ବପ୍ରଥମ ପ୍ରାପ୍ୟଗୁଡ଼ିକରୁ ବଞ୍ଚିତ କରି ସେମାନେ ନିଜର ପେଟଗୁଡ଼ିକୁ ଆଠଗୁଣ ଅଧିକ ଭର୍ତ୍ତି କରି ରହିଥାନ୍ତି । ଦେଶର ସାଧୁମାନେ, ବାବାଜୀମାନେ ସଚରାଚର ସେହିମାନଙ୍କର ପକ୍ଷରେ ରହିଥାନ୍ତି । ବହୁ ପାଶବିକ ଉପେକ୍ଷା ଓ ଉଦାସୀନତାକୁ ଧାର୍ମିକତା ବୋଲି କୁହାଯାଉଥାଏ । ଏବଂ, ପାଟପିନ୍ଧା ପାଷଣ୍ଡମାନଙ୍କୁ ମଞ୍ଚାସୀନ କରାଇ ଉତ୍ସବ ଲାଗିରହିଥାଏ । ମଣିଷକୁ ଅନ୍ୟମନସ୍କ କରିବା ଲାଗି ଅମଣିଷମାନେ ଯୁଗ ଯୁଗ ଧରି ଏହିଭଳି ଫନ୍ଦିମାନ କରି ଆସିଛନ୍ତି, ଏବେ ମଧ୍ୟ କରୁଛନ୍ତି । ଅଳପ ମଣିଷଙ୍କର ଦାଣ୍ଡଦୁଆରେ ଅଧିକ ମଣିଷ ହାତ ପତାଇ ରହିଛନ୍ତି । ବାବୁମାନଙ୍କର ଅନୁଗ୍ରହ ଉପରେ

ନେତାମାନେ ତଳୁ ତିଆରି ହୁଅନ୍ତି, ଉପରୁ ଆସି ମୋଟେ ଲଦା ହୁଅନ୍ତି ନାହିଁ। ଭାରତବର୍ଷରେ ଏହି ଶୈଳୀଟା ଠିକ୍ ଓଲଟା ଆଡୁ କାର୍ଯ୍ୟକାରୀ ହୁଏ । ଉପରୁ ବିରାଡ଼ିମାନେ ପିଠା ବାଣ୍ଟିବାର ଢ଼ଙ୍ଗ କରି ଆସି ପହଞ୍ଚିଯାଆନ୍ତି । ମୂଷାମାନଙ୍କର ପଲରେ ସେତେଥିବା ବାଘ ପରି ଦେଖାଯାଉଥାନ୍ତି । ସେମାନେ ପାଠ ପଢ଼ିଥାଆନ୍ତି । ରାଜନୀତିର ଗଳିମାନଙ୍କରେ ଦିଗ୍‌ବିଜୟୀ ବୋଲି ସାବ୍ୟସ୍ତ ହୋଇଥାନ୍ତି । ସେହିମାନେ ହିଁ ଆନ୍ଦୋଳନ ପରେ ଆନ୍ଦୋଳନର ପରିଚାଳନା କରନ୍ତି । ଆନ୍ଦୋଳନ ଚାଲିଥାଏ, ମାତ୍ର ଅସହାୟ ମଣିଷମାନେ ସର୍ବଦା ସେହିପରି ଅସହାୟ ହୋଇ ହିଁ ରହିଥାନ୍ତି । ମଣିଷ ଭିତରୁ ଯେ ଅସଲ ଶକ୍ତିର ଉଦୟ ହୁଏ ଏବଂ ଶକ୍ତିମାନ୍‌ମାନେ ସଂଘ ଗଢ଼ିଲେ ଯେ ସେଥିରୁ ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ, ନେତାମାନେ ସେମାନଙ୍କୁ କେବେହେଲେ ସେହି କଥାଟି କହନ୍ତି ନାହିଁ । ସେମାନେ ଆପଣାକୁ ସର୍ବଦା ଅପରିହାର୍ଯ୍ୟ କରି ରଖିଥାନ୍ତି । ମନଇଚ୍ଛା ଅସାଧୁ ହୁଅନ୍ତି । ନେତାମାନଙ୍କର ସ୍ୱେଚ୍ଛାଚାର ବୃଦ୍ଧି ପାଉଥିବା ସଙ୍ଗେ ସଙ୍ଗେ ଆନ୍ଦୋଳନ ମଧ୍ୟ ଭାଗ ଭାଗ ହୋଇ ଯାଉଥାଏ । ଗେଧମାନଙ୍କର ସଂଖ୍ୟା ଅନୁସାରେ ଦଳ ଓ ଦଳର ଆନ୍ଦୋଳନ ମଧ୍ୟ ସେତିକି ଭାଗରେ ବିଭକ୍ତ ହୋଇଥାଏ । ଶ୍ରମିକ ଶ୍ରମିକଙ୍କ ସହିତ ଲଢ଼ନ୍ତି, ଛାତ୍ର ଛାତ୍ରଙ୍କ ସହିତ ଲଢ଼ନ୍ତି, କୃଷକ କୃଷକ ସହିତ ଲଢ଼ନ୍ତି । ଅନ୍ୟମାନେ ମଜା ଦେଖୁଥାନ୍ତି ।

ନେତାମାନେ କେବଳ ନିମିତ୍ତ ହେଉଥାନ୍ତେ । ସେମାନେ ବାହାରେ ହିଁ ରହିଥାନ୍ତେ । ସତକୁସତ ଯେପରି ଭିତରୁ ହିଁ ଏକ ସଚେତନ ନେତୃତ୍ୱ ଗଠିତ ହୋଇ ଆସିବ, ସେଥିଲାଗି ବାଟ ଛାଡ଼ି ଦେଉଥାନ୍ତେ । ମାତ୍ର, ତାହା ହେଉଛି ଏକ ଅନ୍ୟ ରାଜନୀତିକ ବିବେକର କଥା । ଏକାଧିକ କାରଣରୁ ଭାରତବର୍ଷରେ ସେହି ବିବେକଟିକୁ ଆମ ସାମୂହିକ ସକଳ ଉଦ୍ୟମ ଭିତରୁ ବାସନ୍ଦ କରି ରଖାଯାଇଛି । ରାଜନୀତି ପ୍ରବଳ ହୋଇଛି ସତ, ମାତ୍ର ରାଜନୀତିକ ଚେତନା କୋଉଠି ହେଲେ ନାହିଁ। ଉପରେ ନାହିଁ କି ତଳେ ନାହିଁ । ରାଜନୀତିକ ନେତୃତ୍ୱସ୍ଥାନ ଗୁଡ଼ିକ ଅକାମୀମାନଙ୍କର କର୍ମସଂସ୍ଥାନରେ ପରିଣତ ହୋଇଛି । ଏମାନେ ଆମକୁ ଅସଲ ଆନ୍ଦୋଳନଗୁଡ଼ିକର କଥା ମୋଟେ କହିବେ ନାହିଁ । ଏମାନେ ଆମକୁ ସଦାନିର୍ଭରଶୀଳ କରି ରଖିଥିବେ, ଆମ ଶକ୍ତିହୀନତାରୁ ଫାଇଦା ଉଠାଉଥିବେ ।

୨୫/୬/୮୯

# ଏକତା ମହୋତ୍ସବ

ମନୁଷ୍ୟ-ସମାଜରେ ଅସଲ ଏକତା ଆସନ୍ତା, ଯଦି ମନୁଷ୍ୟ ମାତ୍ରକେ ସମସ୍ତେ ପେଟପୂରା ଖାଇବାକୁ ପାଆନ୍ତେ । ଅର୍ଥାତ୍, ସମସ୍ତେ କାମ ପାଆନ୍ତେ, ସମସ୍ତଙ୍କର

ନିଜର ଘର ଥାଆନ୍ତା, ପିଲା ମାତ୍ରକେ ସମସ୍ତେ ପାଠ ପଢ଼ନ୍ତେ ଓ ସର୍ବୋପରି, ସବୁ ମଣିଷଙ୍କୁ ଯଥାର୍ଥ ମଣିଷର ସମ୍ମାନ ଓ ସ୍ୱୀକୃତି ବି ପ୍ରାପ୍ତ ହେଉଥାନ୍ତା । ମାତ୍ର, ଆମ ପୃଥିବୀରେ ଏଭଳି ମଣିଷ ଅଛନ୍ତି, ଆମ ଯୁଗରେ ମଧ୍ୟ ଅଛନ୍ତି, ଯେଉଁମାନେ କି ସେହି ଯଥାର୍ଥ ଏକତାକୁ ଆଦୌ ମନ କରନ୍ତି ନାହିଁ । ସେମାନେ ସେହି ଏକତାକୁ ପ୍ରକୃତରେ ଭୟ କରନ୍ତି । ସେହି ଏକତାର ପ୍ରତିଷ୍ଠା ହୋଇଗଲେ ବିଚରା ଏମାନଙ୍କର ଖଟୁଲିଗୁଡ଼ାକ ହୁଏତ ଏକାବେଳେକେ ଓଲଟି ପଡ଼ିବ ବୋଲି ଏମାନେ ଭୟ କରୁଥାନ୍ତି ।

ତେଣୁ, ପ୍ରସଙ୍ଗ ବଦଳାଇ ଅର୍ଥାତ୍ ଅସଲ ଓ ସବାଆଗ ପ୍ରସଙ୍ଗଟିକୁ ଭୁରୁଡ଼ାଇ ଅସଲ ଏକତାକୁ ମୋଟେ ମନ ନକରୁଥିବା ଭୟାଳୁ ମଣିଷମାନେ ତଥାକଥିତ ଏକତା ମହୋତ୍ସବଗୁଡ଼ିକୁ ମନ କରନ୍ତି । ସେମାନେ ଧର୍ମକୁ ନେଇ, ଭେକକୁ ନେଇ, ରାଜନୀତିକ ଅଥବା ଅନ୍ୟ କୌଣସି ଉପରଠାଉରିଆ ବାଦ କିମ୍ବା ସଂପ୍ରଦାୟକୁ ନେଇ ଏକତାର କଥା କହନ୍ତି ଏବଂ ପାଟ ପିନ୍ଧି ମହୋତ୍ସବ କରନ୍ତି । ଅସଲ ଭୋକଗୁଡ଼ାକୁ ଭୁଲାଇ ରଖିବା ନିମନ୍ତେ ସେମାନେ ଉତ୍ସବପାଳନର ଡାକରା ଦିଅନ୍ତି । ଅସଲ ମଣିଷ ଆହ୍ୱାନଗୁଡ଼ିକର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୁଏ, ଏକଜୁଟ ହୁଏ । ମଣିଷଙ୍କ ମଧ୍ୟରେ ଥିବା ସିଆଣିଆ ଶୂକରମାନେ ହିଁ ସାହୀଦାଣ୍ଡରେ ଠାକୁର ବାହାର କରିବାରେ କେଡ଼େ ବ୍ୟସ୍ତ ହୋଇ ରହିଥାନ୍ତି । ଘିଡ଼ିଘିଡ଼ି ହୋଇ ରଥଗୁଡ଼ାକ ଟଣା ହେବାରେ ଲାଗିଥାଏ । ସହରର ଭଙ୍ଗା କାନ୍ଥଗୁଡ଼ାକ ନାଲି ଖଡ଼ିରେ ଲେଖା ହୋଇଥିବା ଆବୁରୁ ଜାବୁରୁ ବହୁ ଅସଣ୍ଢ଼ା ବାକ୍ୟରେ କଦାକାର ହେବାରେ ଲାଗିଥାଏ ।

ଏକତା ପକ୍ଷରେ ନରହି, ଅର୍ଥାତ୍ ଆପଣା ଭାଗ୍ୟକୁ ଏଠି ସବୁ ମଣିଷଙ୍କର ଭାଗ୍ୟ ସହିତ ସାମିଲ ନକରି ଆମେ ଯେଉଁମାନେ ଏକତାର ମହୋତ୍ସବମାନ ପାଳନ କରୁଛୁ ଓ ଦେଶରେ ବହୁ ଅକାରଣ ଉପଦ୍ରବର କାରଣ ହେଉଛୁ, ସେମାନଙ୍କର ପେଟ କେବେ ହେଲେ ଅପୂରା ରହେ ନାହିଁ । ଅନ୍ୟ ଅନେକଙ୍କୁ ସେମାନଙ୍କର ସର୍ବପ୍ରଥମ ପ୍ରାପ୍ୟଗୁଡ଼ିକରୁ ବଞ୍ଚିତ କରି ସେମାନେ ନିଜର ପେଟଗୁଡ଼ିକୁ ଆଠଗୁଣ ଅଧିକ ଭର୍ତ୍ତି କରି ରହିଥାନ୍ତି । ଦେଶର ସାଧୁମାନେ, ବାବାଜୀମାନେ ସଚରାଚର ସେହିମାନଙ୍କର ପକ୍ଷରେ ରହିଥାନ୍ତି । ବହୁ ପାଶବିକ ଉପେକ୍ଷା ଓ ଉଦାସୀନତାକୁ ଧାର୍ମିକତା ବୋଲି କୁହାଯାଉଥାଏ । ଏବଂ, ପାଟପିନ୍ଧା ପାଷଣ୍ଡମାନଙ୍କୁ ମଞ୍ଚାସୀନ କରାଇ ଉତ୍ସବ ଲାଗିରହିଥାଏ । ମଣିଷକୁ ଅନ୍ୟମନସ୍କ କରିବା ଲାଗି ଅମଣିଷମାନେ ଯୁଗ ଯୁଗ ଧରି ଏହିଭଳି ଫନ୍ଦିମାନ କରି ଆସିଛନ୍ତି, ଏବେ ମଧ୍ୟ କରୁଛନ୍ତି । ଅଳପ ମଣିଷଙ୍କର ଦାଣ୍ଡଦୁଆରେ ଅଧିକ ମଣିଷ ହାତ ପତାଇ ରହିଛନ୍ତି । ବାବୁମାନଙ୍କର ଅନୁଗ୍ରହ ଉପରେ

ବଡ଼ ଅପମାନଜନକ ଭାବରେ ନିର୍ଭରଶୀଳ ହୋଇ ରହିଛନ୍ତି । ଦୟା କରି ଦୂରରେ ରହିବାକୁ ଅସଲ ସଦ୍‌ଗୁଣ ରୂପେ ପ୍ରଚାର କରାଯାଉଛି । ଏକତା ସୁଦୂରପରାହତ ହୋଇ ରହିଛି । ଏକତାର ପ୍ରତିଷ୍ଠା କରିବାରେ ଧର୍ମ ଓ ସେହିପରି ଆଉ ଯାବତୀୟ ସାଧନ ବଡ଼ ଅସମର୍ଥ ହୋଇ ରହିଛନ୍ତି ।

ଯଦି ତୁମେ ଏକତା ଚାହୁଁଛ, ତେବେ ଉତ୍ସବ ବନ୍ଦ କର । ସାମିଲ ହୁଅ । ସାଲିଶ କରିବାକୁ ନାସ୍ତି କରିଦିଅ । ବାଟ ଚାଲିବାକୁ ପ୍ରସ୍ତୁତ ହୁଅ । ପୁରୁଣା ଭାଙ୍ଗି ନୂଆଟିକୁ ଗଢ଼ିବା ଲାଗି ସଂକଳ୍ପ କର । ଅଭିମାନ ଭାଙ୍ଗିଦିଅ, ଦମ୍ଭ ଛାଡ଼, ନମ୍ର ହୁଅ, – ଅନୁରାଗୀ ହୋଇ ଭିତରକୁ ଆସ ।

୨/୭/୮୯

# ଜଗନ୍ନାଥଙ୍କର ଜମି

ଜଗନ୍ନାଥ ଅର୍ଥାତ୍ ଜଗତଯାକର ନାଥ । ଜଗତରେ କେବଳ ହିନ୍ଦୁ ନାହାନ୍ତି । ଅନ୍ୟମାନେ ବି ଅଛନ୍ତି । ଜଗନ୍ନାଥଙ୍କୁ ନିଜର ଦେବତା କରି ରଖିଥିବା ହିନ୍ଦୁମାନେ ଯଦି ସତକୁ ସତ ତାଙ୍କୁ ଜଗତଯାକର ଦେବତା ବୋଲି ସ୍ୱୀକାର କରୁଥାନ୍ତେ, ତେବେ ସେହି ସ୍ୱୀକାରଟିର ମାଧ୍ୟମରେ ହିଁ ନିଜ ଜୀବନରେ ସେମାନେ କେତେ ନା କେତେ ଆଧାତ୍ମିକ ପାହାଚକୁ ଉଠିଯାଇ ପାରୁଥାନ୍ତେ । ଜଗନ୍ନାଥଙ୍କୁ ଏଠି ଆପଣାର ଡିହଟି ଉପରେ ବାଡ଼ ଦେଇ କିଳି ରଖିଥିବା ଓଡ଼ିଶାରେ ତାହା ସମ୍ଭବ ହୋଇ ପାରିନାହିଁ ।

ଖାସ୍ କୌଣସି ମନ୍ଦିର ତିଆରି ହୋଇ ତାଙ୍କୁ ସେଠାରେ ବିଗ୍ରହ ରୂପେ ବସାହେବା ପୂର୍ବରୁ ମଧ୍ୟ ଜଗନ୍ନାଥ ରହିଥିଲେ । ଜଗତ ଯେତେବେଳେ ଥିଲା, ଜଗନ୍ନାଥ ଅବଶ୍ୟ ଥିଲେ । ଅନୁଭବୀମାନଙ୍କର ହୃଦୟ ଭିତରେ ଥିଲେ, ଅବଗାହୀମାନଙ୍କର ଚେତନା ଭିତରେ ରହିଥିଲେ । ରାଜାମାନେ ତାଙ୍କ ପାଇଁ ମନ୍ଦିର ତୋଳାଇଲେ । କବିମାନେ ତାଙ୍କ ନାମରେ କାହାଣୀ ବଖାଣିଲେ । ଭକ୍ତମାନେ ତାଙ୍କୁ ଦର୍ଶନ କରିବାକୁ ଏକ ନିର୍ଦ୍ଦିଷ୍ଟ ଥାନକୁ ଆସିଲେ । ସେହି ଥାନଟିକୁ କ୍ଷେତ୍ର ବୋଲି କୁହାଗଲା । ଜଗତର ନାଥ ଠାକୁର ହେଲେ । ହୃଦୟ ଛାଡ଼ି ଦେଉଳରେ ରହିଲେ । ଆମ ଠାକୁର ହୋଇଥିବାରୁ ଆମେ ତାଙ୍କୁ ବଡ଼ ଠାକୁର ବୋଲି କହିଲୁ । ଆଉମାନଙ୍କ ତୁଳନାରେ ଆପଣାକୁ ବଡ଼ ବୋଲି ଅନୁଭବ କଲୁ । ଠାକୁରଙ୍କ ଲାଗି ନୀତି ଖଞ୍ଜା ହେଲା, ଷାଠିଏ ପଉଟି ଭୋଗ ଖଞ୍ଜି ଦିଆଗଲା । ଷାଠିଏ ପଉଟି ଭୋଗର ଯୋଗାଡ଼

ଯେପରି ହୋଇ ପାରିବ, ସେଥିଲାଗି ଆବଶ୍ୟକ ଜମି ଖଞ୍ଜି ଦିଆଗଲା । ଏକଥା ପ୍ରଜାମାନେ ନୁହନ୍ତି, ରାଜାମାନେ କରିଦେଲେ । ସାମନ୍ତମାନଙ୍କର ଖାତାରେ ଜଗନ୍ନାଥ ସବୁଠାରୁ ବଡ଼ ସାମନ୍ତ ହୋଇ ରହିଲେ; ଗଜପତି ରାଜାମାନେ ତାଙ୍କୁ ଆପଣାର ସମତୁଲ କରିଦେଲେ, ନିଶ୍ଚିନ୍ତ ହେଲେ ।

ଏବେ ଖବରକାଗଜରେ ବାହାରିଛି ଯେ, ଶ୍ରୀ ଜଗନ୍ନାଥଙ୍କର ଏକଲକ୍ଷ ସତେଇଶି ହଜାର ଏକର ଜମି ଜବରଦଖଲ ହୋଇ ରହିଛି । ଏହିପରି ଭାବରେ ମହାପ୍ରଭୁଙ୍କର ଜମିକୁ ଜବରଦଖଲ କରାହୋଇଥିବା ବିଷୟରେ ଘୋର ଉଦ୍‌ବେଗ ପ୍ରକାଶ କରାଯାଇଛି । ଆହୁରି ବ୍ୟାଖ୍ୟା କରି କୁହାଯାଇଛି ଯେ, ମହାପ୍ରଭୁଙ୍କୁ ଦାନ ମିଳିଥିବା ଜମିର ସଦୁପଯୋଗ କରାଯାଇ ପାରୁନାହିଁ ।

ଏକଦା ଯେଉଁମାନେ ଜଗନ୍ନାଥଙ୍କର ନାମରେ ଜମିଦାନ ଦେଇଥିଲେ, ସେମାନେ ସତକୁ ସତ କେଉଁମାନେ ? ସେମାନେ କଦାପି ଚଷା ନୁହନ୍ତି । ଅର୍ଥାତ୍ ଯେଉଁମାନେ ସ୍ୱୟଂ ଚାଷ କରି ଜମିରେ ଫସଲ ଫଳାନ୍ତି, ସେମାନେ କଦାପି ନୁହନ୍ତି । ସେମାନେ ଜଣେ ଜଣେ କୁନି ରଜା ହୋଇଥିବେ ଅଥବା ଜମିଦାର ହୋଇଥିବେ । ରଜା କିମ୍ବା ଜମିଦାରମାନେ କଦାପି ଜମି ଚାଷ କରନ୍ତି ନାହିଁ । ଆଗେ କରୁନଥିଲେ, ଏବେ ମଧ୍ୟ କରୁନାହାନ୍ତି । ସେମାନେ ଜମିର ମାଲିକ ହୋଇ ରହିଥିଲେ । ଜମି ଯାହାର ହୋଇଥାଉ ପଛକେ, ଚାଷୀମାନେ ହିଁ ସେହି ଜମିକୁ ଚାଷ କରି ସେଥିରେ ଫସଲ ଫଳାଉଥିଲେ । ସେମାନଙ୍କ ଶ୍ରମଲବ୍ଧ ଫସଲର ଅଧିକତର ଅଂଶ ରଜା ଓ ଜମିଦାରମାନେ ଭୋଗ କରି ଆସୁଥିବା ପରି ଜଗନ୍ନାଥଙ୍କୁ ମଧ୍ୟ ଭୋଗ କରୁଥିଲେ । ଅର୍ଥାତ୍ ଜଗନ୍ନାଥଙ୍କ ନାଆଁରେ ଅନ୍ୟମାନେ ଭୋଗ କରୁଥିଲେ । ଯୁଗ ବଦଳିଲା, ବିବେକ ବଦଳିଲା, ଜଗନ୍ନାଥ ଜଗତ ହେଲେ, ଜଗତଯାକର ହେଲେ ।

ଜବରଦଖଲ କରିଥିବା ଅଧିକାଂଶ ମଣିଷ ସମ୍ଭବତଃ ଚାଷୀ ହୋଇଥିବେ । ଯେଉଁମାନେ ଚାଷ କରିବାକୁ ସମର୍ଥ ଅଥଚ ଯେଉଁମାନଙ୍କ ହାତରେ ଜମି ନାହିଁ, ସେହିମାନେ ହୋଇଥିବେ । ଠାକୁରଙ୍କର ଜମିକୁ ସେହିମାନେ ଚାଷ କରନ୍ତୁ । ଆପଣା ଭିତରେ ରହିଥିବା ଠାକୁରଙ୍କୁ ଅନୁଭବ କରନ୍ତୁ । ଏହିପରି ଭାବରେ ଠାକୁରଙ୍କର ମର୍ଯ୍ୟାଦା ରହୁ । ଠାକୁରେ ଚଳି ଲାଗି ଆସନ୍ତୁ । ଏବଂ, ସବୁଠାରୁ ବଡ଼ କଥା ହେଉଛି, ଏହାକୁ ଜବରଦଖଲ ବୋଲି ମୋଟେ କୁହାନଯାଉ ।

୯।୭।୮୯

# ଲକ୍ଷ ଲକ୍ଷ ଅବିଚାର

ଯଦି ସମାଜକୁ ଗୋଟିଏ ଗୁହାଳ ବୋଲି କଳ୍ପନା କରାଯାଏ, ତେବେ ସେହି ଗୁହାଳରେ ଉପଦ୍ରବ ହେବ ହିଁ ହେବ । ଭଳି ଭଳି ଉପଦ୍ରବ ହେବ; କାରଣରୁ ହେବ, ଅକାରଣରୁ ମଧ୍ୟ ହେବ । ସେହି ଉପଦ୍ରବଗୁଡ଼ିକୁ ମେଣ୍ଟାଇବା ଲାଗି ହିଁ ସମାଜରେ ବିଚାରପତିମାନେ ରହି ଆସିଛନ୍ତି । ଆମ ଏ ଯୁଗରେ ମଧ୍ୟ ଅଛନ୍ତି, ଆମର ନିଜ ଦେଶରେ ମଧ୍ୟ ରହିଛନ୍ତି । ଆଗେ ସେମାନେ ସମାଜ ତରଫରୁ ଥିଲେ, ଏ କାଳରେ ସରକାରଙ୍କ ତରଫରୁ ଅଛନ୍ତି । ମାତ୍ର ସରକାରଙ୍କ ତରଫରୁ ଥିଲେ ମଧ୍ୟ ପ୍ରକୃତରେ ଲୋକଙ୍କ ପାଇଁ ଅଛନ୍ତି ।

ବିଚାରପତିମାନଙ୍କର ମଧ୍ୟ ଏକ ସିଡ଼ି ରହିଥାଏ । ସାନ ସ୍ତରରେ ସାନ ବିଚାରପତି ଥାଆନ୍ତି, ବଡ଼ ସ୍ତରରେ ବଡ଼ ବିଚାରପତିମାନେ ଥାଆନ୍ତି । ସାନ ବିଚାରପତିମାନଙ୍କର ସାନ କୋଠା, ବଡ଼ ବିଚାରପତିମାନଙ୍କର ବଡ଼ କୋଠା; କୋଠା ଅନୁସାରେ ଦରମା । ମାତ୍ର ମଣିଷପଟୁ ଦେଖିଲେ ବିଚାରାଳୟଗୁଡ଼ିକରେ ବଡ଼ ନାହିଁ କି ସାନ ନାହିଁ । ମଣିଷମାନେ ଦୁଃଖରେ ପଡ଼ିଲେ ହିଁ ଗୁହାରି କରିବାକୁ ଯାଆନ୍ତି । ଆଗେ ସେମାନେ ସିଧା ରାଜାଙ୍କ ଦରବାରକୁ ଯାଇ ଦୁଃଖ ଜଣାଇ ପାରୁଥିଲେ, ବିଚାର ଲାଗି ପ୍ରାର୍ଥନା କରି ପାରୁଥିଲେ । ଏବର ବ୍ୟବସ୍ଥା ଅନୁସାରେ ତିନି ସେଣାରେ ପାଣି ଉଠୁଛି, କେବଳ ନ୍ୟାୟପାଠ ପଢାଇଥିବା ବ୍ରାହ୍ମଣମାନେ ହିଁ ନ୍ୟାୟର ମନ୍ଦିରରେ ଲଢ଼ି ପାରୁଛନ୍ତି । ଦୁଃଖୀଙ୍କଠାରୁ ପଇସା ନେଇ ସେମାନେ ଦୁଃଖୀଙ୍କ ତରଫରୁ ଲଢୁଛନ୍ତି । ତେଣୁ ବିଚାର ହେବା ଓ ବିଚାର ମିଳିବାଟା ଆଗ ଅପେକ୍ଷା ଏବେ ଅଧିକ ଜଟିଳ ହୋଇପଡ଼ିଛି । ସବୁ ବଙ୍କା ଢ଼ଙ୍କା ହୋଇ ଯାଇଥିଲା ପରି ମନେ ହେଉଛି ।

ସରକାରଙ୍କ ଘରୁ ବାହାରିଥିବା ହିସାବରୁ ଜଣାପଡୁଛି ଯେ ଏବେ ଭାରତବର୍ଷର ନ୍ୟାୟାଳୟମାନଙ୍କରେ ବହୁଲକ୍ଷ ମକଦ୍ଦମା ବିଚାରାଧୀନ ଭାବରେ ପଡ଼ିରହିଛି । ଏହି ଘଟଣାଟି ଦୁଃଖୀମାନଙ୍କ ତରଫରୁ କହିଲେ ଅବଶ୍ୟ କୁହାଯାଇ ପାରିବ ଯେ, ବିଚାରଗୁଡ଼ିକୁ କାଗଜ ଭିତରେ ବାନ୍ଧି ବାକ୍ସ ଭିତରେ ମୁଲତବୀ ରଖିଦେବା ଫଳରେ ପ୍ରକୃତରେ ଲକ୍ଷ ଲକ୍ଷ ଅବିଚାରକୁ ପ୍ରଶ୍ରୟ ଦିଆଯାଉଛି । ଜଟିଳକୁ ଅଧିକ ଜଟିଳ କରି ଦିଆଯାଉଛି ଏବଂ ମଝିରେ ରହିଥିବା ବାହ୍ମଣମାନଙ୍କୁ ବହୁ ଅଳସ ଓ ବକ୍ର ଭାବେ ବାଟ ଚାଲିବାକୁ ମଧ୍ୟ ପ୍ରଶ୍ରୟ ଦିଆଯାଉଛି ।

ନ୍ୟାୟମୂର୍ତ୍ତିମାନେ ସବାଆଗ ନ୍ୟାୟାଳୟରେ ରହନ୍ତେ । ଦିନରେ ପାଇଟି ନଛିଣ୍ଡିଲେ ରାତିରେ ମଧ୍ୟ ବସି ପାରୁଥାନ୍ତେ । ଏଥିରେ ଦୁଃଖରେ ପଡ଼ି ନ୍ୟାୟଘରକୁ

ଆସୁଥିବା ମଣିଷମାନେ ଆଦୌ କୌଣସି ଆପତ୍ତି କରନ୍ତେ ନାହିଁ । ମାତ୍ର ଏବେ ନ୍ୟାୟମୂର୍ତ୍ତିମାନଙ୍କର ପାଇଟି ଆହୁରି କେତେ ଆଡ଼କୁ ବଢ଼ିଯାଇଛି । ସେମାନଙ୍କୁ କେତେ କୁଆଡ଼େ ଯାଇ ଯଜମାନି ତୁଲାଇବାକୁ ପଡୁଛି । ଧର୍ମ, ସାହିତ୍ୟ ଓ ସଂସ୍କୃତି ପ୍ରଭୃତି କେତେ କେତେ ଘରକୁ ଯାଇ ପାଦ ପକାଇ ଆସିବାକୁ ପଡୁଛି । ଖେଳାଳି କୁଦାଳିମାନଙ୍କୁ ଆଶୀର୍ବାଦ କରିବାରେ ସେମାନଙ୍କ ଲାଗି ଡାକରା ଆସୁଛି । ଏହିପରି ଭାବରେ ସମୟର ବହୁବିଧ ବିନୋଦନର ଅବସର ଖଞ୍ଜାହୋଇ ଗଲାଣି ଏବଂ ସେହିସବୁ ଅବସରରେ ବିନୋଦବିହାରୀ ହୋଇ ବସିବାକୁ ପଡୁଛି । ଅସଲ ଗାଡ଼ିଟିକୁ ସତେଅବା ଛାଇଆଳିଆ କୌଣସି ଗଛତଳେ ହୁଗାଳି ଦିଆଯାଇଛି ଓ ବଳଦମାନେ ପାଳ ପାକୁଳି କରୁଛନ୍ତି । କୋଟି କୋଟି ଅତିଚାରର ସିନ୍ଧୁସରୋବର ଭିତରେ ଲକ୍ଷ ଲକ୍ଷ ଅବିଚାର କୁଆଡ଼େ ପୋତି ହୋଇ ଯାଉଛି । ଦୁଃଖୀମାନଙ୍କର ଗୁହାରି ଲାଗି ମୋଟେ ଏତେଗୁଡ଼ାଏ ବେଳ ଦେଇ ହେଉନାହିଁ । ଦୁଃଖୀମାନେ କାହିଁକି ନ୍ୟାୟଳୟକୁ ଆସିଲେ ବୋଲି ଝଅକ ମାରି ହେଉଛନ୍ତି ।

୧୬।୭।୮୯

# ଚାଷୀ ମୂଲିଆର ଦେଶ

ଭାରତବର୍ଷ ଚାଷୀ ମୂଲିଆଙ୍କର ଦେଶ ବୋଲି ସ୍ୱାଧୀନତାର ସଂଗ୍ରାମ ଲଢ଼ା ହେବାବେଳେ ଆମର ନେତାମାନେ ଆସୁଣୁ ଯାଉଣୁ କହି ହେଉଥିଲେ । ସଭ୍ୟତାର ପ୍ରାୟ ଆବହମାନ କାଳରୁ ଭାରତବର୍ଷର ସଂସ୍କୃତି କୃଷକମାନଙ୍କର ସଂସ୍କୃତି ହୋଇ ରହି ଆସିଥିଲା । ଏହି ଦେଶରେ ସାଧବମାନେ କାଳେକାଳେ ରହିଥିଲେ ସତ, ମାତ୍ର ଭାରତବର୍ଷର ସଂସ୍କୃତିକୁ କେହି କଦାପି ସାଧବମାନଙ୍କର ସଂସ୍କୃତି ବୋଲି କହି ନାହାନ୍ତି । ସମ୍ଭବତଃ ସେକାଳରେ ମଧ୍ୟ ଭାରତର କୃଷକମାନଙ୍କ ଅପେକ୍ଷା ସାଧବମାନେ ହିଁ ଅଧିକ ଉପାର୍ଜନ କରୁଥିଲେ, ଅଧିକ ଭଲ ଖାଉଥିଲେ ଓ ଭଲ ପିନ୍ଧୁଥିଲେ । ତଥାପି ସଂସ୍କୃତିର ମାନଦଣ୍ଡରେ ସେମାନଙ୍କୁ ଅତ୍ୟନ୍ତ ଅଳପ ସ୍ୱୀକୃତି ଦିଆଯାଉଥିଲା ।

ସ୍ୱାଧୀନତା ଲାଭ କରିବାର ଚାଳିଶିଟା ବର୍ଷ ଭିତରେ ଚାଷୀମୂଲିଆଙ୍କର ଏହି ଦେଶକୁ ଆମେ କେଡ଼େ ଚତୁରତାର ସହିତ ବାବୁମାନଙ୍କର ଏକ ଦେଶରେ ପରିଣତ କରିଦେଲୁ । ବାବୁମାନଙ୍କର କୌଣସି ଚେର ନଥାଏ, ତେଣୁ ଅଧିକାଂଶ ସ୍ଥଳରେ ସେମାନଙ୍କର କୌଣସି ସଂସ୍କୃତି ମଧ୍ୟ ନଥାଏ । ଚେର ନଥିଲେ ସଂସ୍କୃତି ବା କୁଆଡୁ

ଆସିବ ? ବାବୁମାନେ ଉପଭୋଗ କରନ୍ତି, ସବୁ କ୍ଷେତ୍ରରେ ଜ୍ୟେଷ୍ଠଭାଗ ଅର୍ଥାତ୍ ସିଂହଭାଗ ମାଡ଼ି ବସିବାଲାଗି ତତ୍ପର ହୋଇ ରହିଥାଆନ୍ତି । ସେମାନେ ସତକୁସତ ଯାହା ନୁହନ୍ତି, ଆପଣାକୁ ତାହାହିଁ ବୋଲି ଦେଖାଇବା ସକାଶେ ନିରନ୍ତର ଲଣ୍ଡଭଣ୍ଡ ହେବାରେ ଲାଗିଥାଆନ୍ତି । ସେମାନେ କ୍ଷମତାରେ ଥାଆନ୍ତି, ଅଧିକରୁ ଅଧିକ କ୍ଷମତା ମାଡ଼ି ବସିବେ ବୋଲି ରଙ୍ଗମୁହଁ ହୋଇ ଧାଇଁବାରେ ଲାଗିଥାନ୍ତି । ମାତ୍ର, କ୍ଷମତାର ଯୋଗ୍ୟ ହୋଇପାରନ୍ତି ନାହିଁ ।

ବାବୁମାନେ ଜମି ଚାଷ କରନ୍ତି ନାହିଁ, ଜମିର ଫସଲରୁ ଭୋଗ କରନ୍ତି । ପାଠ ଲାଗି ସେମାନଙ୍କର ଆଦୌ କୌଣସି ଆଗ୍ରହ ନଥାଏ, ତଥାପି ସେହିମାନେ ହିଁ ଦେଶରେ ସବୁଠାରୁ ବଡ଼ ପାଠୁଆ ବୋଲି ପରିଚିତ ହେବାକୁ ହାତରେ ତାବିଜ ପିନ୍ଧି ବସିଥାଆନ୍ତି । ବାବୁମାନେ କୋଉଠିହେଲେ ମୂଳିଆ ହୋଇ ରହିନଥାନ୍ତି, ସେମାନେ ମୂଳିଆମାନଙ୍କର ନେତା ହୋଇ ନାମ ଏବଂ ଯଶ ଅର୍ଜନ କରନ୍ତି । ସାହିତ୍ୟ ଲେଖନ୍ତି ନାହିଁ, ସାହିତ୍ୟର ପୃଷ୍ଠପୋଷକତା କରନ୍ତି । ସେମାନେ ସଂସ୍କୃତି କରନ୍ତି, ସଂସ୍କୃତିକୁ ବଞ୍ଚନ୍ତି ନାହିଁ । ଜୀବନକୁ ନବଞ୍ଚି ଜୀବନ ବଞ୍ଚିବାର ମହାସ୍ୱାଦ ଲାଭ କରିବାରେ ଲାଗିଥାନ୍ତି ।

ବାବୁମାନଙ୍କର କବଳରେ ପଡ଼ି ଭାରତବର୍ଷ ନାମକ ଆମର ଏହି ଘରଟା ଚାହୁଁ ଚାହୁଁ ଛତରରେ ପରିଣତ ହୋଇଗଲା । ବାବୁମାନେ କଦାପି କାହାରି ଆଡ଼କୁ ଅନାନ୍ତି ନାହିଁ । ନିଜଆଡ଼କୁ ଅନାଉ ଅନାଉ ସେମାନଙ୍କର ସବୁଯାକ ବହପ ଅତିକ୍ରାନ୍ତ ହୋଇଯାଏ । ବସ୍ତୁତଃ ସେମାନେ ନିଜ ବ୍ୟତୀତ ଆଉ କାହାକୁ ହେଲେ ଦେଖି ପାରନ୍ତି ନାହିଁ । ନିଜକୁ ଦେଖିଲେ ହିଁ ସଂସାରଟାଯାକ ଦେଖା ହୋଇଗଲା ବୋଲି ମନେକରନ୍ତି । ବାବୁମାନଙ୍କର ସତକୁସତ କୌଣସି ଦେଶ ନଥାଏ । କୁମ୍ଭୀରମାନେ ପ୍ରଧାନତଃ ମୃଗୟା କରିବେ ବୋଲି ପୋଖରୀ ଭିତରେ ଆସି ବସା ବାନ୍ଧିଥାନ୍ତି । ବାବୁମାନଙ୍କର ରୀତିଟି ବି ଠିକ୍ ସେହିପରି । ସେମାନେ ମୂଳତଃ ନିଜ ପାଇଁ ହିଁ କୌଣସି ଦେଶକୁ ନିଜର ବୋଲି କହୁଥାନ୍ତି ।

୨୩/୭/୮୯

# ବିଚରା ଗୋବିନ୍ଦଙ୍କର ଦଶା

ଆଗେ ଗୋବିନ୍ଦ ଗାଆଁରେ ଥିଲେ । ସିଏ ସଂସ୍କୃତି ଭିତରେ ଥିଲେ । ତାଙ୍କର ଚେର ଭୂଇଁରେ ଲାଗିଥିଲା, ଭୂଇଁ ଭିତରକୁ ଭେଦିକରି ରହିଥିଲା । ସେତେବେଳେ

ବି ଗୋବିନ୍ଦଙ୍କର ପର୍ବରେ ମଣିଷମାନେ ଫଗୁ ଖେଳୁଥିଲେ । ଏବେ ସହରରୁ ଛତରା ଗୋବିନ୍ଦମାନେ ଯାଇ ଆଗର ସେହି ଗୋବିନ୍ଦଙ୍କୁ ଦଳି ପକାଇଲେଣି । ଛତରାଙ୍କର କେବେ କୌଣସି ଚେର ନଥାଏ । ତେଣୁ ଏ ଛତରାମାନଙ୍କର ବି ଚେର ଆସିବ କୁଆଡୁ ? ଏମାନଙ୍କର ଚେର ନାହିଁ, ତେଣୁ ସଂସ୍କୃତି ମଧ୍ୟ ନାହିଁ । ଏମାନେ ଏବେ ଗୋଟାସୁଦ୍ଧା ମାରଣା ହୋଇ ବଜାରଯାକ ଫଗୁ ଖେଳୁଛନ୍ତି । କାଦୁଅ ବଳବଳ କରି ଦେଉଛନ୍ତି । ଘୁଅ ବଳବଳ ହୋଇ ଦିଶୁଛନ୍ତି । ହାତରେ ମୁଣ୍ଡଫଟା ରଙ୍ଗ, ବାର୍ନିସ ଓ କଳା ଧରି ଏମାନେ ମୁହଁକୁ ମାଙ୍କଡ଼ କରି ଗାଆଁ ଭିତରେ ଯାଇ ପଶିବା ଦିନଠାରୁ ଗାଆଁର ମହତ ଗଲାଣି । ଗାଆଁଦାଣ୍ଡ ଛତରାମାନଙ୍କର ନିର୍ଲଜ୍ଜ ପଡ଼ିଆରେ ପରିଣତ ହୋଇଗଲାଣି ।

ଭାଗବତର କୃଷ୍ଣ କୁଆଡ଼େ ଭାରି ଛତରା ଥିଲେ । ସିଏ କୁଆଡ଼େ ଯାହା ଘରେ ମନ ତା' ଘରେ ପଶିଯାଉଥିଲେ, ଆପଣା ପର ବାରୁ ନଥିଲେ, ମାଇଁ ବାରୁନଥିଲେ କି ଭାଣିଜୀ ବାରୁନଥିଲେ । ଏବେ ଏଗୁଡ଼ାକୁ ଭକ୍ତମାନେ ଲୀଳା ବୋଲି କହୁଛନ୍ତି । ଫଗୁଖେଳକୁ ଯାବତୀୟ ସନ୍ତର୍ପଣରେ ସେହି ଲୀଳାର ପ୍ରାୟ ଏକ ଅଙ୍ଗ ରୂପେ ମାନି ନିଆଯାଉଛି । ସେକାଳେ ଗୋପପୁର ତଥାପି ଗୋଟାଏ ଗାଆଁ ଥିଲା । ତେଣୁ ଫଗୁ ଖେଳ ପରିଚିତମାନଙ୍କ ଭିତରେ ହିଁ ହେଉଥିଲା । ଏବେ ପରିଚିତ ଅପରିଚିତ ମଧ୍ୟରେ ଆଦୌ କୌଣସି ବାଛବିଚାର ରହୁନାହିଁ । ଗୋଟାଏ ସାଧନାରେ ଯେପରି ସ୍ୱକୀୟା ତୁଳନାରେ ପରକୀୟା ପ୍ରେମ ଓ ପ୍ରୀତିକୁ ଉଚ୍ଚତର ସ୍ଥାନ ଓ ଅଧିକ ମର୍ଯ୍ୟାଦା ଦିଆଯାଇଛି, ଏବେ ଆମ ବଜାରିଆ ଫଗୁଖେଳରେ ସମ୍ଭବତଃ ସେହି ନ୍ୟାୟରେ ପରିଚିତମାନଙ୍କ ତୁଳନାରେ ଅପରିଚିତମାନଙ୍କ ସହିତ ହଟାପଟା ଲଗାଇ ଅଧିକ ଗମାତ ହୋଇ ପାରୁଛି, ଅଧିକ ଆନନ୍ଦ ମିଳୁଛି । ଗୋବିନ୍ଦ-ସଂସ୍କୃତି ବିଷୟରେ ଗବେଷଣା ହୋଇ ଫଗୁ ବେଳକୁ ଖବରକାଗଜରେ ଛପାଯାଉଛି, ମାତ୍ର ତୁଛା ଛତରାମାନେ ଯେ ଏବେ ଗୋବିନ୍ଦ ହେଲେଣି ଓ ରଙ୍ଗ ପିଚକାରୀ ଧରି ବାହାରିଲେଣି, ସଂସ୍କୃତିର ଗବେଷକମାନେ ସେହି ବିଷୟରେ ମଥା ଘୂରାଇବାକୁ ଭୟ କରୁଛନ୍ତି ।

ସଂସ୍କୃତିକୁ ଛତରା କରିଦେବା ଅପେକ୍ଷା ଯିଏ ଡ଼ୋର ଲଗାଇବାକୁ ହିଁ ଜୀବନର ଅସଲ କାମ୍ୟ ବୋଲି ଗ୍ରହଣ କରୁଥିବ, ଆମ ଭିତରୁ ହୁଏତ ସେଇ ଆମ ଗାଆଁର ମାନ ରଖିପାରିବ । ସେଇ ଗାଆଁ ଭିତରକୁ ଯାଇଥିବା ଏହି ସବୁ ତାମସାକୁ ବନ୍ଦ କରି ପାରିବ । ଏବଂ ଗାଆଁରୁ ତାମସାଗୁଡ଼ାକ ବନ୍ଦ ହୋଇ ଯାଇ ତାହା ସହରରୁ ମଧ୍ୟ ବନ୍ଦ ହୋଇଯିବ । ଗାଆଁର ଗୋବିନ୍ଦ ଗାଆଁର ହୋଇ ରହିବେ, ଗାଆଁର ଅଞ୍ଚଳରେ

ଫଗୁ ଖେଳିବେ । ଗାଆଁରୁ ସିଦ୍ଧିବତୀ ଖୋଜି ଯେଉଁମାନେ ସହରକୁ ହୁଡ଼ି ଯାଉଛନ୍ତି ଓ ସହରର ଛତରାପଣଗୁଡ଼ାକୁ ଆଣି ଗାଆଁକୁ ଉଜୁଡ଼ାଇ ଦେବାର ଫିସାଦ କରିଛନ୍ତି, ସେତେବେଳେ ଯାଇ ସେମାନଙ୍କର ଚେତା ଆସିବ । ସଂସ୍କୃତିର ସୁରକ୍ଷା ସେତେବେଳେ ଯାଇ ହେବ । ଗାଆଁର ପିଲାଏ ସହରକୁ ପାଠପଢ଼ି ଯିବେ, ବଡ଼ ହୋଇ ହୁଏତ ସେହି ସହରରେ ଚାକିରି କରିବେ । ମାତ୍ର ସହରର ଛତରାମିଗୁଡ଼ିକୁ କଦାପି ଗାଆଁ ଭିତରେ ପୂରାଇ ଦେବେ ନାହିଁ । ସେମାନେ ନିଜ ଗାଆଁର ଗୋବିନ୍ଦଙ୍କ ସହିତ ତଥାପି ଡ଼ୋର ଲଗାଇ ରହିଥିବେ । ତେଣୁ ସହରର ଘୋଟକ ଗୁଡ଼ାକୁ ମୋଟେ ଗୋବିନ୍ଦ ବୋଲି କହିବାକୁ ମନ କରିବେ ନାହିଁ ।

୩୦/୭/୮୯

# ଆସ ସମସ୍ତେ ମିଶି

ସଭା ହେବ ବୋଲି ସକାଳୁ ମଣିଷ ରୁଣ୍ଡ ହୋଇଥାନ୍ତି । ସେମାନଙ୍କୁ ସାନ ସ୍ଥାନୀୟ ହାକିମମାନେ ଡାକିଆ ବରଗି ରୁଣ୍ଡ କରାଇଥାଆନ୍ତି । ଜିଲ୍ଲାର ଯିଏ ସବୁଠାରୁ ବଡ଼ ହାକିମ, ସେଇ ଆଜି ସଭାକୁ ଆସିବେ ବୋଲି ପାହାଡ଼ ଉପରେ ଥିବା ଘନ ଅରଣ୍ୟ ଭିତରେ ବେଶ୍ କେତେ ଦିନ ଆଗରୁ ସରକାରୀ ତନାଘନା ଲାଗି ଯାଇଥାଏ । ଗଛତଳେ ଚାନ୍ଦୁଆ ଟଣା ହୋଇଥାଏ । ମଣିଷଙ୍କ ମୁଣ୍ଡରେ ଲହଡ଼ି ଭାଙ୍ଗୁଥିଲା ପରି ମନେ ହେଉଥାଏ । ସବାବଡ଼ ହାକିମ ଧୂଳି ଉଡ଼ାଇ ସେଠାରେ ଆସି ପହଞ୍ଚିଲାବେଳକୁ ମାହାପୁରୁ ତଳକୁ ଖସିବାକୁ ଆରମ୍ଭ କଲେଣି ।

ଆଗ ପ୍ରଜାମାନେ ଦୁଃଖ ଜଣାଇଲେ । ମହାକାନ୍ତାର ଗଡ଼ଜାତ ଥିଲାବେଳେ ରାଜାଙ୍କ ହାବୁଡ଼ରେ ପଡ଼ିଲେ ଲୋକେ ଯେମିତି ଛାନିଆ ହୋଇ ଦୁଃଖ ଜଣାଉଥିଲେ, ସ୍ୱାଧୀନ ଭାରତର ଚାଳିଶି ବରଷ ପରେ ଅମଲା ଓ ହାକିମମାନଙ୍କ ଏହି ସଭାରେ ମଧ୍ୟ ପ୍ରାୟ ସେହି ବାଗିର୍ ମନେ ହେଲା । ଅସଜଡ଼ାଗୁଡ଼ାକୁ ହିଁ ମାରି ଖାତାରେ ଲେଖି ସଜାଡ଼ି ଦିଆଇବା ପରେ ସ୍ୱୟଂ ବଡ଼ ହାକିମ ଭାଷଣ ଦେଲେ । ସିଏ ଆମ ଦେଶ ଭାରତବର୍ଷ ବିଷୟରେ କହିଲେ । ଲୋକମାନଙ୍କର ଉପକାର ଲାଗି ସରକାର ଏବେ କେଡ଼େ କେଡ଼େ ବରାଦମାନ କରିବାକୁ ବାହାରିଲେଣି, ସିଏ ଅତ୍ୟନ୍ତ ଅନୁପ୍ରାଣିତ ହୋଇ କହୁଥିବା ପରି ଲୋକମାନଙ୍କୁ କହିଲେ । ଏବଂ, ଭାଷଣ ଶେଷ କରି ବସିପଡ଼ିବା ପୂର୍ବରୁ ସବାଶେଷରେ ସିଏ ଯାହା କହିଲେ ତାହା ଶୁଣି ସମସ୍ତେ କରତାଳିରେ ସଭା କମ୍ପାଇଦେଲେ । କିଏ ବୁଝିଲା, କିଏ ନବୁଝିଲା, କିଛି ଜଣା ପଡ଼ିଲା ନାହିଁ ।

ଦୁଇକଡ଼କୁ ବେଞ୍ଚ ଉପରେ ବସିଥିବା ସରପଞ୍ଚ ବାବୁମାନେ ଯେତେବେଳେ ଭଡ଼ ଭଡ଼ କରି ତାଳି ମାରିବାକୁ ଆରମ୍ଭ କଲେ, ସେତେବେଳେ ବିଚରା ମଣିଷମାନଙ୍କର ମଧ୍ୟ ତାଳି ମାରିବାକୁ କେଡ଼େ ଉତ୍ସାହ ଆସିଲା ।

ବଡ଼ ହାକିମ ସବାଶେଷରେ, 'ଆସ ସମସ୍ତେ ମିଶି ଆମ ଦେଶକୁ ଆଗକୁ ନେଇଯିବା' ବୋଲି କହିଥିଲେ । ଭାରତବର୍ଷରେ ବିଗତ ଚାଳିଶ ବର୍ଷ ହେଲା ସମସ୍ତେ ମୋଟେ ମିଶି ନାହାନ୍ତି, ସରକାର ପ୍ରାୟ ଏକତରଫା ହୋଇ ଦେଶକୁ ଗଢ଼ୁଛନ୍ତି । ହୁଏତ ଏ ଦେଶରେ ଯେପରି ସମସ୍ତେ କେବେହେଲେ ମିଶିବେ ନାହିଁ, ସେଇ ମତଲବରେ ହିଁ ଦେଶକୁ ଶାସନ କରୁଛନ୍ତି । ସରକାର ମଞ୍ଚା ଉପରୁ ଥାଇ ଡାକୁଛନ୍ତି, ମଣିଷମାନେ କେତେ ତଳେ ଥାଇ ଅନୁଗ୍ରହ ଭିକ୍ଷା କରୁଛନ୍ତି । ଏ ଦେଶରେ ଗୋଟାଏ ପାଖରେ ପାରୁଆମାନେ ଅଛନ୍ତି, ଆଉ ଗୋଟାଏ ପାଖରେ ଅଗଣିତ ଅପାରୁଆ ଆଁ କରି ଅନାଇ ରହିଛନ୍ତି । ସାଧାରଣଙ୍କ ଠାରୁ ଅସାଧାରଣମାନେ ଚଉଦନ କୋଶ ଦୂରରେ ଯାଇ ରହିଛନ୍ତି । ଅସାଧାରଣ କେଡ଼େ ଚାଲାଖ ହୋଇ ସାଧାରଣଙ୍କ କାନ୍ଧ ଉପରେ ଯାଇ ବସିଛନ୍ତି । ଦେଶ ଉନ୍ନତି କରୁଥିବା ସଙ୍ଗେ ସଙ୍ଗେ ସାଧାରଣଙ୍କ ଭିତରୁ ଯେଉଁ ଅଳ୍ପ କେତେ ଜଣ ଦୁଇ ଅକ୍ଷର ପାଠ ପଢ଼ୁଛନ୍ତି, ସେମାନେ ବି ଚାଲି ଯାଉଛନ୍ତି ଅର୍ଥାତ୍ ଅସାଧାରଣମାନଙ୍କ ଭିତରେ ସାମିଲ ହୋଇ ଯାଉଛନ୍ତି । ତେଣୁ ସମସ୍ତେ ମିଶିବେ ବା କେମିତି, ଏହି ଦେଶ ଗଢ଼ାହେବ ବା କେମିତି ?

ସଭାରେ ବଡ଼ମାନେ ବହୁ ଉତ୍ସାହରେ ଡାକରା ଦେଲେ ଏ ଦେଶରେ ସମସ୍ତେ କଦାପି ମିଶି ପାରିବେ ନାହିଁ । ସମସ୍ତେ ନ ମିଶିବା ପର୍ଯ୍ୟନ୍ତ ଦେଶଟା ମଧ୍ୟ ସାତଖଣ୍ଡ ଓ ସାତସ୍ୱାର୍ଥ ହୋଇ ରହିଥିବ । ଦେଶରେ ସମସ୍ତେ ମିଶି ଯେପରି ଦେଶଟାକୁ ସତକୁ ସତ ଗଢ଼ି ପାରିବେ, ସେଥିଲାଗି ସବାଆଗ ଏକ ଅନୁକୂଳ infrastructure ଗଢ଼ିବାକୁ ପଡ଼ିବ । ସେ ଦିଗରେ ଭାରତବର୍ଷରେ ଏବେ ମଧ୍ୟ ନିଷ୍ଠାର ସହିତ ଯଥେଷ୍ଟ ଉଦ୍ୟମ ହୋଇନାହିଁ । ଅନୁକୂଳ ନେତୃତ୍ୱ ମଧ୍ୟ ମିଳିନାହିଁ ।

୬।୮।୮୯

# ମୋର ସନାତନ ଧର୍ମ

ଭାରତବର୍ଷରେ ମହାଜନମାନଙ୍କ ମତରେ ଜୀବନ ହେଉଛି ଗୋଟାସୁଦ୍ଧା ଅନିତ୍ୟ । ଭାରତବର୍ଷରେ ମଣିଷମାନେ ହେଉଛନ୍ତି ସମ୍ଭବତଃ ସବୁଠାରୁ ଶସ୍ତା । ମାତ୍ର, ଭାରତବର୍ଷର ଧର୍ମ ହେଉଛି ସନାତନ ଧର୍ମ । ସନାତନୀମାନେ ଏହି ବିଷୟରେ ଆଦୌ

କୌଣସି ସାଲିଶ୍ କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନେ ମଣିଷ ବିଷୟରେ ଯାଉଣୁ ଆସୁଣୁ ସାଲିଶ୍ କରିବାକୁ ତିଆରି ହୋଇଯିବେ ପଛକେ, କ୍ଷମତା ସହିତ ବନ୍ଧୁ ସାଲିଶ୍ କରି ମୁଣ୍ଡ ଗୁଞ୍ଜି ରହିପାରିବେ ପଛକେ, ମାତ୍ର ସନାତନ ଧର୍ମ ବ୍ୟତୀତ ଆପଣାର ଧର୍ମଟାକୁ ସେମାନେ ନମନୀୟତା ଦେଖାଇ ଆଉ ଆଦୌ କୌଣସି ଅଭିଧା ଦ୍ୱାରା ଚିହ୍ନଟ କରାଇବାକୁ ରାଜି ହେବେନାହିଁ ।

ସନାତନ, ଅର୍ଥାତ୍ ଯାହା ସବୁକାଳେ ଥିଲା ଓ ସବୁକାଳକୁ ରହିବ । ମୋର ଧର୍ମ ସବୁକାଳେ ଥିଲା ଓ ସବୁ କାଳକୁ ଅବଶ୍ୟ ରହିବ ବୋଲି ଆଣ୍ଠ କରି କହିଲାବେଳେ ମଣିଷ ସଚରାଚର ଏକ ଔଦ୍ଧତ୍ୟର ହିଁ ପରିଚୟ ଦିଏ । ଆପଣାକୁ ଅନ୍ୟ ସମସ୍ତଙ୍କଠାରୁ ଅଧିକ କରି ଦେଖେ, ଅନ୍ୟ ସଭିଙ୍କଠାରୁ ନିଜକୁ ଅଧିକ ବଡ଼ ବୋଲି କହେ । ସନାତନୀ ଏଇଟା ମାନେ, ସେଇଟାକୁ ମାନେନାହିଁ; ଏଇଟାକୁ ବିଧି ବୋଲି କହେ ତ ସେଇଟାକୁ ଅବିଧି ବୋଲି କହି ନିନ୍ଦା କରେ । ଆପେ ଆଇଁଷ ଖାଏନାହିଁ ବୋଲି ଆଇଁଷ ଖାଉଥିବା ଅନ୍ୟମାନଙ୍କୁ ମ୍ଳେଚ୍ଛ ବୋଲି କହେ, ପତିତ ବୋଲି କହି ନିନ୍ଦା କରେ । ସନାତନକୁ ଅତ୍ୟନ୍ତ ହାସ୍ୟାସ୍ପଦ ଭାବରେ ସ୍ଥାନୀୟ କରିପକାଏ । ଅର୍ଥାତ୍, ଖୋଳ ଭିତରକୁ ଯାଇ ଅସଲ ନାଡ଼ିଗୁଡ଼ାକୁ ଦେଖି ସତକୁ ସତ କହିଲେ, ସନାତନୀ 'ମୋର ଧର୍ମ' ଅର୍ଥାତ୍ ତା' ନିଜର ଗୁଳା ଓ ଗୋବରଗୁଡ଼ାକୁ ହିଁ ସନାତନ ବୋଲି କହେ । ଏହିପରି ଗୋଟିଏ ଦୁରାଗ୍ରହରେ ସିଏ ଶାସ୍ତ୍ର ଲେଖେ ଏବଂ ଆପଣା ପକ୍ଷର ପ୍ରତିପାଦନ କରିବା ଲାଗି ସେହି ଶାସ୍ତ୍ରଗୁଡ଼ିକର ଉଲ୍ଲୁଗୁଣା ଦେଉଥାଏ । ସନାତନ ସତ୍ୟଗୁଡ଼ିକ ଉପରୁ ଥାଇ ଭାରି ହସୁଥାନ୍ତି ।

ବୌଦ୍ଧମାନେ ଆପଣାର ସୂତ୍ରଗୁଡ଼ିକୁ ଗଣ୍ଠି ପକାଇ ସେଥିରୁ ଯେତେବେଳେ ଧର୍ମଟିଏ ତିଆରି କଲେ ଓ କାଳକ୍ରମେ ତାହାକୁ ସଦ୍ଧର୍ମ ବୋଲି କହିଲେ, ସେତେବେଳେ ତାହା ପ୍ରାୟ ସେହିପରି ଏକ ଦୁର୍ଦ୍ଦଶା ଭିତରେ ଯାଇ ପଡ଼ି ଯାଇଥିଲା । ସେତେବେଳେ ସେହି ଖଣ୍ଡମତଟାକୁ ସଂପୂର୍ଣ୍ଣ କରି ଦେଖାଇବାର ମତଲବରେ 'ସଦ୍ଧର୍ମ-ପୁଣ୍ଡରୀକ' ବୋଲି ଶାସ୍ତ୍ରଟିଏ ମଧ୍ୟ ଲେଖା ଯାଇଥିଲା । ବୌଦ୍ଧମାର୍ଗର ଏକାଧିକ ସନାତନୀମାନଙ୍କ ଲାଗି ତାହା ହୁଏତ ଏବେ ମଧ୍ୟ ସତେଅବା ମହାବେଦ ହୋଇ ରହିଥିବ । ଯାବତୀୟ ସ୍ଥାନୀୟତା ଭିତରେ ଯାହା ତଥାପି ବିଶ୍ୱଜନୀନ, ଆମେ ଅଧିକ ନିର୍ଭୁଲ ଭାବରେ ହୁଏତ ତାହାକୁ ହିଁ ସନାତନ ବୋଲି କହିପାରିବା । ସକଳ ସ୍ଥାନୀୟ ସତ୍ୟ ଭିତରର ଯେଉଁ ଉପାଦାନଗୁଡ଼ିକ ଗୋଟିଏ ଗୋଟିଏ ବିଶ୍ୱସତ୍ୟରୂପେ ପ୍ରତିଷ୍ଠିତ ହୋଇ ପାରୁଥିବ, ଆମେ ସେହିଗୁଡ଼ିକୁ ହିଁ ସନାତନ ସତ୍ୟ ବୋଲି କହିବା । ଯାହାକୁ ମୁଁ ମାନୁଛି ଓ ମୋ' ଡିହଟା ଉପରେ ମୋ'ର ପୂର୍ବ ପୁରୁଷ ଯାହାକୁ ମାନି ଆସିଥାନ୍ତି,

ତାହା ହୁଏତ କେବଳ ଏକ ଅନ୍ଧବିଶ୍ୱାସ ମଧ୍ୟ ହୋଇପାରେ ଏବଂ ତାହାକୁ ଆହୁରି ଅଧିକ ଦାମ୍ଭିକତା ଆଣିଦେବାକୁ ଶାସ୍ତ୍ରମାନ ମଧ୍ୟ ଲିଖିତ ହୋଇପାରେ । ତଥାପି ତାହା ଭାରି ସ୍ଥାନୀୟ ହୋଇ ରହିଥିବ । ଆପଣାକୁ ସନାତନ ବୋଲି ହୁରି କରି ତାହା ନିଜଲାଗି ତଥା ସମଗ୍ର ପୃଥିବୀ ଲାଗି ମଧ୍ୟ ଭଳି ଭଳି ପ୍ରମାଦକୁ ଆମନ୍ତ୍ରିତ କରି ଆଣୁଥିବ । ସେହି ମିଛ ସନାତନୀମାନଙ୍କୁ ଏବେ ରାଜନୀତିର ଭାଷାରେ Fundamen-talists ବୋଲି କୁହାଯାଉଛି । ଯାହାର ସତ୍ୟରେ ଆଦୌ କୌଣସି ମୂଳ ନାହିଁ, ତୁଚ୍ଛା ସ୍ଥାନୀୟତାଗୁଡ଼ାକୁ ଯେଉଁଠି ମୂଳ ବୋଲି କହି ଧୃଷ୍ଟମାନେ ଦାନ୍ତ ରଗଡ଼ିବାରେ ଲାଗିଛନ୍ତି, ମୂଳଟି ସହିତ ପ୍ରକୃତରେ ଖିଅ ଲାଗିଥିବା କିଏ କାହିଁକି ସେମାନଙ୍କୁ ମୌଳବାଦୀ ବୋଲି କହିବାକୁ ଯିବ ?

୧୩/୮/୮୯

# ପଶାଖେଳରେ ବି ଭଦ୍ରତା

ଖେଳ ଭିତରେ ଗୋଟାଏ ଖେଳ ହେଉଛି ପଶାଖେଳ । ଆମ ଭାରତବର୍ଷରେ ପୂର୍ବକାଳରେ ସେହି ଖେଳକୁ କେବଳ ସାଧାରଣ ଅର୍ଥାତ୍ ପ୍ରଜାସ୍ତରୀୟ ମନୁଷ୍ୟମାନେ ନୁହନ୍ତି, ରାଜାମାନେ ମଧ୍ୟ ଖେଳୁଥିଲେ । ଅତ୍ୟନ୍ତ ରାଜକୀୟ ଢ଼ଙ୍ଗରେ ସେହି ଖେଳ ଖେଳା ଯାଉଥିଲା ଏବଂ ରାଜକୀୟତା ମଧ୍ୟରେ ଆଉ ଯାହାକିଛି ଥାଉ ବା ନଥାଉ ପଛକେ, ଭଦ୍ରତା ଭର୍ତ୍ତି ହୋଇ ରହିଥିଲା । ସମ୍ଭବତଃ, ଏକଥା ମଧ୍ୟ ସତ ଯେ, ମଣିଷମାନେ ଅତ୍ୟନ୍ତ ଭଦ୍ର ହୋଇ ପାରିଲେ ଯାଇ ପଶା ଖେଳିପାରନ୍ତି, ପଶା ଖେଳିବାକୁ ମନ କରନ୍ତି ।

ସେଦିନ ଦୂରଦର୍ଶନ ଯାହାସବୁ ଦେଖାଇଲା, ତାହା ଯଦି ସତ ହୋଇଥାଏ, ତେବେ ଭାରତୀୟ ପରମ୍ପରାରେ ଆଚରିତ ହୋଇ ଆସିଥିବା ଏହି ଭଦ୍ରତା ପାଖରେ ପ୍ରକୃତରେ ନତମସ୍ତକ ହେବାକୁ ହିଁ ପଡ଼ିବ । ବାଜି ରଖି ପଶା ଖେଳିବା, – ସମାଜରେ ବିବେକ ରହିଥିଲେ ସେହି ଖେଳକୁ କେତେକ ମଣିଷ ହୁଏତ କେବଳ ଲୁଚିକରି ଖେଳୁ ଥାଆନ୍ତେ । ଆମ ପିଲାଦିନେ ଗୁରୁଜନମାନଙ୍କୁ ଡରି ଆମେ ପିଲାଏ ଯେପରି ଢ଼ିଙ୍କିଚାଳିରେ, ଗୁହାଳସଙ୍ଗାରେ ଅଥବା ଏକାବେଳେକେ ବାରିଆଡ଼େ ଯାଇ ତାଆସ ଖେଳ ଖେଳୁଥିଲୁ, ଏହା ପ୍ରାୟ ସେହିପରି ଗୋଟିଏ କଥା । ପଇସା ବାଜି ରଖି ତାଆସ ଖେଳିବା ବିଷୟରେ ତ ସେତେବେଳେ ଆମେ କେହି କଳ୍ପନା କରି ପାରୁନଥିଲୁ ।

ସେଦିନ ମହାଭାରତର ପଶାଖେଳ ନିମନ୍ତେ ରାଜଦରବାରରେ ବ୍ୟବସ୍ଥା ହୋଇଥିଲା । ସେଥିଲାଗି ଅତ୍ୟନ୍ତ ଭଦ୍ରତାର ସହିତ ବିଜ୍ଞଲୋକଙ୍କ ସହିତ ପରାମର୍ଶ କରି ଦିନଟିଏ ସ୍ଥିର କରା ହୋଇଥିଲା । ସମସ୍ତେ ଯେପରି ଖେଳ ବେଳେ ଉପସ୍ଥିତ ହୋଇ ପାରିବେ, ସେହି ଅନୁସାରେ ଦିନର ନିର୍ଘଣ୍ଟ କରାଯାଇଥିଲା । ଏକ ଘରର ଦୁଇ ଅଂଶରୁ ଜାତ ପିଲାଙ୍କ ଭିତରେ ପଶାଖେଳର ଆୟୋଜନ ହୋଇଥିଲା । ବୟସରେ ସେମାନେ ଅବଶ୍ୟ କେହି ପିଲା ନଥିଲେ । ବାହାସାହା ହୋଇ ସାରିଥିଲେ । ସେମାନେ ବେଶଭୂଷା ହୋଇ ସବାଆଗ ପଶାଘରେ ଆସି ପହଞ୍ଚିଲେ । କେଡ଼େ ଭଦ୍ର ଭାବରେ ପରସ୍ପରକୁ ସମ୍ଭାଷଣ କଲେ, ଅଗ୍ରଜ ଓ ଅନୁଜ ମାନ୍ୟରେ ସାଧୁଭାଷାରେ କେତେ କ'ଣ କହିଲେ ।

ତାପରେ ସେମାନଙ୍କୁ ବିଦ୍ୟାଦାନ କରିଥିବା ଗୁରୁମାନେ ଆସି ପହଞ୍ଚିଲେ । ମନ୍ତ୍ରୀ ବିଜେ କଲେ । ଯାହାଙ୍କୁ ମହାନ୍ ବର୍ଷୀୟାନ୍ ଯୋଦ୍ଧା, ଆଜନ୍ମ ବ୍ରହ୍ମଚାରୀ ଓ ଆହୁରି କେତେ କ'ଣ ବୋଲି କୁହା ଯାଇଛି, ସିଏ ମଧ୍ୟ ଆସି ପହଞ୍ଚିଲେ । ସମସ୍ତଙ୍କ ସକାଶେ ଆଗରୁ ଆସନ ଖଞ୍ଜା ହୋଇଥିଲା । ଯେଝା ଆସନରେ ଯିଏ ବସିଲେ । ଆଖି ଥିବା ଏମାନେ ସମସ୍ତେ ଯେଉଁ ଅନ୍ଧରାଜାଙ୍କ ନିମନ୍ତେ ଅପେକ୍ଷା କରିଥିଲେ, ସିଏ ବି ଶେଷକୁ ଆସି ପହଞ୍ଚିଲେ । ଅବଶ୍ୟ ଆଖି ଥାଉ ଥାଉ ତଥାପି ଜୀବନଯାକ ଅନ୍ଧପୁଟୁଳି ବାନ୍ଧି ଅନ୍ଧୁଣୀ ହୋଇଥିବା ମହାରାଣୀ ଆସିନଥିଲେ । ତାଙ୍କର ଆସିବାଟା ଆଚାର ଭିତରେ ନଥିଲା । ଅନ୍ଧ ରଜା ଆଦେଶ ଦେଲେ, ପଶାଖେଳ ଆରମ୍ଭ ହେଲା ।

ମହାଭାରତକୁ ଅନେକ ପଣ୍ଡିତ ଧର୍ମଶାସ୍ତ୍ର ବୋଲି କହନ୍ତି, ଆଉ କେହି କେହି ଏକ ମହାନ୍ ନୀତିଶାସ୍ତ୍ର ବୋଲି କହନ୍ତି । ବାପ, ଅଜା ଓ ଗୁରୁମାନେ ବସିକରି ଯେଉଁଠି ଦରବାରରେ ପଶାଖେଳ ହୁଏ, – ପୁଅମାନେ ଅଳଙ୍କାର ହାରୁ ହାରୁ ସୈନ୍ୟସାମନ୍ତ ଓ ରାଜ୍ୟ ହାରନ୍ତି ଏବଂ ଭାଇମାନଙ୍କୁ ଓ ଶେଷକୁ ନିଜ ସମେତ ନିଜ ଧର୍ମପତ୍ନୀଟାକୁ ମଧ୍ୟ ପଣ ହିସାବରେ ବସାଇ ଶେଷକୁ ସର୍ବସ୍ୱାନ୍ତ ହୁଅନ୍ତି, ସେଠି ପ୍ରକୃତରେ କେଡ଼େ ଭଦ୍ରତାର ସହିତ ନିଶା ଲାଗିଥିବା ବ୍ୟକ୍ତିଟିକୁ ଧର୍ମରାଜ ବୋଲି କୁହାଯାଇଛି । ସ୍ୱୟଂ ବ୍ୟାସଦେବ ତାଙ୍କୁ ଏହି ପଦବୀରେ ଚିତ୍ରଣ କରି ଯାଇଛନ୍ତି । ଭିତରେ ଖୁସି ହେବାଲାଗି ବା ଗର୍ବ କରିବା ଲାଗି ସେଭଳି କିଛି ନଥିଲେ ମଧ୍ୟ ଭାରତରେ ଅନ୍ତତଃ ବାହାରେ ସେତେବେଳେ କେତେ ଭଦ୍ରତା ଥିଲା । ତାହା ଏବେ ମଧ୍ୟ ଆମର ବିଜ୍ଞ ଓ ବଡ଼ମାନଙ୍କଠାରେ ରହିଛି ।

୨୦।୮।୮୯

# ଭାରତର ଭୀରୁ ମହାନ୍‌ମାନେ

ମହାନ୍‌ମାନଙ୍କର ଅନୁମୋଦନ ସହିତ ସେହିମାନଙ୍କର ଉପସ୍ଥିତିରେ ମହାଭାରତରେ ପଶାଖେଳ ହେଲା ପଶାଖେଳରେ ନିଜ ଦେହର ଗହଣାଗୁଡ଼ାକରୁ ଆରମ୍ଭକରି ରାଜ୍ୟ, ସୈନ୍ୟସାମନ୍ତ ଗୋଟିକ ପରେ ଗୋଟିଏ ହୋଇ ସବୁ ବାଜି ବସିଲା, ଗୋଟିକ ପରେ ଗୋଟିଏ ହୋଇ ସବୁ ହାରିବାକୁ ପଡ଼ିଲା । ସାକ୍ଷାତ ଧର୍ମରାଜ ପଶା ଖେଳୁଥିଲେ, ତେଣୁ ସ୍ୱୟଂ ଧର୍ମ ମଧ୍ୟ ଇଚ୍ଛା କରିଥିଲେ ତାଙ୍କୁ କଦାପି ଅଟକାଇ ପାରିନଥାନ୍ତା ।

ରାଜ୍ୟ ଓ ଧନଦୌଲତ ହାରିବା ପରେ ଧର୍ମରାଜ ନିଜ ଭାଇମାନଙ୍କୁ ଗୋଟି ଗୋଟି କରି ବାଜି ରଖିଲେ ଏବଂ ବାଜିରେ ହାରିଲେ । ସେତେବେଳେ ତାଙ୍କ ମୁଣ୍ଡରୁ ଗମ ଗମ ହୋଇ ଝାଳ ବାହାରି ଯାଉଥାଏ, ଆଖିମାନେ ଉତ୍ତପ୍ତ ହୋଇ ଉଠୁଥାନ୍ତି, ତଥାପି ସିଏ ବାଜିରୁ ଉଠୁନଥାନ୍ତି । ବାଜି ପରେ ବାଜି ରଖୁଥାଆନ୍ତି ଏବଂ ହାରୁଥାନ୍ତି । ବୟଃପ୍ରାପ୍ତ ଭାଇଗୁଡ଼ାକ ସେଇଠି ତାଙ୍କ ପାଖରେ ବସିଥାଆନ୍ତି । ମୋଟେ କିଛି କହି ପାରୁନଥାନ୍ତି । ପ୍ରତିବାଦ କରିବା ତ ଆହୁରି ଅଧିକ ଦୂରର କଥା । ଭାଇମାନଙ୍କ ଭିତରେ ଅର୍ଜୁନ ଥାଆନ୍ତି, କ୍ରୋଧୀ ଭୀମ ମଧ୍ୟ ଥାଆନ୍ତି, – କେହି ହେଲେ କିଛି କହୁନଥାନ୍ତି । ସେମାନେ ନିଜର ସବା ବଡ଼ଭାଇଙ୍କ ସହିତ ସଭାକୁ କାହିଁ ଆସିଥିଲେ କେଜାଣି ? ଯଦି ବଡ଼ଭାଇ ଖେଳରେ ଜିତିଥାନ୍ତେ, ତେବେ, ଦୁର୍ଯ୍ୟୋଧନ ଜିତୁଥିବାରୁ ଯେପରି ସେପଟଟା ଅଭଦ୍ର ଓ ଅକୁଳୀନ ଭାବରେ ଉଲ୍ଲାସଗର୍ଜନ କରିବାରେ ଲାଗିଥିଲେ, ଏମାନେ ମଧ୍ୟ ଧର୍ମରାଜଙ୍କ ପକ୍ଷରୁ ଠିକ୍ ସେହିପରି ଅଭଦ୍ର ଓ ଅକୁଳୀନ ଭାବରେ ଗର୍ଜନ କରିଥାନ୍ତେ । ଦୁଇ ପକ୍ଷ ମଧ୍ୟରେ ଯେ ବିଶେଷ କୌଣସି ଫରକ ନାହିଁ, ଦୁହେଁ ଯେ ବିବେକ ଅପେକ୍ଷା ସଂସ୍କାରଗୁଡ଼ିକୁ ଅଧିକ ସମ୍ମାନ ଦିଅନ୍ତି ଓ ଗଧ ପରି ତାହାକୁ ହିଁ ମାନନ୍ତି, ସେମାନେ ତାହାର ପ୍ରମାଣ ଦେଇଥାନ୍ତେ ।

ଏହି ବୟସ୍କମାନଙ୍କର ବିବେକର ବୟସ ହୋଇ ସାରିଥିବା ସତ୍ତ୍ୱେ ତଥାପି ବିବେକ ଆସିନଥିଲା । ସେମାନଙ୍କର ସଂସ୍କାରଘରେ ସେପର୍ଯ୍ୟନ୍ତ ମଧ୍ୟ ନାହିକଟା ହୋଇନଥିଲା, ସେମାନେ ଜଣେ ଜଣେ ବ୍ୟକ୍ତି ହିସାବରେ ତଥାପି ଜନ୍ମଲାଭ କରିନଥିଲେ । ସଂସ୍କାରଗୁଡ଼ାକ କଟି କଟି ବିବେକ ବିକଶିତ ହୋଇ ଆସୁଥିବା ସଙ୍ଗେ ସଙ୍ଗେ ହିଁ ମଣିଷ ଭିତରେ ବ୍ୟକ୍ତି ଜନ୍ମଲାଭ କରେ । ଅର୍ଥାତ୍, ମଣିଷ ତା' ଭିତରେ ରହିଥିବା ସମ୍ମାନାସ୍ପଦ ଭଗବାନଙ୍କର ପରିଚୟ ପାଏ । ଜଣେ ମଣିଷର ଅସଲ ଜନ୍ମ

ସେତିକିବେଳେ ହୁଏ, ଅସଲ ଦାୟିତ୍ୱବୋଧ ସେତିକିବେଳେ ଆସେ । ନଚେତ୍ ବାହାରକୁ ଯେତେ ଦିଶୁଥିଲେ ମଧ୍ୟ ଓ ଯେତେ ଗଧଙ୍କ ପରି ଆଚାର ମାନୁଥିଲେ ମଧ୍ୟ ସିଏ ଭିତରେ ଭୀରୁ ହୋଇ ବସିଥାଏ ।

ତେଣୁ ମହାନ୍ ମହାନ୍ ଭାଇମାନେ ପାଟି ଖୋଲି ପାରିଲେ ନାହିଁ । ପିତାମହ ମଧ୍ୟ ପାଟି ଫିଟାଇଲେ ନାହିଁ । ସେମାନଙ୍କ ଭିତରର ଭୀରୁତା ହିଁ ସେମାନଙ୍କ ଜୀବନର ନୀତି-ନିର୍ଦ୍ଦେଶକ ହୋଇ ରହିଥିଲା । ବ୍ୟକ୍ତି ଜନ୍ମଲାଭ କରିନଥିଲା । ଏବେ ମଧ୍ୟ ଭାରତବର୍ଷ ସେହି ପରମ୍ପରାକୁ ଅକ୍ଷତ ରଖିଆସିଛି । ନିପଟ ଭୀରୁମାନେ ଆମ ସଭାମାନଙ୍କରେ ମହାନ୍ ହୋଇ ବସିଛନ୍ତି, – ଆଚାର ଅନୁସାରେ ପଶାଖେଳରେ ମାତିଛନ୍ତି । ନେତା ଓ ନାୟକ ହିସାବରେ ଖବରକାଗଜର କୋଳାହଳ ଭିତରେ କେତେ ଦର୍ପର ସହିତ ଯା'ଆସ କରୁଛନ୍ତି । କେହି ଧର୍ମରାଜଙ୍କ ପରି ଦିଶୁଛନ୍ତି, ପୁଣି କେହି ପିତାମହ ଅଥବା ଗୁରୁବରଙ୍କ ପରି ଦେଖାଯାଉଛନ୍ତି । ଭାରତବର୍ଷର ମହାନ୍ ସନ୍ତକ ହୋଇ ଶୋଭା ପାଉଛନ୍ତି । ମହା ଉଲ୍ଲାସରେ ପଶା ଖେଳୁଛନ୍ତି । ଜିତିଲେ ଉଲ୍ଲାସ-ଅହଙ୍କାରରେ ଗଗନ ପ୍ରକମ୍ପିତ କରାଉଛନ୍ତି ଏବଂ ହାରିଲେ ଆବଶ୍ୟକତାରୁ ଅଧିକ ପରିମାଣରେ ଘର୍ମାକ୍ତ ହୋଇ ପଡୁଛନ୍ତି । ବିବେକ ହରାଉଛନ୍ତି ବୋଲି ନୁହେଁ, ହାରିଗଲେ ବୋଲି ଘର୍ମାକ୍ତ ହୋଇ ପଡୁଛନ୍ତି । ଯଥାର୍ଥ ବ୍ୟକ୍ତିଟିଏ ସତେଅବା କୋଉଠିହେଲେ ନାହିଁ ।

୨୭/୮/୮୯

# ଜନ୍ମସିଦ୍ଧ ଅଧିକାର

ଲୋକମାନ୍ୟ ତିଳକଙ୍କର ଜନ୍ମ – ଶତାବ୍ଦୀକୁ ସରକାରୀ ଭାବେ ପାଳନ କରାଯାଉଥିବା ରାଜଧାନୀର କାନ୍ଥରେ ବାଡ଼ରେ 'ସ୍ୱରାଜ୍ୟ ମୋ'ର ଜନ୍ମସିଦ୍ଧ ଅଧିକାର' ବୋଲି ଏଡ଼େ ଏଡ଼େ ଛାପା ଅକ୍ଷରରେ ଛାପା ହୋଇ ମରାଯାଇଛି । ଏକଦା ଲୋକମାନ୍ୟ ତିଳକ ଏହି କଥାଟିକୁ କହିଥିଲେ । ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ସୋପାନ-ଆରୋହଣର ସୂଚନା ଦେଇ ସେ ଏଇକଥା କହିଥିଲେ । ଲୋକମାନ୍ୟ ତିଳକ ସ୍ୱରାଜ୍ୟ ମୋ'ର ଜନ୍ମସିଦ୍ଧ ଅଧିକାର ବୋଲି କହିଲାବେଳେ କ'ଣ ଖାଲି ନିଜ ପାଇଁ ସେହି ଅଧିକାରକୁ ଦାବି କରିଥିଲେ ? ସିଏ ଯେଉଁମାନଙ୍କୁ ଆହ୍ୱାନ କରି ଏହି ଦାବିଟିର ଘୋଷଣା କରିଥିଲେ, ସେମାନେ ଆମ ଦେଶରୁ ବିଗତ ଚାଳିଶିବର୍ଷ ହେଲା ଦୋକାନ ଉଠାଇ ଯାଇ ସାରିଲେଣି । ସ୍ୱରାଜ୍ୟର ସର୍ବପ୍ରଥମ ସୋପାନ ସ୍ୱରୂପ ସିଏ ଯେଉଁ ରାଜନୀତିକ ସ୍ୱାଧୀନତା ଦାବି କରିଥିଲେ, ଆମେ ସେହି ସ୍ୱାଧୀନତାକୁ କୋଉକାଳୁ ହାସଲ କରି ସାରିଲୁଣି ।

ସେତେବେଳେ ମଧ୍ୟ ଲୋକମାନ୍ୟ ତିଳକ ଭାରତରେ ବାସ କରୁଥିବା ସମସ୍ତଙ୍କ ଜନ୍ମସିଦ୍ଧ ଅଧିକାର ରୂପେ ସ୍ୱରାଜ୍ୟର ଦାବି କରିଥିଲେ । ଏହି ଦାବିରୁ ଏକ ସଂଗ୍ରାମର ଘୋଷଣା କରାଯାଇଥିଲା । ଦୀର୍ଘ ଚାଳିଶିବର୍ଷ ପରେ ଭାରତବର୍ଷରେ ତଥାପି ଯେ ସମସ୍ତଙ୍କ ଲାଗି ସ୍ୱରାଜ୍ୟ ସମସ୍ତଙ୍କ ପାଇଁ ଏଦେଶକୁ ଆସିଥିଲା, ଏହି କେତେଟା ବର୍ଷ ଭିତରେ ତାହାକୁ କେତେଟା ବର୍ଗ ବା କେତେଟା ବାଘ କେବଳ ନିଜପାଇଁ ମାଡ଼ି ବସିପାରିଲେ କିପରି ? କାହିଁକି ବା ମାଡ଼ି ବସିଲେ ? ଆମେ ସମସ୍ତେ ସେତେବେଳେ କ'ଣ କରୁଥିଲେ ? ଲୋକମାନ୍ୟ ତିଳକଙ୍କର ସ୍ମୃତି ପାଖରେ ବସି ବିବେକ ଓ ଅକଲ ରହିଥିବା ଭାରତବର୍ଷର ପ୍ରତ୍ୟେକ ବ୍ୟକ୍ତି ଏହି ପ୍ରଶ୍ନଟିକୁ ପଚାରି ପାରିବା ଉଚିତ ।

ସ୍ୱାଧୀନ ମଣିଷ ହେଉଛି ନିଜ ବିଷୟରେ ଯଥାର୍ଥ ସମ୍ମାନବୋଧ ରହିଥିବା ମଣିଷ । ସମ୍ମାନବୋଧ ରହିଥିବା ମଣିଷମାନେ ହିଁ ଆପଣାର ଉଚିତ କର୍ତ୍ତବ୍ୟଗୁଡ଼ିକୁ କରିପାରନ୍ତି ଓ ଆପଣାର ଉଚିତ ଅଧିକାରଗୁଡ଼ିକୁ ମଧ୍ୟ ଦାବି କରି ପାରନ୍ତି । ସେହି ସମ୍ମାନବୋଧକୁ ସମସ୍ତଙ୍କ ଲାଗି ସମ୍ଭବ କରିବା ନିମନ୍ତେ ଆମ ଦେଶରେ ଯେଉଁ ଅତ୍ୟାବଶ୍ୟକ ଭୂମିପରିବେଶଟି ସବାଆଗ ତିଆରି ହେବାକୁ ଥିଲା, ଆମ ଦେଶର ଉଚ୍ଚ ଉଚ୍ଚ ଭାଡ଼ିମାନଙ୍କ ଉପରେ ବସିଥିବା ଗୋଲାମମାନେ ତାହାକୁ ସ୍ୱାର୍ଥଗତ ବହୁ କାରଣରୁ ସମ୍ଭବ ହେବାକୁ ଦେଉନାହାନ୍ତି । କ୍ଷମତାର ଗୋଲାମ ଓ ପଇସାର ଗୋଲାମମାନେ ସତେଅବା ଏକାଠି ସଲାକରି ଏହି ସବାଆଗ କଥାଟିକୁ ମୋଟେ କରାଇ ଦେଉନାହାନ୍ତି । ଯେଉଁ ବିଦ୍ୟା ସତକୁସତ ଆଖି ଖୋଲାଇ ଦିଅନ୍ତା ଓ ଭୀରୁତାଗୁଡ଼ାକୁ ଦୂର କରିପାରନ୍ତା, ସେହି ବିଦ୍ୟାକୁ ମଧ୍ୟ ସେହି ଗୋଲାମମାନେ, ଉଭୟ ପ୍ରକାରର ଗୋଲାମମାନେ, ନିଜ ଘରେ ପୋଇଲୀ କରି ରଖିଛନ୍ତି । ସାହସ ଘରେ ସବୁଠାରୁ ଅଧିକ ମହରଗ ପଡ଼ିଛି ।

ହୁଏତ ସେହି ଗୋଲାମମାନେ ହିଁ ଫିସାଦ କରି ଛାପା ପ୍ରଚାରପତ୍ରଗୁଡ଼ାକୁ ପାଚେରି ଉପରେ ମାରି ଆମକୁ ଶୀତଳ କରି ରଖିବାକୁ ଇଚ୍ଛା କରୁଛନ୍ତି । ଆମକୁ ପଛମୁହାଁ କରି ରଖିବାକୁ ଇଚ୍ଛା କରୁଛନ୍ତି । ବାବୁମାନେ ଯୁଗେ ଯୁଗେ ପ୍ରଧାନତଃ ତାହାହିଁ କରି ଆସିଛନ୍ତି । ବାବୁଘର ଆଖଡ଼ାଗୁଡ଼ାକୁ ଭାଙ୍ଗିବା ଲାଗି ଯେ ସଚେତନ ମଣିଷମାନଙ୍କର ଏକ ଜନ୍ମସିଦ୍ଧ ଅଧିକାର ରହିଛି, ଆମ ବାଘମାର୍କା ନେତାମାନେ ଆମ ପାଖରୁ ସେହି କଥାଟିକୁ ଭୁଲାଇ ରଖିବାକୁ ଇଚ୍ଛା କରୁଛନ୍ତି ।

୩/୯/୮୯

# ଦେଶଭକ୍ତ ଓ ଦେଶଭକ୍ତି

ଯୋଉମାନେ ଶାସକ ହିସାବରେ ଗୋଟାଏ ଦେଶକୁ ଭୋଗ କରୁଥାନ୍ତି, ଦୃଷ୍ଟ ପୃଥିବୀରେ ସେହିମାନେ ହିଁ ସଚରାଚର ଦେଶଭକ୍ତିର କଥାମାନ କହିଥାନ୍ତି । ନିଜକୁ କୋଉ ଗରଜରେ ପଡ଼ି ସେମାନେ ସତେଅବା ଏକମାତ୍ର ଦେଶଭକ୍ତ ବୋଲି ମାନି ନେଇଥାନ୍ତି କେଜାଣି, ସେମାନଙ୍କଠାରୁ ଭିନ୍ନ ଆଖିରେ ଦେଖୁଥିବା ସମସ୍ତଙ୍କୁ ସେମାନେ ଯାଉଣୁ ଆସୁଣୁ 'ଦେଶଦ୍ରୋହୀ' ବୋଲି କହନ୍ତି ।

ତା'ର ଅସଲ କାରଣ ହେଉଛି ଯେ ଶାସକମାନେ ନିଜ ସହିତ ଦେଶକୁ ଅଭେଦ ବୋଲି ମାନି ନେଇଥାନ୍ତି । ସେମାନେ ରହିଛନ୍ତି ବୋଲି ଦେଶଟା ରହିଛି ବୋଲି ଭ୍ରମ କରୁଥାନ୍ତି । ଆପେ ସତେଅବା ସୂର୍ଯ୍ୟଚନ୍ଦ୍ର ରହିଥିବା ପର୍ଯ୍ୟନ୍ତ ଏହି ଦେଶଟାକୁ ଭୋଗ କରୁଥିବେ ବୋଲି ସେମାନେ କେଡ଼େ ଅଲିଅଳରେ ଆଣ୍ଠ କରି ଶିଖିଥାଆନ୍ତି । ସେମାନେ ଭୁଲ କରନ୍ତି । ଦେଶଟା ରହିଛି ବୋଲି ସେମାନେ ଅଛନ୍ତି – ଏଇଟା ହେଉଛି ଅସଲ କଥା । ଦେଶର ମଣିଷମାନେ ହିଁ ସେମାନଙ୍କୁ ନିର୍ବାଚିତ କରିଛନ୍ତି ବୋଲି ସେମାନେ ଶାସନରେ ଅଛନ୍ତି । ସେମାନେ ଆଜି ଅଛନ୍ତି, କାଲି ବାହାରିଯିବେ । ଦେଶ ରହିଛି, ଦେଶ ରହିଥିବ ।

ଗାଦିରେ ବସିଥିବା ଏହି ବିଶେଷମାନଙ୍କ ବ୍ୟତୀତ ଦେଶରେ ଅନେକ ଗୁଣ ଅଧିକ ମଣିଷ ଅଛନ୍ତି । ଏମାନଙ୍କ ଭିତରେ ମଧ୍ୟ ଦେଶକୁ ପ୍ରକୃତରେ ଭଲ ପାଉଥିବା ମଣିଷ ବହୁ ସଂଖ୍ୟାରେ ଅଛନ୍ତି । ଦେଶକୁ ଭଲ ପାଉଛନ୍ତି ବୋଲି ସେମାନେ ଦେଶ ବିଷୟରେ ଚିନ୍ତା କରୁଛନ୍ତି । ଦେଶକୁ ନେଇ ସେମାନଙ୍କର ସ୍ୱତନ୍ତ୍ର ବିଶ୍ୱାସମାନ ରହିଛି । ସେହି ବିଶ୍ୱାସରେ ଅବଶ୍ୟ ସାଧୁତା ରହିଛି । ଆମ ନିଜର ମଧ୍ୟ ସାଧୁତା ରହିଥିଲେ ଆମେ ଅନ୍ୟ ସମସ୍ତଙ୍କର ସାଧୁତାକୁ ଅବଶ୍ୟ ବୁଝିପାରନ୍ତେ । ମାତ୍ର, ଅନେକ ସମୟରେ ଗାଦିରେ ବସିଥିବା ମଣିଷମାନଙ୍କୁ ଏହି ସବୁକିଛିକୁ ଭୋଗ କରିବା ଏବଂ ବୋଲ ଭିତରେ ରହିବାର ନିଶା ଏପରି ଘାରି ରହିଥାଏ ଯେ, ସେମାନେ ନିଜ ଆଚରଣର ସାଧୁତାଟିକକୁ କେଡ଼େ ସୂତରରେ ହରାଇ ବସିଥାନ୍ତି । ଏବଂ ଅନ୍ୟର ସାଧୁତାକୁ ଚିହ୍ନି ପାରିବା ଲାଗି ତ ଆହୁରି ଆହୁରି ଅଧିକ ଅକଲ ଆବଶ୍ୟକ ହୁଏ ।

ଦେଶରେ ଯାହା ଯେମିତି ରହିଛି, ସେସବୁକୁ ସମର୍ଥନ କରିବା ଓ ସର୍ବଶ୍ରେଷ୍ଠ ବୋଲି କହିବା, ଆମେ ଏହାକୁ କଦାପି ଯଥାର୍ଥ ଦେଶଭକ୍ତି ବୋଲି କହି ପାରିବା ନାହିଁ । ଅସଲ ଦେଶଭକ୍ତ ଦେଶକୁ ବଦଳାଇବାର ସଙ୍କଳ୍ପ ରଖିଥାଏ । ଦେଶକୁ ଶାସନ କରିବା

ନାଆଁରେ ଦେଶକୁ ଭୋଗ କରିବା – ଏହାକୁ କଦାପି ଦେଶଭକ୍ତି ବୋଲି କୁହାଯିବ ନାହିଁ। ଭାରତବର୍ଷରେ ନେତା ଓ ଅମଲାମାନେ ଗତ ପ୍ରାୟ ଚାଳିଶବର୍ଷ ହେଲା ଶାସନ ନାମରେ ଦେଶଟାକୁ ପ୍ରଧାନତଃ ଭୋଗକରି ଆସିଛନ୍ତି। ସେମାନଙ୍କର ମୁହଁରୁ ଭୋଗନିଶାର ଲାଳଗୁଡ଼ାକ ଏବେ ମଧ୍ୟ ଶୁଖୁନାହିଁ । କାଳ ସେମାନଙ୍କୁ ବର୍ଜନ କରିବ ଓ ଆଗକୁ ଚାଲିଯିବ । ଦେଶ ମଧ୍ୟ ସେମାନଙ୍କୁ ବର୍ଜନ କରିବ ଓ ଆଗକୁ ଚାଲିଯିବ ।

ଅସଲ ଦେଶଭକ୍ତ ଦେଶକୁ ଭୋଗ କରେ ନାହିଁ। ଅସଲ ଦେଶଭକ୍ତ ଦେଶକୁ ବଦଳାଏ । ଦେଶର ମଣିଷର ସ୍ୱାର୍ଥକୁ ଉତ୍ତରୋତ୍ତର ଅଗ୍ରସର କରାଇନେବା ନିମନ୍ତେ ସେ ଆପଣାକୁ ବାର ବାର ବଞ୍ଚିତ କରିବାରେ ଲାଗିଥାଏ । ସେଇଥିରୁ ଅପାର ଆନନ୍ଦ ଲାଭ କରେ। ଅନେକ ସମୟରେ କାଲିର ଦେଶଭକ୍ତ ଅନ୍ୟ ଫିସାଦରେ ପଶି ଦେଶକୁ ଭୋଗ କରିବାକୁ ଆରମ୍ଭ କଲେ ନୂଆ ଦେଶଭକ୍ତମାନଙ୍କର ଏକ ଅନ୍ୟ ଶିବିର ଆପେ ଆପେ ତିଆରି ହେବାକୁ ଆରମ୍ଭ କରେ। ରଜାମାନେ ସେମାନଙ୍କୁ ସତେଅବା ଶୂଳୀରେ ଚଢ଼ାଇବେ ବୋଲି ତୋଡ଼ ଦେଖାଇ ବାହାରନ୍ତି। ତଥାପି ସେହି ନୂତନ ଶିବିରହିଁ ଜୟଲାଭ କରେ । ବାବୁମାନେ କଳଙ୍କି ଲାଗିଯାଆନ୍ତି।

୧୦/୯/୮୯

# ସଂକଟମୋଚନ ସରକାର

ଏଡ଼େ ବଡ଼ ଗୋଟାଏ ଦେଶର ସକଳ ବିଶ୍ୱାସ ଓ ସକଳ ସଂକଳ୍ପକୁ ଏ ଦେଶର ସରକାର ଖାଇ ଶେଷ କରିଦେଲା। ଏହି ସରକାର ବାମ ହୋଇ ପାରନ୍ତି, ଡାହାଣ ହୋଇପାରନ୍ତି, – ସେଥିରେ ମୋଟେ କିଛିହେଲେ ଯାଏଆସେ ନାହିଁ। ସରକାର ଗଢ଼ିବେ ବୋଲି ଏହି ଦେଶରେ ଯିଏ ଯେତେ ବାହାରିଲେ, ସେମାନେ ସମସ୍ତେ ଲୋକମାନଙ୍କର କଲ୍ୟାଣ କରିବାକୁ ଯାଇ ଲୋକମାନଙ୍କର ତଣ୍ଟିକୁ କାମୁଡ଼ି ଧରିଲେ । ଫାଶଗୁଡ଼ାକୁ ଏକାବେଳେକେ ଦିଲ୍ଲୀରୁ ଅଥବା ଭୁବନେଶ୍ୱରରୁ ବସାଗଲା । ସରକାର ଯେ ଏହି ଦେଶର ସେବକ ଭାବରେ ଅଛନ୍ତି, ଗଣତନ୍ତ୍ରର ସେହି ଅସଲ କଥାଟିକୁ ଭାରି ଜାକଜମକରେ କୁଆଡ଼େ ଭୁରୁଡ଼ାଇ ଦିଆଗଲା । ସରକାର ନଥିଲେ ଏ ଦେଶରେ ମୋଟେ କିଛି ହୋଇ ପାରନ୍ତା ନାହିଁ, ଏହିପରି ଗୋଟାଏ ମିଛ ପ୍ରତ୍ୟୟ ସତେଅବା ଆମ ସମସ୍ତଙ୍କ ମୁଣ୍ଡକୁ ପୋକ ପରି କାମୁଡ଼ି କରି ରହିଲା।

ଦାରିଦ୍ର୍ୟ ହଟାଇବେ ସେଇ ସରକାର। ଦିଲ୍ଲୀରୁ ବେତାବେତା ଯୋଜନା ଆସି କୁଆଡ଼େ ଆମ ଅଯୋଗ୍ୟମାନଙ୍କୁ ଯୋଗ୍ୟ କରିବ, ଅସମର୍ଥମାନଙ୍କୁ ସତେଅବା ଏକା

ବିଆଣରେ ସମର୍ଥ କରିଦେବ । ଆମ ଗାଆଁ ଚାଟଶାଳୀରେ ପିଲାଏ କେଉ ପାଠକୁ କେତେ ପଢ଼ିବେ, ସେକଥା ମଧ୍ୟ ସରକାର ଦିଲ୍ଲୀରେ ବାବୁମାନଙ୍କ ଦ୍ୱାରା ସ୍ଥିର କରାଇବେ ଏବଂ ଆମକୁ ଅଧିକରୁ ଅଧିକ ମୂର୍ଖ କରାଇବାରେ ଲାଗିଥିବେ । ରୋଜଗାର ଯୋଜନାଗୁଡ଼ାକ ସେଇ ଦିଲ୍ଲୀରୁ ହେବ । ଏଣେ ଆମ ନିଜ ଅଞ୍ଚଳରୁ ସବୁଯାକ ବଳ ଚାଲିଯିବାରେ ଲାଗିଥିବ । ସରକାରୀ ପୋଲିସ ଆମ ଘରେ ଆସି ନଜଗିଲେ ଆମ ପିଢ଼ାରେ ହୁଏତ କଖାରୁଟିଏ ବି ଫଳିବନାହିଁ । ସରକାରୀ ସାହେବମାନେ ପୋଲିସ ଜଗାଇ ହିମ୍ମତ ନଦେଲେ ଆମ ପିଲାଏ ଇସ୍କୁଲରେ ପରୀକ୍ଷା ବି ଦେଇପାରିବେ ନାହିଁ ।

ଆମ ଦେଶରେ ସରକାର ହିଁ ମୁଖ୍ୟତଃ ସବୁ ସଙ୍କଟର କାରଣ ହୋଇ ରହିଛି । ଯୋଉମାନେ ସରକାର ଚଳାଉଛନ୍ତି, ସେମାନେ ହିଁ ଦେଶର ସର୍ବପ୍ରଧାନ ସମସ୍ୟାରୂପେ ବାଟ ଉଗାଳି ରହିଛନ୍ତି । ନେତାମାନେ ତୁଚ୍ଛା ଗୋଟାଏ ଗୋଟାଏ ଅମଲା ପାଲଟିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଅମଲାମାନେ ହିଁ କ୍ରମେ ଆମ ଦେଶରେ ନେତା ହୋଇ ବାହାରିଲେଣି । ସମସ୍ୟାର ଅସଲ ଗଣ୍ଠିଗୁଡ଼ାକ ଯୋଉଠି ପଡ଼ିଛି ଓ ଆଇନ ପରେ ଆଇନ ତିଆରି ହେଲେ ମଧ୍ୟ ତଥାପି ଫିଟି ପାରୁନାହିଁ, ସେଠାରେ ସେହି କୂରମାନେ ହିଁ ଆମ ସଙ୍କଟମୋଚନର ଭୂମିକାରେ ଅବତୀର୍ଣ୍ଣ ହେଉଥିବା ପର୍ଯ୍ୟନ୍ତ ଏ ଦେଶର ସଙ୍କଟଗୁଡ଼ିକ ପ୍ରକୃତରେ କିପରି ଦୂର ହୋଇ ପାରିବ ?

ସରକାର କଚେରୀମାନଙ୍କରେ ଗୋଡ଼ ଲମ୍ବାଇ ବସିଛନ୍ତି । ଦେଶର ସବୁଠାରୁ ଅଧିକ ପଇସା ତାଙ୍କର ଅମଲାମାନଙ୍କୁ ଦରମା ଭୁଞ୍ଜାଇବାରେ ହିଁ ଖର୍ଚ୍ଚ ହେଉଛି । କଚେରି ଘରମାନଙ୍କରେ ମୂଷାମାନେ କେଉଦିନୁଁ ଗାତ ଖୋଳି ବେପାର ଆରମ୍ଭ କରିଦେଲେଣି । ଯିଏ ଏଣେ ପାଠୁଆ ବାବୁ ହୋଇ ଆମ ପାଇଁ ବଢ଼ିଆ ଯୋଜନାମାନ ଗଢୁଛି, ଆଦୌ କୌଣସି ସଙ୍କୋଚ ନକରି ସେଇ ନିଜ ସୂତରରେ ମୂଷା ପାଲଟି ଯାଉଛି ଏବଂ ସବୁକିଛିକୁ ନିଜର ଗାତ ଭିତରକୁ ବୋହି ନେଉଛି । ଯୋଜନାଘରେ ଖାଲି ଚଷୁ ଜମା ହୋଇଛି, ପିଲାଙ୍କର ପାଠପଢ଼ା ଘରେ ମଧ୍ୟ ଚଷୁ ଜମା ହୋଇଛି । ତେଣେ ନେତାମାନେ ଦେଶର ସବୁ ସଙ୍କଟକୁ ସତେଅବା ଗୋଟାଏ ତାଳିରେ ଦୂର କରିଦେବେ ବୋଲି ଆମ ବିଶ୍ୱାସୀମାନଙ୍କୁ ଭଳାଇବାରେ ଲାଗିଛନ୍ତି । ନେତାଙ୍କ ଭିତରେ ବି ମୂଷା ଆଦୌ କମ୍ ସଂଖ୍ୟାରେ ନାହାନ୍ତି । କାଗଜ କଲମରେ ସବୁଯାକ ସଙ୍କଟର ସମାଧାନ ହୋଇଯାଉଛି ।

ସଙ୍କଟଗୁଡ଼ିକର ସମାଧାନ ସରକାର କରି ପାରିବେ ନାହିଁ, ଲୋକମାନେ କରିବେ । ସାହସୀ ଲୋକମାନେ କରିବେ । ରାଜନୀତିକ ଯଥାର୍ଥ ଚେତନା ରହିଥିବା ଲୋକମାନେ ହିଁ ସଙ୍କଟମୋଚନର ପ୍ରକୃତ ବାଟଗୁଡ଼ିକୁ ବାହାର କରିପାରିବେ ।

୨୪/୯/୮୯

# ସ୍ନେହୀମାନଙ୍କର ଉପଦ୍ରବ

ଆମ ଦେଶରେ ସ୍ନେହୀମାନଙ୍କର ଉପଦ୍ରବ କାଳକ୍ରମେ ଏତେ ବେଶୀ ପ୍ରବଳ ହେଲାଣି ଯେ, ତା'ର ପ୍ରକୋପରେ ବିଚରା ସତ୍ୟ ମାଡ଼ ଖାଇ ଯାଉଛି । ସତ୍ୟର ସତକୁ ସତ ଆଉ ଅଣ୍ଟା ବା ମେରୁଦଣ୍ଡ ବୋଲି କିଛି ରହିଛି ବୋଲି ବିଶ୍ୱାସ ମଧ୍ୟ ହେଉନାହିଁ । ଆଗେ ବାଘ ମାଡୁଥିଲେ, ବିଲୁଆ ମାଡୁଥିଲେ; ଏବେ ଆମକୁ ଗୋଟାସୁଦ୍ଧା ଜଳକା କରିଦେଇ ଦେଶରେ ସ୍ନେହୀମାନେ ମାତିଲେଣି । ଦେଶଟାକୁ ଏକାବେଳେକେ ଜଙ୍ଗଲରେ ପରିଣତ କରିଦେଲେଣି ।

ଆମର ଏଠି ପୁତ୍ରସ୍ନେହୀ, କନ୍ୟାସ୍ନେହୀ, ଶିଷ୍ୟସ୍ନେହୀ ଓ ଭଗବତ୍‌ସ୍ନେହୀ, ଏହିପରି କେତେ କେତେ ସ୍ନେହୀ ବାହାରିଲେଣି । ଏହି ସ୍ନେହୀମାନେ ପ୍ରାୟ ସମସ୍ତେ କ୍ଷମତାରେ ରହିଛନ୍ତି ଏବଂ ସେହି କ୍ଷମତାର ବଳରେ ନିଜର ପୁତ୍ର, କନ୍ୟା ଅଥବା ଶିଷ୍ୟମାନଙ୍କ ଲାଗି ମଧ୍ୟ ପକ୍‌କା ମୂଳଦୁଆଟାଏ ତିଆରି କରିଦେଇ ଯିବାକୁ ପ୍ରାୟ ଅଣନିଃଶ୍ୱାସୀ ହୋଇ ଚେଷ୍ଟା କରୁଛନ୍ତି । ଧରାପଡ଼ି ଯାଉଛନ୍ତି, ତଥାପି ପ୍ରକୋପ ଛାଡୁ ନାହାନ୍ତି । ପିତାମାତାମାନେ ପୁତ୍ର ବା କନ୍ୟାମାନଙ୍କ ପାଇଁ ବାଟ କାଢ଼ି ଦେଉଛନ୍ତି । ଭାଗ୍ୟର ଅଫିସ୍‌ରେ ସେମାନଙ୍କ ଲାଗି ବେଳୁହୁଁ ଥରାଏ ଜମି ଲେଖିଦେଇ ନଗଲେ ସେମାନଙ୍କର ପ୍ରାଣଗାଡ଼ଟା ମୋଟେ ଥୟ ଧରି ରହି ପାରୁନାହିଁ । ରାଜନୀତିରେ ସେହି ସ୍ନେହର ଦୌରାତ୍ମ୍ୟ ଚାଲିଛି, ଚାକିରିବାକିରିରେ ସେହି ଦୌରାତ୍ମ୍ୟ ଚାଲିଛି, ପରୀକ୍ଷାଖାତା ଦେଖା ହେଲାବେଳେ ମଧ୍ୟ ସେହି ଦୌରାତ୍ମ୍ୟ ଲାଗିରହିଛି । ଦୁରାତ୍ମାମାନଙ୍କୁ ଏସବୁ ବିଷୟରେ ଆଉ ମୋଟେ ଲଜ୍ଜା ଲାଗୁନାହିଁ । ସମସ୍ତେ କରୁଛନ୍ତି ବୋଲି ଦ୍ୱାହିଦେଇ ସମସ୍ତେ ସେଥିରେ ଆସି ସାମିଲ ହୋଇ ଯାଉଛନ୍ତି ।

କୋଉମାନଙ୍କୁ ଏହି ରୋଗଟା ଅଧିକ କାମୁଡ଼ି ଧରିଛି, ସେକଥା ବାରି ବାହାର କରିବାର କୌଣସି ଉପାୟ ନାହିଁ । ରାଜନୀତିର ବାମ ଓ ଡାହାଣ ଉଭୟ ଗଳିରେ ସେହି ରୋଗଟା ପ୍ରାୟ ଏକ ନିୟମରେ ପରିଣତ ହୋଇ ସାରିଲାଣି । ବରିଷ୍ଠ ଓ କନିଷ୍ଠ ଉଭୟେ ପରମନିଷ୍ଠା ସହିତ ତା' ଭିତରେ ଯାଇ ପଶିଛନ୍ତି । ସେହି କାରଣରୁ ରାଜନୀତି ଚୂଲୀକୁ ଗଲାଣି, ଶିକ୍ଷା ଚୂଲୀକୁ ଗଲାଣି, ଶାସନଘରେ ଦୁଃଶାସନମାନେ ଛଉନୃତ୍ୟ ପ୍ରଦର୍ଶନ କରିବାରେ ଲାଗିଛନ୍ତି । ମୁକୁଟ ନାମରେ ମୁଖାଗୁଡ଼ାକୁ ପିନ୍ଧି ଭାଣ୍ଡମାନେ ସଭାରେ ଦେଶଟାକୁ ଆଲୁଅ କରିଦେବେ ବୋଲି ଭାଷଣୋଦ୍‌ଗାର କରୁଛନ୍ତି । ପ୍ରତିବାଦ କରିବାକୁ କେହି ନାହିଁ ।

ଭାରତରେ ପାରିବାରିକତାର ଏକ ପାରମ୍ପରିକ ଦୁର୍ବଳତା ରହିଛି । ପରିବାର ରୂପକ ଗାତଟିକୁ ଯେକୌଣସି ପ୍ରକାରେ ଭର୍ତ୍ତି କରିବା ନିମନ୍ତେ ଏଠି ମଣିଷମାନେ ଯେକୌଣସି ପ୍ରକାରର ପାପ ଓ ଅପରାଧ କରିବାକୁ ମଧ୍ୟ ମୋଟେ ଶଙ୍କୁ ନାହାନ୍ତି । ଧରା ନପଡ଼ିବାର ବାଟଟିକୁ ଭଲକରି ସୂତରାଇ ପାରୁଥିଲେ ଆଶଙ୍କାର ଆଉ କୌଣସି କାରଣ ବା କାହିଁକି ରହିବ? ଏହି ପରିବାରଲିପ୍ସୁତାକୁ ଏବେ ସ୍ନେହ ବୋଲି କୁହାଯାଉଛି । ପରିବାରଟାର ଅଧିକରୁ ଅଧିକ ବୃଦ୍ଧିସାଧନ କରିବାକୁ ସଫଳତା ବୋଲି କହି ପ୍ରଶଂସା କରାଯାଉଛି । ପରିବାର ପାଖରେ ସଂସାରର ସବୁ ସତ୍ୟ ଆସି ପ୍ରତିହତ ହୋଇଯାଉଛି । ପରିବାରକୁ ଯେ ଏକ ଯଥାର୍ଥ ସତ୍ୟର ଆଧାର ଉପରେ ଛିଡ଼ା ହେବାକୁ ପଡ଼େ ଓ ତେବେ ଯାଇ ପରିବାର ସମେତ ସମଗ୍ର ସଂସାରର ଯଥାର୍ଥ ମଙ୍ଗଳ ହୁଏ, ସେକଥା ମନେରଖିବାକୁ ଏବେ ତଥାକଥିତ ସ୍ନେହୀମାନେ ହୁଏତ ମୋଟେ ପସନ୍ଦ କରୁ ନାହାନ୍ତି । ଅସଲ ସ୍ନେହୀ ମଣିଷକୁ ମଣିଷ ସହିତ ଯୋଡ଼ି ପାରୁଥାନ୍ତା, ମାତ୍ର ଆମର ବିକୃତିଗ୍ରସ୍ତ ସ୍ନେହାତୁରତା ଆମ ସମସ୍ତଙ୍କୁ ନେଇ ଏକ ମ୍ଳେଚ୍ଛ ସଂସାରରେ ପରିଣତ କରିଦେଲାଣି ! ମ୍ଳେଚ୍ଛସଂହାର କରି ଏହି ଧରାକୁ ସମ୍ଭାଳିବା ପାଇଁ ଭଗବାନ ଆମ ଦେଶରେ ଏକ ନୂତନ ପ୍ରତିବାଦର ନେତୃତ୍ୱ ରୂପେ କେବେ ଅବତାର ଗ୍ରହଣ କରିବେ କେଜାଣି ?

୧/୧୦/୮୯

# ସାହିତ୍ୟେ ଚାଟୁକାରିତା

ଗୋଟାଏ ପ୍ରକାରର ଭକ୍ତିସାହିତ୍ୟରେ ରମଣର ସ୍ଥାନ ହେଉଛି ସବାଆଗ ଧାଡ଼ିରେ । ସେଥିରେ ପ୍ରେମକୁ ଅନେକ ସମୟରେ ତୁଚ୍ଛା ରମଣ ବୋଲି କୁହାଯାଏ । ଭଗବାନଙ୍କର ଦ୍ୱାହି ଦେଇ ନାରୀକୁ ସବାଆଗ ସତେଅବା ରମଣର ଏକ ବସ୍ତୁ ବୋଲି ସ୍ୱୀକାର କରି ନିଆଯାଏ । ଭଗବାନଙ୍କୁ ରମାରମଣ ଅଥବା ରାଧାରମଣ ଓ ଏପରିକି ସାଧାରଣ ଭାବରେ ନାରୀରମଣ ବୋଲି କହି ମଣିଷମାନେ କେତେ ଗଦ୍‌ଗଦ ହୋଇ ପଡ଼ୁଥାନ୍ତି । ପ୍ରେମକୁ ଦଉଡ଼ି ପାଏନାହିଁ, ତେଣୁ ରମଣକୁ ହିଁ ସବୁକିଛି ବୋଲି ଧରି ନିଆଯାଏ ।

ରମଣକୁ ଜୀବନରେ ସତେଅବା ଏକମାତ୍ର ରଣ ଓ ଏକମାତ୍ର ବିଜୟଲାଭ ବୋଲି ଭାବୁଥିବା କବି ଓ ଲେଖକମାନେ ଅନେକ ସମୟରେ ସବୁ ସମସ୍ୟାର ସମାଧାନ କରିଦେଲା ପରି ଆପେ ରମଣୀ ହୋଇ ପଡ଼ନ୍ତି । ସେମାନେ ସାହିତ୍ୟକୁ ତାମ୍ବୁଲପ୍ରାୟ ଜ୍ଞାନ କରନ୍ତି ଓ ହାତରେ ମଲ୍ଲୀମାଳଟିଏ ଧରି ଶ୍ୟାମଙ୍କର ମନ ତୋଷିବେ

ବୋଲି ବୁଲୁଥାନ୍ତି । ଏକ ବିଶେଷ ଉପାସନା-ସଂପ୍ରଦାୟରେ ନିଜକୁ ରମଣୀ ଭଳି ନସଜାଇଲେ ଅର୍ଥାତ୍ ଦେଖାଇ ନହେଲେ ଭଗବାନ କୁଆଡ଼େ ଆଦୌ ମଙ୍ଗନ୍ତି ନାହିଁ ବୋଲି ଏକ ଅପବାଦ ରହିଛି । ସେମାନେ ବେଶ କରିବା ଅପେକ୍ଷା ବେଶଟିଏ ହେବାକୁ ସତେଅବା ଅନେକ ଅଧିକ ଫଳଦାୟକ ବୋଲି ଅନୁଭବ କରନ୍ତି । ବେଶଟି ଭଲ ହୋଇଥିଲେ ସେମାନଙ୍କ ଆଖିକୁ ସାହିତ୍ୟ ବି ଭଲ ଦିଶେ । କାବ୍ୟକୁ ଯଥାସମ୍ଭବ ଅଧିକ ଅଳଂକୃତ କରି ଦେଖାଇବାର ପ୍ରବୃତ୍ତିରୁ ଆପଣାକୁ ଅଳଙ୍କୃତ କରି ଦେଖାଇ ହେବାର ଅନ୍ୟ ବୃତ୍ତିଟି ଆମ ସାହିତ୍ୟରେ କାହିଁକି କେବେଠାରୁ ଜନ୍ମଲାଭ କଲା, ଆମେ ମନ କଲେ ସେହି କଥାଟିର ଗବେଷଣା ମଧ୍ୟ କରିପାରିବା ।

ସେକାଳେ ଯେଉଁ ଶ୍ୟାମ ଥିଲେ, ଏକାଳେ ସେହି ଶ୍ୟାମ ନାହାନ୍ତି ସତ, ମାତ୍ର ଏକାଳରେ ମଧ୍ୟ ଶ୍ୟାମମାନେ ରହିଛନ୍ତି । ଏକାଳର ଆବଶ୍ୟକତା ଅନୁସାରେ ଶ୍ୟାମମାନେ ଅବଶ୍ୟ ଅଛନ୍ତି । ସେମାନେ ରମଣ ଲୋଡ଼ୁଛନ୍ତି । ତେଣୁ ରମଣୀ ହେବା ଲାଗି ଆମର ଏକାଳର ସାହିତ୍ୟରେ ଥୋକେ ଅନୁରୂପ ସାହିତ୍ୟିକ ମଧ୍ୟ ରହିଛନ୍ତି । ଅଥବା, ସମସ୍ତ ପ୍ରକାର ଉପାଦାନ ଖଞ୍ଜାଇ ଦିଆଯାଇ ସେମାନଙ୍କୁ ତିଆରି ମଧ୍ୟ କରାଯାଇଛି । ଯିଏ ଆପଣାର ଯଥାର୍ଥ ସମ୍ମାନଗୁଡ଼ିକ ବିଷୟରେ ହୁଏତ ସନ୍ଦିହାନ୍ ହୋଇଥିବାରୁ ଆପଣାର ଆସନଟାକୁ ବା କ୍ଷମତାଟାକୁ ହିଁ ସମ୍ମାନର ଅସଲ ସନ୍ତକ ବୋଲି ମଣୁଥାଏ ଓ ସେହି ଆସନଟା ଉପରେ ଅତ୍ୟନ୍ତ ଅସ୍ୱାଭାବିକ ଭାବରେ ଜକ ଜକ ଦିଶୁଥାଏ, ସେହି ପାଞ୍ଚଟା ପନ୍ଦରଟା ଅଞ୍ଚାବନ୍ଧ ଗୋପୁଙ୍କୁ ରମଣ କରିବାରେ କେତେ ପରିପୂର୍ଣ୍ଣତା ଅନୁଭବ କରେ । ବଜାରରେ ସେହିମାନଙ୍କର ଆବଶ୍ୟକତାକୁ ପୂର୍ଣ୍ଣ କରିବାକୁ ସାହିତ୍ୟରେ ସତେଅବା ଏପରି କେତେ ସାହିତ୍ୟିକ ମଧ୍ୟ ଭଗବାନଙ୍କର କୃପାରୁ ବାହାରନ୍ତି, ଯେଉଁମାନେ ରମଣୀପ୍ରାୟ, ମଙ୍ଗରାଜଘରଣୀ ଚମ୍ପାପ୍ରାୟ ଆଚରଣ କରିବାକୁ ମୋଟେ କୌଣସି ସଙ୍କୋଚ ଅନୁଭବ କରନ୍ତି ନାହିଁ । ସଭାଘରମାନଙ୍କରେ ଦୁଇପଟର ମିଳନ ହୁଏ, ସାହିତ୍ୟ ନାମରେ ଶିଙ୍ଗା ବାଜେ ଓ ନାନାବିଧ ପ୍ରାପ୍ତି ଓ ଅପପ୍ରାପ୍ତିମାନ ଅଜାଡ଼ି ହୋଇ ପଡୁଥାନ୍ତି । ସାହିତ୍ୟରେ ଚାଟୁକାରିକତାର ଜନ୍ମ ଏହିପରି ଏକ ସନ୍ଦର୍ଭରୁ, ଏହିପରି ଏକ ଦୂଷିତ ଗର୍ଭରୁ । ଅସଲ ସାହିତ୍ୟ ଲାଗି ତାହା ଅବଶ୍ୟ ଏକ ଆହ୍ୱାନ । ମାତ୍ର ଅସଲ ସାହିତ୍ୟିକ ସେଇଟା ସହିତ ଯୁଦ୍ଧ ଭିଆଇବାରେ କଦାପି ତା'ଶକ୍ତିର ଅପଚୟ କରିବ ନାହିଁ । ସିଏ ସାହିତ୍ୟ ପଟେ ରହିବ । ରମଣୀଟିଏ ହୋଇ ମହଲଯାକର ଚାବିନେହ୍ଣାଟାକୁ କାନିରେ ବାନ୍ଧି ଫୁଲେଇ ହେବା ଅପେକ୍ଷା ସିଏ ସାହିତ୍ୟର ମାଧ୍ୟମରେ ହୁଏତ ଫୁଲଗଛଟିଏ ଲଗାଇ ଫୁଟାଇବାକୁ ଅଧିକ ମନ କରିବ । ସେହିପରି କରି ସେ ତାର ଅସଲ ପ୍ରତିବାଦ ଜଣାଇବ ।

୮/୧୦/୮୯

# ସାହିତ୍ୟେ ଚାଟୁକାରିତା (୨)

ପଣ୍ଡିତ ଜବାହରଲାଲ ନେହରୁ ଜଣେ ରାଜନୀତିଜ୍ଞ ଥିଲେ, ଲେଖକ ମଧ୍ୟ ଥିଲେ। ସେ ରାଜନୀତି ଓ ସାହିତ୍ୟ ଉଭୟରେ ଅନୁରାଗୀ ଥିଲେ ଏବଂ ଉଭୟରେ କୁଶଳତା ହାସଲ କରିଥିଲେ । ଆପେ ରାଷ୍ଟ୍ରୀୟ ଶାସନର ବଡ଼ ପଦବୀରେ ଆସି ବସିବାପରେ ମଧ୍ୟ ଆପଣାର ସାହିତ୍ୟାନୁରାଗକୁ ଯଥାସମ୍ଭବ ସେଥିରୁ ଅଲଗା କରି ରଖିଥିଲେ । ତଥାପି, ସମ୍ଭବତଃ ସେହି କାଳରୁ ହିଁ ବହୁ ଲଘୁତରଙ୍କର ମାଧ୍ୟମରେ ସାହିତ୍ୟଘରେ ରାଜନୀତି ପଶିଲା । ରାଜନୀତିବାଲାମାନେ ମଧ୍ୟ ସାହିତ୍ୟଘରେ ଆସି ଥେଇ ଥେଇ ହେବାକୁ ମନ କଲେ ।

ଓଡ଼ିଶାର ତୁଙ୍ଗ ରାଜନୀତିରେ ଏପରି ଉତ୍ତୁଙ୍ଗ ଜଣେ ଦୁଇଜଣ ବାହାରିଲେ, ଯେଉଁମାନେ ସାହିତ୍ୟ ବି କରୁଥିଲେ । ଗୋଟାଏ ପଟେ ତୁଙ୍ଗ ହୋଇ ରହିଥିବାରୁ ଆରଟା ଭିତରକୁ ମଧ୍ୟ ତୁଙ୍ଗ ହୋଇ ପଶି ଆସିଲେ । ସାହିତ୍ୟରେ ସଙ୍ଗଠନମାନ ଆରମ୍ଭ ହେଲା, ସାହିତ୍ୟିକମାନଙ୍କୁ ମଧୁର ପଣା ଦେଇ ଫାଶ ଭିତରକୁ ଆମନ୍ତ୍ରଣ କରାଗଲା । ରାଜନୀତିବାଲା ବି ସମାନ ପାଉରେ ସାହିତ୍ୟ କରିପାରିବେ ବୋଲି ଏକ ନୂଆ ପ୍ରତ୍ୟୟର ପରମ୍ପରା କ୍ରମେ ଓଡ଼ିଶାରେ ସୃଷ୍ଟି ହୋଇଗଲା । ତେଣୁ ରଣପା ଚଢ଼ି ଏକାବେଳେକେ ସାହିତ୍ୟଘରେ ମଧ୍ୟ ଶୁଭକାନ୍ତ ଓ ଭଗବନ୍ତ ହୋଇ ବସି ପାରିବେ ବୋଲି ଏକ ଖଳ ବିଶ୍ୱାସ ମଧ୍ୟ ଜନ୍ମଲାଭ କଲା । ସାହିତ୍ୟିକମାନଙ୍କ ଭିତରୁ ବି ଥୋକେ ଆସି କେଡ଼େ ବାଗରେ ସେହି ଫାଶରେ ପଡ଼ିଗଲେ । ରାଜାମାନଙ୍କ ସାଙ୍ଗକୁ ବୟସ୍ୟ ପରି ଦେଖାଗଲେ । ସାହିତ୍ୟ ସତେଅବା ପ୍ରଚାର ବିଭାଗର ଏକ କଲ୍ୟାଣମଣ୍ଡପ ପରି ଦେଖାଯିବାକୁ ଆରମ୍ଭ କଲା । କପିଳା ଆଉ କାଣିଆ ଏକାଠି ମିଶି ସାହିତ୍ୟରେ ନୂଆ କୌରବପକ୍ଷ ତିଆରି ହୋଇଗଲା । ପାଣ୍ଡବ ବୋଲି ଏହି ମହୀରେ ମୋଟେ କେହି ନରହନ୍ତୁ, ତାହାହିଁ ସେମାନଙ୍କ ଧ୍ୟେୟ ହୋଇ ରହିଲା ।

ସାହିତ୍ୟ ଭିତରେ ଚାକିରିଆମାନେ ଥିଲେ, ଅଧ୍ୟାପକମାନେ ମଧ୍ୟ ରହିଥିଲେ । ଓଡ଼ିଶାରେ କେବଳ ସାହିତ୍ୟ ଉପରେ ଭରସା କରି ମୋଟେ ହଠାତ୍ ମହୋଦର ହେବା ସମ୍ଭବ ନୁହେଁ ବୋଲି ସେମାନଙ୍କର ପିଉ ଭିତରେ ରହିଥିବା ଅସାହିତ୍ୟକତା ସେମାନଙ୍କୁ ନିୟତି ହୋଇ ଖେଞ୍ଚିବାରେ ଲାଗିଥିଲା । ସେହିମାନେ ହିଁ ଚାଟୁକାର ହେଲେ, ଏବଂ ଚାଟୁକାରିତାରୁ ମହାଫଳମାନ ପାଇଲେ । ସେମାନଙ୍କର ପ୍ରାଦୁର୍ଭାବ ଫଳରେ ଓଡ଼ିଶାରେ ସାହିତ୍ୟକାରିତାର ସତେଅବା ସଂଜ୍ଞା ବଦଳିଗଲା ।

ବୃହଦାସନ ଦଣ୍ଡଧରମାନଙ୍କୁ କିଏ ଋତୁରାଜ ବୋଲି କହିଲା, ଆଉ କିଏ ବସନ୍ତ ଆସି ପହଞ୍ଚିଗଲା ବୋଲି ଭାଣ କରି କୋଇଲି ପରି ରାବ ଦେଲା । ଆଉ କେହି ଆପଣାର ଅଳସ ନିକାଞ୍ଚନରୁ ବାହାରି ଆସି ସେମାନଙ୍କ ଘରୁ କୁଲା ମାଗିଆଣି ତା' ଉପରେ ବଢ଼ି ପାରିଦେଲା । ଆଉ କେଉଁ ଚତୁରୀ ଓଡ଼ିଆ ସାହିତ୍ୟର ଏହି ଯୁଗଟାକୁ ସର୍ବାଦୌ ତାଙ୍କରି ଯୁଗବୋଲି କହି ହୁ' ହୁ' କରି ଜଳବରଷି ପକାଇଲା । ଏହିପରି କରିବା ଫଳରେ ଅର୍ଥ ମିଳିଲା, କାମ ମିଳିଲା – ଏକ ଅବାଗିଆ କାମାତୁରତାକୁ ସାହିତ୍ୟତୃଷା ବୋଲି ଅନୁଭବ କରାଗଲା । ଚାଟୁକାର ସାହିତ୍ୟକାରମାନେ ରଜାଘର ଭଣ୍ଡାରି ପରି ଦେଖାଗଲେ । ଯତ୍ ଯତ୍ ଚରତି ଶ୍ରେଷ୍ଠଃ ନ୍ୟାୟରେ ରଜା ପହଞ୍ଚିବା ଆଗରୁ ଭଣ୍ଡାରିମାନେ ଯାଇ ହାଜର ହୋଇଗଲେ । ଏବଂ ରଜା କୌଣସି କାରଣରୁ ଆସି ନପାରିଲେ ଭଣ୍ଡାରିମାନେ ହିଁ ସମବେତ ଜନତାକୁ ସେମାନଙ୍କୁ ହିଁ ରଜା ବୋଲି ବରଣ କରି ନେବାପାଇଁ ଅନୁନୟ କଲେ ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତୁମେ ଯଦି ନିଜେ ନାପିତଟିଏ ହେବାକୁ ଚାହୁଁଥିବ, ତେବେ ଏହି ତାପିତମାନଙ୍କୁ ଦେଖି ଈର୍ଷା କରିବ । ଚାଟୁକାର ସାଜି ନିଜ ସାହିତ୍ୟକୁ ଶୁଣ୍ଢିଘରେ ବନ୍ଧା ପକାଇ ଯଦି ତୁମେ ଏହି ଅନିତ୍ୟ ସଂସାରରେ ଏକ ଲଜ୍ଜାହୀନ ବହୁଗରୁତାର ତୁଣ୍ଡି ବାନ୍ଧି ବୁଲିବାକୁ ମନ କରୁଥିବ, ତେବେ ହୁଏତ ଚାଟୁକାରମାନଙ୍କ ଉପରେ ବିଗିଡ଼ିବ । ଏବଂ ଏହିପରି ବିଗୁଡୁ ବିଗୁଡୁ ବାବୁ ତୁମେ ମଧ୍ୟ ଦିନେ ନିଜେ ସେହି ଫାଶ ଭିତରେ ଯାଇ ବାନ୍ଧି ହୋଇଯିବ ।

୨୨/୧୦/୮୯

# ସଂଗ୍ରାମୀ କ'ଣ କରିପାରିବେ ?

ସ୍ୱାଧୀନତା ଆନ୍ଦୋଳନର ସଂଗ୍ରାମୀମାନେ କ'ଣ ସବୁ ପ୍ରକୃତରେ କରିପାରିବେ, ସେଦିନ ଆମେ କେତେଜଣ ସଂଗ୍ରାମୀ ମିଶି ସେଇକଥା ଆଲୋଚନା କରୁଥିଲୁ । ସତକୁ ସତ କିଛି କରିପାରିବା ଉଚିତ ବୋଲି ଆମେ ପରସ୍ପର ପାଖକୁ ଖବର ଦେଇ ଏକତ୍ର ହୋଇଥିଲୁ । ଦେଶର ସରକାର ତ କହୁଛନ୍ତି ଯେ ବ୍ରିଟିଶ ପ୍ରଭୁତ୍ୱ ଦେଶରୁ ଚାଲିଯିବା ଦିନଠାରୁ ଭାରତବର୍ଷରେ ସଂଗ୍ରାମ ସରିଗଲାଣି ଏବଂ ସେହି ସରକାରଙ୍କ ତରଫରୁ ହିଁ ଅଧିକାଂଶ ସଂଗ୍ରାମୀଙ୍କୁ ଭତ୍ତା ମିଳୁଛି । ମହରଗ ବଢ଼ିବା ସହିତ ସେହି ଭତ୍ତାର ପରିମାଣ ମଧ୍ୟ ସରକାରଙ୍କ ତରଫରୁ ବୃଦ୍ଧି ପାଉଛି । ବଦାନ୍ୟ ସରକାର ଯେପରି ଅଭାବୀ ସଂଗ୍ରାମୀମାନଙ୍କର ମନର ମୋହଗୁଡ଼ାକୁ ଭାରି ଭଲ ଭାବରେ

ବୁଝିପାରୁଛି । ଏବଂ ଏଣେ ବୟସ ତ ଗଲାଣି, ଏହି ବୟସରେ ଆମ ଦ୍ୱାରା ଆଉ କ'ଣ ହୋଇପାରିବ ?

ତଥାପି କଥାବାର୍ତ୍ତାରୁ ସେଦିନ କେତେକଥା ବାହାରିଲା । ସଂଗ୍ରାମୀ ମାନେ ସେମାନଙ୍କ ଆଖପାଖର ସ୍କୁଲ ଓ କଲେଜଗୁଡ଼ିକୁ ଯାଇପାରିବେ । ଆମ ଦେଶର ଛାତ୍ରଛାତ୍ରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମର କାହାଣୀମାନ କହିପାରିବେ । ଏହିସବୁ ଘଟଣା ଆମ ଦେଶରେ ପ୍ରକୃତରେ ଘଟିଥିଲା ବୋଲି ସେମାନଙ୍କ ମନରେ ପ୍ରତ୍ୟୟ ଆଣି ଦେଇପାରିବେ । ଏହି ଦେଶର ଅଧିବାସୀମାନେ ସତକୁ ସତ ଏତେସବୁ କଥା ଯେ କରିପାରିଲେ, ସେମାନେ ନିଜନିଜକୁ ଜଣେ ଜଣେ ସୈନିକର ଭୂମିକାରେ ରଖି ସେଗୁଡ଼ିକର ବର୍ଣ୍ଣନା କରିପାରିବେ । ପିଲାମାନେ ପ୍ରଶ୍ନ ପଚାରିବେ, ସେମାନେ ଉତ୍ତର ଦେବେ । ସ୍ୱାଧୀନତାର ପ୍ରାପ୍ତି ପଛରେ ଏକ ସଂଗ୍ରାମ ଅବଶ୍ୟ ରହିଥାଏ ଓ ସେହି ସଂଗ୍ରାମର ମଧ୍ୟ ଏକ ଇତିହାସ ଯେ ରହିଥାଏ, ଗତ ତିରିଶି ଚାଳିଶି ବର୍ଷର ଅଣନେତୃତ୍ୱ ଫଳରେ ଆମ ପିଲାଏ ସେତିକି ମଧ୍ୟ ଭୁଲି ସାରିଲେଣି ।

ସେମାନେ ଆଉଗୋଟିଏ କଥା ମଧ୍ୟ କରିପାରିବେ । ନିଜ ଭିତରେ କିଞ୍ଚିତ୍ ଅର୍ଥ ସଂଗ୍ରହ କରି ସେମାନେ ସେକଥା କରିପାରିବେ । ସ୍ୱାଧୀନତା ସଂଗ୍ରାମ ସମୟରେ ସଂଗ୍ରାମ ସଙ୍ଗୀତର ଆଦୌ କୌଣସି ଅଭାବ ନଥିଲା । ଜାତୀୟ କବି ବୀରକିଶୋର ଥିଲେ, ବାଞ୍ଛାନିଧି ଥିଲେ, ଗୋକୁଳାନନ୍ଦ ଥିଲେ, ଆହୁରି କେତେକେତେ ମଧ୍ୟ ଥିଲେ । ସେମାନଙ୍କର କେତୋଟି ବଛା ଗୀତକୁ ନେଇ ଆମେ ବହିଟିଏ ତିଆରି କରିବା । ପିଲାଏ ସେହି ବହିକୁ କିଣିବେ । ସଭାରେ ସ୍ୱାଧୀନତା ସଂଗ୍ରାମର କାହାଣୀ ଶୁଣୁଥିବାବେଳେ ସେମାନେ ଆମଠାରୁ ସେହି ଗୀତଗୁଡ଼ିକୁ ମଧ୍ୟ ଗାଇ ଶିଖିବେ । ଓଡ଼ିଶାର ଅଧିକାଂଶ ଶିକ୍ଷାଳୟରେ ଯେତେବେଳେ ପିଲାମାନେ ଖୁସି ହେଲା ମାତ୍ରକେ ଓ ମନ କଲା ମାତ୍ରକେ ସେ କାଳର ସେହି ହୃଦୟୋନ୍ମୋଚନକାରୀ ଗୀତଗୁଡ଼ିକୁ ଗାଇ ପାରିବେ, ସେତେବେଳେ କେବଳ ସେତିକି କଣ କମ୍ କଥା ହେବ ? ସେହି ପିଲାମାନଙ୍କର ତୁଣ୍ଡଉପରେ ବସି ଗୀତଗୁଡ଼ିକ ଇସ୍କୁଲରୁ ଗାଆଁ ଭିତରକୁ ଆସିବ, ଶୋଇଥିବା ମଣିଷର ନିଦ ଭଙ୍ଗାଇବ ।

ତା'ପରେ ଶିବିର । ପିଲାମାନଙ୍କୁ ନେଇ ଶିବିର ହେବ । ସେଠି ମଧ୍ୟ ଆମ ଦେଶ ସମେତ ପୃଥିବୀର ବିଭିନ୍ନ ଦେଶର ସ୍ୱାଧୀନତା ସଂଗ୍ରାମ ବିଷୟରେ କଥାମାନ ପଢ଼ିବ । ପୃଥିବୀର ସଂଗ୍ରାମକୁ ଦର୍ପଣ କରି ଭାରତବର୍ଷକୁ ଦେଖିବାର ଏକ ପ୍ରୟାସ କରାଯିବ । ବକ୍ତୃତା ହେବନାହିଁ, ତାଳି ବାଜିବ ନାହିଁ, – ମତର, ଦୃଷ୍ଟିର ଏବଂ

ଅନ୍ତର୍ଦୃଷ୍ଟିର ଆଦାନପ୍ରଦାନ ହେବ । ପ୍ରାୟ ନିୟମତଃ ଗ୍ରାମାଞ୍ଚଳରେ ଏହିସବୁ ଶିବିର ହେବ । ସଂଗ୍ରାମୀମାନେ ସେହି ସବୁ ଶିବିରରେ ଉପସ୍ଥିତ ରହିବେ । ସଂଗ୍ରାମ ଏପର୍ଯ୍ୟନ୍ତ ସରିନାହିଁ ବୋଲି ଯେଉଁ ଅଧିକ ସମର୍ଥ ବୟସ୍କମାନେ ତଥାପି ଅନୁଭବ କରୁଛନ୍ତି, ସେଇମାନେ ଶିବିରଗୁଡ଼ିକର ଆୟୋଜନ ଓ ପରିଚାଳନା କରିବେ । ଆମେ ଭରା ପାଇଲୁ ବୋଲି ଯେ ଆମର ମୁହଁ ବନ୍ଦ ହୋଇଗଲା, ଅନ୍ୟ ପ୍ରକାରେ ଆଚରଣ ଦେଖାଇ ଓ ଆପଣାକୁ ସକ୍ରିୟ ରଖି ସଂଗ୍ରାମୀମାନେ ସେହି ଅପବାଦ ଭିତରେ ଏକ ବ୍ୟତିକ୍ରମ ହୋଇ ରହିବେ । ଏକ ନୂତନ ଉଦ୍‌ବେଳନର କାରଣ ହେବେ ।

୨୯।୧୦।୮୯

# ଟଙ୍କାରେ ବନ୍ଧା ସମସ୍ତେ

ଏବେ ଦେଶର ରାଜନୀତିରେ ସମ୍ପତ୍ତିର ହିସାବ ଦାଖଲ କରିବାର ପାଳା ଚାଲିଛି । 'ତୁମ ସମ୍ପତ୍ତିର ତାଲିକା ଦାଖଲ କର' ବୋଲି ଇଏ ତାକୁ କହୁଛି ଓ ସିଏ ଯାକୁ କହୁଛି । ଥୋକେ ଆଦର୍ଶ ଦେଖାଇ ନିଜ ସମ୍ପତ୍ତିର ତାଲିକା ଦାଖଲ କରି ସାରିଲେଣି ଓ ଅନ୍ୟ ପଟକୁ ମଧ୍ୟ ଶୀଘ୍ର ତାହା ହିଁ କରିବାଲାଗି ଆହ୍ୱାନ ଦେଲେଣି । ଖାଲି ନେତାମାନେ ନୁହନ୍ତି, ନେତାମାନଙ୍କର ପୁଏ ମଧ୍ୟ ଖବରକାଗଜରେ ପ୍ରକଟ ହୋଇ ନିଜ ସମ୍ପତ୍ତିର ହିସାବ ଦେବାକୁ ବାହାରିଲେଣି । ଏଗୁଡ଼ାକ ମଧ୍ୟରୁ କେତେ ସତ କେତେ ଅସତ, ତାହା ଜାଣିବାର କୌଣସି ସାଧୁ ଉପାୟ ନାହିଁ । ଦରିଦ୍ର ଦେଶରେ ଯେଉଁମାନେ ସାଧାରଣଙ୍କ ତୁଳନାରେ ଅଧିକ ସମ୍ପତ୍ତି ଠୁଳ କରିଥାନ୍ତି ଓ ସମ୍ପତ୍ତି ଠୁଳ କରିଥାନ୍ତି ବୋଲି ରାଜନୀତି ଭିତରେ ପଶିଥାନ୍ତି, ସେମାନେ ପ୍ରାୟ ସମସ୍ତେ ଅସାଧୁ ଉପାୟରେ ସମ୍ପତ୍ତି କମାଇ ଥାଆନ୍ତି ଏବଂ ଅସାଧୁ ଉପାୟରେ ଉପାର୍ଜିତ ସମ୍ପତ୍ତିକୁ ତୁମେ କୋଉ ସାଧୁ ଉପାୟରେ ହିସାବ କରିପାରିବ କହିଲ !

ତେଣୁ କାଗଜରେ ଯେତିକି ସମ୍ପତ୍ତିର ଅସ୍ତିତ୍ୱକୁ ଦେଖାଇ ହେବ, ଏବେ ପ୍ରଥମ ମୁଥରେ ସେହି ସମ୍ପତ୍ତିର ଫର୍ଦ୍ଦଗୁଡ଼ାକୁ ସମସ୍ତେ ଫାଡ଼ି ଦେଖାଇ ଦେଉଛନ୍ତି । ପ୍ରଧାନତଃ ସମ୍ପତ୍ତିବାନ୍‌ମାନେ ହିଁ ପରସ୍ପରକୁ ସମ୍ପତ୍ତିର ତାଲିକା ପ୍ରକାଶ କରିବାକୁ ଆହ୍ୱାନ ଦେଇଛନ୍ତି । ଏମାନେ ସମସ୍ତେ ଟାଙ୍କ ଭିତରେ ବନ୍ଧା ପଡ଼ିଛନ୍ତି । ରାଜନୀତିକୁ ଟଙ୍କାଘରର ଖେଳନାରେ ପରିଣତ କରି ରଖିଛନ୍ତି । ଏବଂ ତାହାର ହିସାବ ଦିନ ଦି'ପହରେ ମଧ୍ୟ ଅନାଇଦେବା ମାତ୍ରକେ ମିଳି ଯାଉଛି । ରାଜନୀତିର ମାଧ୍ୟମରେ ଯଦି ଅଧିକରୁ ଅଧିକ ଟଙ୍କା କମାଇବା ଏମାନଙ୍କ ମତଲବ ଥିଲା, ତେବେ ଏମାନେ

ଦୋକାନ ନକରି ରାଜନୀତି ଭିତରକୁ ଆସିଲେ କାହିଁକି କେଜାଣି ? ଗୋବରଖାତରେ ପଶିବା ଲୋକ ରାଜନୀତି ଭିତରେ ପଶି ଗୋଟା ଘରଟାକୁ କାହିଁକି ମାରା କଲେ କେଜାଣି ?

ଟଙ୍କା ଭିତରେ ମୁହଁମାଡ଼ି ପଶିଥିଲା ପର୍ଯ୍ୟନ୍ତ ତୁମେ ଏଠି ରାଜନୀତିକ ନେତୃତ୍ୱ କଦାପି ଦେଇ ପାରିବ ନାହିଁ । ତୁମ ଭିତରେ ଟଙ୍କା ବ୍ୟତୀତ ଆଉ କୌଣସି ଯୋଗ୍ୟତା ଅଛି କି ନାହିଁ କହିଲ ! ତୁମେ ଯେଉଁ ଦଳର ବୋଲି ନିଜ ପରିଚୟ ଦେଉଛ, ସେହି ଦଳର ରାଜନୀତିକ ସ୍ୱତନ୍ତ୍ର ଆଭିମୁଖ୍ୟଟି ସହିତ ମଧ୍ୟ ତୁମର ସମ୍ୟକ୍ ପରିଚୟ ରହିଛି କି ? ନା, ହାତରେ ଗୁରାଏ ଟଙ୍କା ଅଛି ବୋଲି ତୁମେ ତାହା ଭିତରେ ଆସି ପଶିଯାଇଛି ଓ ଗୁହାଳ ଭିତରେ ଷଣ୍ଢ ବୋଲାଉଛ ? ଟଙ୍କାର ରାଜନୀତି ଦ୍ୱାରା ଏହି ଦେଶର ସ୍ୱାଧୀନତା ସଂଗ୍ରାମ ଲଢ଼ା ଯାଇନଥିଲା ଏବଂ ଟଙ୍କାକୁ ସବାବଡ଼ ମୂଷଳ କରି ଦେଖାଇ ତୁମେ ଏହାର ଉପସ୍ଥିତ ପଥରେ ତାହାକୁ କଦାପି ଆଗେଇ ନେଇ ପାରିବ ନାହିଁ । ତୁମେ ସମସ୍ତେ ହାରି ସାରିଲଣି ବାବୁ, ସମସ୍ତେ ହାରି ସାରିଲଣି । ବିଶ୍ୱାସର ଯାବତୀୟ ପରିମଳକୁ ତୁମେ ନଷ୍ଟ କରି ସାରିଲଣି । ବର୍ତ୍ତମାନ ନିଜ ଭିତରେ ଖୁବ୍ ପିଟାପିଟି ହୁଅ, ପରସ୍ପରକୁ ଧରା ପକାଅ - ଦେଶପାଇଁ ତାହା ଅତ୍ୟନ୍ତ ମଙ୍ଗଳକାରକ ହେବ ।

ତୁମେମାନେ ଯଦି ଆଗାମୀ ନେତୃତ୍ୱରେ ସତକୁ ସତ ଭାଗ ନେବାକୁ ମନ କରୁଥାଅ, ତେବେ ସବାଆଗ ତୁମେ ଟଙ୍କା ଭିତରୁ ବାହାରି ଆସ । ଟଙ୍କା ବଳରେ ଏଠି ରାଜନୀତି କରିବାର ଭ୍ରମ ଭିତରୁ ବାହାରିଆସ । ତେବେଯାଇ ଦେଶର ଆଗାମୀ ବିପ୍ଳବରେ ତୁମେ ଆଦୌ କୌଣସି କାମରେ ଲାଗି ପାରିବ । ଆଗ ଆମ ବିଶ୍ୱାସର ଯୋଗ୍ୟ ହୁଅ । ତୁମେ ସମସ୍ତେ ଏହି ଦେଶର ବିଶ୍ୱାସକୁ ହରାଇ ବସିଛ ବୋଲି ଆଗ ଆପଣା ପାଖରେ ସ୍ୱୀକାର କଲେ ତେବେ ହୁଏତ ଏଠି ଅସଲ ସ୍ୱୀକୃତିର ଭାଜନ ହେବ । ଯଥାର୍ଥ ନେତୃତ୍ୱର ଯୋଗ୍ୟ ହୋଇପାରିବ ।

୫/୧୧/୮୯

# ତଳୁ ନା ଉପରୁ ?

ଉପରବାଲା କହୁଛନ୍ତି, ଦେଶଟା ଏଣିକି କୁଆଡ଼େ ଏକାବେଳେକେ ତଳୁ ତିଆରି ହେବ । ଇଞ୍ଜିନିଅର ତା' ଅଞ୍ଚଳର ଜିଲ୍ଲା ପ୍ରତିନିଧିଙ୍କୁ ଲାଞ୍ଚ ଦେଉଛି । ମାସକୁ ମାସ ସେତିକି ଭରଣା କରି ନ ପାରିଲେ ସିଏ ବି ବିଚରା ତା' ସୁଖପାଇଁ ଦି' ପଇସା

ଯାଡ଼ୁ ସାତ୍ରୁ କରି କମାଇ ପାରୁନାହିଁ । ଡାକ୍ତର ବାପୁଡ଼ା ମଧ୍ୟ ତା' ବଦଳିକୁ ବନ୍ଦ କରିବା ସକାଶେ ତା' ସ୍ଥାନୀୟ ପ୍ରତିନିଧିଙ୍କୁ ହାତଗୁଞ୍ଜା ଦେଇ ଖୁସି କରି ରଖିଛି । ଅଧ୍ୟାପକ ତା ସ୍ଥିତିଟିକୁ ମଜବୁତ କରି ରଖିବ ବୋଲି ଉଚ୍ଚ କର୍ମକର୍ତ୍ତାମାନଙ୍କୁ ତା' କଲେଜର ସଭାମାନଙ୍କରେ ଗଜ କରି ବସାଇବାକୁ ଆଣୁଛି ଓ ସେମାନଙ୍କର ସ୍ତୁତି କରି ଉତ୍ସବସଭାକୁ କମାଇ ଦେଉଛି । ସାହିତ୍ୟିକ ବି ମୋଟେ ପଛରେ ପଡ଼ିନାହିଁ । ସାହିତ୍ୟ ନାଆଁରେ ରାଜାମାନଙ୍କର ପ୍ରସିଦ୍ଧି ଗାନ କରି ସିଏ ସେହି ରାଜାମାନଙ୍କର ଅନୁଗ୍ରହରେ ଉଚ୍ଚ ଚଉକିରେ ଯାଇ ବସି ପାରିବ ବୋଲି ମନରେ କେତେ ଦମ୍ଭ ବାନ୍ଧୁଛି ଓ ଦମ୍ଭ ବାନ୍ଧି ଫଳଲାଭ କରୁଛି । ତୁମେ ଏଗୁଡ଼ାକୁ ଉପରୁ ନା ତଳୁ କୋଉଆଡ଼ୁ ସୁମାରି କରିବ, ଉପର ନା ତଳ କୋଉଆଡ଼ୁ ଏଗୁଡ଼ାକର ଗୁଣ ଗାଇବ ?

ସଂସାରକୁ, କାଳକୁ ଭୁତାଇ ରଖିବାର ଏହି ଯେଉଁ ବିଶେଷ ସାହସଟି, ଏଇଟା ଭାରତବର୍ଷରେ ଆଗ ଉପରଆଡ଼ୁ ଆସିଲା । ଭୂତାଇବା ମଣିଷମାନେ ଆଗେ ବି ଥିଲେ,– ଗୋଠ ଭିତରେ ସେମାନେ ଓଲିଆ ଗାଈ ହୋଇ ରହିଥିଲେ । ଲୁଚି ଲୁଚି ରହିଥିଲେ । ନିଜର ଲାଜଗୁଡ଼ାକ ଉପରେ ଲୁଗା ଘୋଡ଼ାଇ ରଖିଥିଲେ । ବିଗତ ଚାଳିଶି ବର୍ଷ ଭିତରେ ଦେଶରେ ନ୍ୟାୟଗୁଡ଼ାକ ଏପରି ଭାବରେ ବଦଳି ବଦଳି ଗଲା ଯେ, ଆଉ କାହାକୁ କୋଉ ବିଷୟରେ କୌଣସି ଲାଜ ମୋଟେ ଲାଗିଲା ନାହିଁ । ତେଣୁ ଯାହା ଲୁଚାରେ କରାଯାଉଥିଲା, ତାହା ଉଜ୍ଜ୍ୱଳ ଆଲୋକରେ ହୋଇପାରିଲା । ଲାଞ୍ଚ ମାଗିବା ଲୋକର ଲାଜ ଚାଲିଗଲା, ଲାଞ୍ଚ ଦେଉଥିବା ଲୋକର ଲାଜ ବି ଚାଲିଗଲା । ମାଷ୍ଟର ପାଠ ପଢ଼ାଇଲା ନାହିଁ, ଖାତା ଦେଖିଲା ନାହିଁ, ନିଜ ଘରେ ପିଲାଙ୍କୁ ନେଇ ଗୋରୁ ଗୁହାଳ ବସାଇଲା ଓ ଧନପତି ହେଲା । ମାତ୍ର ଏସବୁ କରି ତାକୁ ଲାଜ ମାଡ଼ିଲା ନାହିଁ । ଏହିପରି ଭାବରେ ହାଉଆଟା ଭିତରୁ ମଧ୍ୟ ଲାଜନାମକ ବସ୍ତୁଟି ବିଦାୟ ନେଇ ଚାଲିଗଲା । ଉପରର ଦୁଷ୍ଟ ଢେଉଗୁଡ଼ାକ ତଳଯାଏ ମାଡ଼ି ଆସିଲା । ତଳଟା ଅଧିକରୁ ଅଧିକ ପରିମାଣରେ ଅନୁଗୃହୀତ ହେବାକୁ ହିଁ ଭାଗ୍ୟ ବୋଲି ମଣିଲା ।

ତଳଟାକୁ ନା ଉପରଟାକୁ, କୋଉଟାକୁ ତୁମେ ଆଗ ବଦଳାଇବ କହିଲ । ତଳଟା ନା ଉପରଟା, କୋଉଟା ଆଗ ବଦଳିଲେ ଯାଇ ସତକୁ ସତ କିଛି ବଦଳିବ ? ଉପରବାଲା ଉପରେ ରହି ସବୁତକ ଚିତା କାଟି ଯେପର୍ଯ୍ୟନ୍ତ ତଳଟାକୁ ଅବଶ୍ୟ ବଦଳାଇବେ ବୋଲି ହୁରି କରୁଥିବେ, ସେପର୍ଯ୍ୟନ୍ତ କୁରତାଗୁଡ଼ାକ କଦାପି ଯିବନାହିଁ । ତଳଟା ମଧ୍ୟ ଯେପର୍ଯ୍ୟନ୍ତ ଉପରବାଲାଙ୍କ ଅନୁଗ୍ରହକୁ ଅନାଇ ରହିଥିବ, ସେପର୍ଯ୍ୟନ୍ତ ତଳଟା ହୀନମାନ ହେବାରେ ଲାଗିଥିବ । ଗଣତନ୍ତ୍ର ଶାସନରେ, ଅର୍ଥାତ୍ ଯେକୌଣସି

ପ୍ରକାରର ସଭ୍ୟ ଶାସନରେ ତଳ ଆପଣାର ତାତ୍ପର୍ଯ୍ୟଗୁଡ଼ିକ ବିଷୟରେ ସଚେତନ ହେଲେ ଯାଇ ବର୍ତ୍ତମାନର ବିଷବୃକ୍ଷଲା ଗୁଡ଼ାକର କବଳରୁ ତାକୁ ନିଷ୍କୃତି ମିଳିବ । ଉପର ଯେତେ ଉପରେ ଥାଉ ପଛକେ, ତାକୁ ଯେ ତଳ ଉପରେ ଅବଶ୍ୟ ନିର୍ଭର କରି ରହିବାକୁ ହେବ, ତଳଠାରେ ସେହି ସଚେତନତାର ଉଦୟ ଘଟିଲେ ଯାଇ ଅନ୍ଧାର ଯିବ । ମଣିଷର ତଣ୍ଟିକୁ ଚାପି ରଖିଥିବା ଛଇଗୁଡ଼ାକର ସମାପ୍ତି ଘଟିବ । ତଳଟି ଖୁଣ୍ଟ ପରି କାର୍ଯ୍ୟ କରିବ ଏବଂ ସେହି ଖୁଣ୍ଟକୁ ଆଶ୍ରା କରି ଉପରେ ବସିଥିବା ବଡ଼ମାନେ ସେତେବେଳେ ଯାଇ ଭଦ୍ର ହେବେ, ବିନୟ ଶିଖିବେ, ନିମକସଚ୍ଚା ହେବାକୁ ବାଧ୍ୟ ହେବେ ।

୧୨/୧୧/୮୯

# ସେହି ପୁରୁଣା ଗୁହ

ଭାରତବର୍ଷରେ ଏକ ନୂଆ ନିର୍ବାଚନ ହେଲା । ନିର୍ବାଚନରେ ଯେଉଁମାନେ ଜିତିଲେ, ସେମାନେ ପୁରୁଣା ଗୁହାଳଟାକୁ ଗୋଟାସୁଦ୍ଧା ଭାଙ୍ଗିଦେବେ ବୋଲି କେଡ଼େ ବିଶ୍ୱାସୀ ବନ୍ଧୁ ପରି କହିଥିଲେ । ଭାରତବର୍ଷର ଲୋକମାନେ ସେମାନଙ୍କୁ ଜିତାଇଲେ ବୋଲି ସେମାନେ ଜିତିଲେ । କ୍ଷମତାକୁ ଆସିଲେ, ଆସନରେ ବସିଲେ । ଦାୟିତ୍ୱଘରେ ପଶିଲେ । ପୁରୁଣା ଗୁହାଳଟା ଏକାବେଳେକେ ଭାଙ୍ଗିଗଲା ପରି ମନେହେଲା । ପୁରୁଣା ଗୋପାଳମାନେ ଘରକୁ ବାହୁଡ଼ି ଆସିଲେ । ମାତ୍ର, ଗୁହାଳଟା ସିନା ପୁରୁଣାରୁ ନୂଆ ହେଲା ଓ ପୁରୁଣା ଗୋପାଳମାନଙ୍କର ସ୍ଥାନରେ ନୂଆ ଗୋପାଳମାନେ ନିଯୁକ୍ତି ହେଲେ, କୋଉ କାଳରୁ ପ୍ରାୟ ବିଣ୍ଡି ହୋଇ ଏଡ଼େ ବହଳରେ ଓ ପ୍ରବଳ ବହପରେ ଗୋଟାସୁଦ୍ଧା ବୋଳ ବସି ରହିଥିବା ଗୁହଗୁଡ଼ାକ ପୁଣି କୋଉଦିନ ସଫା ହେବ ?

ଗାଆଁ ନିର୍ବାଚନ ସରିବା ପରେ ଏବେ ସାହୀ ନିର୍ବାଚନ ହେଉଛି । ସାହୀ ନିର୍ବାଚନରେ କୋଉମାନେ ନିର୍ବାଚନ ଲଢ଼ିବେ, କେଉଁମାନଙ୍କ ନାଁ ତାଲିକାରେ ଉଠିବ, ସେକଥା ସାହିରେ ଠିକ୍ ହେଉନାହିଁ, – ସେଗୁଡ଼ାକ ରାଜଧାନୀର ଡିପୋମାନଙ୍କରେ ତିଆରି ହେଉଛି । ଏହି ଡିପୋଗୁଡ଼ାକର ସବାବଡ଼ କର୍ତ୍ତାମାନେ ତେଣେ ଇନ୍ଦ୍ରପ୍ରସ୍ଥରେ ବସିଛନ୍ତି । ଅସଲ ଓ ଚୂଡ଼ାନ୍ତ ଗଣାପୋଛା ସେହିଠାରେ ହିଁ କରାଯାଉଛି । ପୁରୁଣା ଗୋପାଳମାନଙ୍କ ପରି ନୂଆ ଗୋପାଳମାନଙ୍କର ମଧ୍ୟ ସଦର ମହକୁମା ସେଇ ଦିଲ୍ଲୀରେ

ରହିଛି । ସେଠାରେ ମୋଟା ନେତାମାନେ ରହିଛନ୍ତି । ସାହାର ଦରମୋଟାମାନେ ତାଲିକା ମୁଣ୍ଡାଇ ଦିଲ୍ଲୀ ଯାଉଛନ୍ତି । ଅସଲ ହୁକୁମନାମାଟି ସେହିଠାରୁ ବାହାରୁଛି । ସାହିରେ ବାସ କରୁଥିବା ମଣିଷମାନେ କିଛି ନିଷ୍ପତ୍ତି କରୁନାହାନ୍ତି । ରାଜନୀତିକୁ ଆମ ଦେଶରେ ବିଗତ କେତେବର୍ଷ ହେଲା ପ୍ରାୟ ମାମଲତକାରମାନଙ୍କ ହାତରେ ଛାଡ଼ି ଦିଆଯାଇଛି । ଗୋଟାଏ ଦେଶର ଚଳନ୍ତି ଭାଗ୍ୟକୁ ଉପରେ ବସିଥିବା ଭାଲୁମାନେ ନିୟନ୍ତ୍ରଣ କରୁଛନ୍ତି । ଓଧମାନେ ହିଁ ଗଡ଼ିଆର ନେତୃତ୍ୱ ନାମକ ମାମଲାକୁ ତୁଲାଇବାରେ ଲାଗିଛନ୍ତି । ଏହି ଓଧମାନେ ଆମ ଦେଶର ରାଜନୀତି ସମେତ ଯାବତୀୟ ନୀତି ଓ ରୀତିକୁ ପ୍ରଧାନତଃ ନିଜ ଉଆସଗୁଡ଼ାକର ନ୍ୟାୟ ଦ୍ୱାରା ପ୍ରଦୂଷିତ କରିଆସିଛନ୍ତି । ଯେଉଁମାନେ ଆଣ୍ଠିଏ ଆଣ୍ଠିଏ ହଗି ଗୁହାଳଟାକୁ ଏକ ଗୁହଗାଡ଼ିଆରେ ପରିଣତ କରି ଦେଇଛନ୍ତି, ରାଜନୀତି ନାମକ ଏ ପଲଟିକୁ ପ୍ରାୟ ପାରମ୍ପରିକ ଭାବରେ ସେହିମାନେ ହିଁ ଅକ୍ତିଆର କରି ରଖିଛନ୍ତି । ସେହି ପଲରେ ପୁରୁଣା ଗୋପାଳମାନଙ୍କର ଯେଉଁଭଳି କରାମତି ରହିଛି, ଆମ ନୂଆ ଗୋପାଳମାନଙ୍କର ମଧ୍ୟ ସେହିପରି କରାମତି ରହିଛି, ଭାଗ ରହିଛି ।

ଏହି ପରମ୍ପରା ମଧ୍ୟ ବଦଳିବ । ରାଜନୀତି ଉପରୁ ତଳକୁ ଖସିବ ନାହିଁ। ତଳୁ ଉପରକୁ ଉପରକୁ ଯିବ । ଉପରବାଲା ତଳ ଉପରେ ମାମଲତକାରୀ କରିବେ ନାହିଁ, ତଳହିଁ ଉପରକୁ ନିୟନ୍ତ୍ରଣ କରିବ । ଆମର ନୂଆ ସାଆନ୍ତମାନେ କ'ଣ ସତରେ ଏତେଦୂର ଯାଏ ଯାଇ ପାରିବେ ? ଏତେ ପର୍ଯ୍ୟନ୍ତ ଯାଇପାରିବା ଲାଗି ପ୍ରକୃତରେ ଯେଉଁ ସାଧୁତା ନିତାନ୍ତ ଆବଶ୍ୟକ, ସେମାନେ କ'ଣ ସେତେ ପର୍ଯ୍ୟନ୍ତ ସାଧୁ ହେବାକୁ ସାହସ କରିପାରିବେ ? ଚାଳିଶି ବର୍ଷର ଭାରତୀୟ ରାଜନୀତିରେ ପାଗ ହୋଇ ଭାରତର ବାମପନ୍ଥୀମାନେ ମଧ୍ୟ କାଳକ୍ରମେ ସାଆନ୍ତ ହୋଇ ସାରିଲେଣି । ଭାରତର ସଂସ୍କୃତିକ ମାଟିରେ ସାଆନ୍ତ ହେବାର ଜୀବାଣୁଗୁଡ଼ିକ ସମ୍ଭବତଃ ଅତିମାତ୍ରାରେ ରହି ଯାଇଛି । ତାହାକୁ ନିର୍ମୂଳ କରିବାର ଶକ୍ତି ଖାଲି ରାଜନୀତି କରୁଥିବା ଅର୍ଥାତ୍ ଖାଲି କ୍ଷମତାରେ ଯାଇ ବସିବାକୁ ଜୀବନର ପାବନପ୍ରସଙ୍ଗ ବୋଲି ଗ୍ରହଣ କରି ନେଇଥିବା ମନ୍ତ୍ରୀ ଓ ଉତ୍ତେଜିତମାନଙ୍କ ଭିତରେ ମୋଟେ ନାହିଁ । ସେହି ଶକ୍ତି ଜନସାଧାରଣଙ୍କର ଅଛି । ଜନସାଧାରଣହିଁ ଏହି ସାଆନ୍ତମାନଙ୍କୁ, ପୁରୁଣା ଓ ନୂଆ ଉଭୟ ଗୁହାଳର ଗୋପାଳମାନଙ୍କୁ ଆହୁରି କେତେଥର ଚେଙ୍ଗେ ଚେଙ୍ଗେ ଦେଲେ ଯାଇ ହୁଏତ ଆମ ବାବୁମାନେ ଅସଲ ଘରଟିକୁ ଫେରି ଆସିବେ । ଜନତନ୍ତ୍ରର ପ୍ରତିଷ୍ଠା ହେବ । ନେତାଙ୍କ ମର୍ଜି ଅନୁସାରେ ନୁହେଁ, ନାଗରିକଙ୍କର ଇଚ୍ଛା ଅନୁସାରେ ହିଁ ନଗର ଚାଲିବ ।

୨୦/୧/୯୦

# ସେମାନେ କୁଆଡ଼େ ଗଲେ ?

ଆଜି ସିନା ମାମଲତ ଅଲଗା ହୋଇଗଲା, ମାତ୍ର କାଲି ସେମାନେ କ୍ଷମତାରେ ଥିଲେ । ସଭ୍ୟ ଦେଶମାନଙ୍କରେ ଯେଉଁମାନେ ଶାସନରେ ଥାଆନ୍ତି, ସେମାନେ ଶାସନକୁ ମୂଳତଃ ଏକ ଦାୟିତ୍ୱ ବୋଲି ବୁଝନ୍ତି । ସବାଆଗ ସେହି ଦାୟିତ୍ୱଟିକୁ ତୁଲାନ୍ତି । ଆମ ଦେଶର ପୁଙ୍ଗବମାନେ ସେଭଳି କରନ୍ତିନାହିଁ । ଶାସନ ତେଣେ ନିତାନ୍ତ ମ୍ଳେଚ୍ଛ ହୋଇ ପଡ଼ିଥାଏ, ମାତ୍ର ମହତ୍ତ୍ୱମଣିମାନେ ସଭାରେ ବିହରଣ କରିବାରେ ଲାଗିଥାନ୍ତି । ସେମାନେ ସାହିତ୍ୟ ଭିତରେ ପଶନ୍ତି, ସଂସ୍କୃତି ଭିତରେ ପଶନ୍ତି-କେତେକେତେ ସଭାକୁ ଡକାହୋଇ ଯାଆନ୍ତି । ସେମାନଙ୍କର ପ୍ରୀତ୍ୟର୍ଥେ ସରକାର ଘରେ ସଂସ୍କୃତି ବିଭାଗ ନାମରେ ଗୋଟିଏ ସ୍ୱତନ୍ତ୍ର ବିଭାଗ ମଧ୍ୟ ରହିଥାଏ । ପୁଙ୍ଗବମାନେ ତାହାକୁ ଆପଣାର ହସ୍ତମୁଦି ମାହାଲ ପରି ବ୍ୟବହାର କରନ୍ତି । ଖବରକାଗଜମାନେ ବୃହସ୍ପତି ସାଜିଥିବା ଏହି ରାହୁମାନଙ୍କର ଉପଦ୍ରବରେ ସରଗରମ ହୋଇ ଉଠୁଥାନ୍ତି ।

ଆସନରୁ ଯିବାପରେ ସେମାନେ ଆଉ ସଭାରେ ଆଦୌ ଦିଶୁନାହାନ୍ତି । ସେମାନଙ୍କୁ ସଭାକୁ ଡାକିବାଲାଗି ଆଉ କେହିହେଲେ ମନ କରୁନାହାନ୍ତି, ଅର୍ଥାତ୍ ଆବଶ୍ୟକ ମଣୁନାହାନ୍ତି । ସେମାନଙ୍କୁ ଯେଉଁମାନେ ଏକଦା ଡାକି ନେଉଥିଲେ, ଏଣିକି ସେମାନେ ଏବେ ଗାଦୀରେ ବସିଥିବା ନୂଆମାନଙ୍କୁ ମନ କରିବେ । ସେମାନଙ୍କର କାମସ୍ପର୍ଶ ପାଇବାର ଲୋଭରେ ସେମାନଙ୍କୁ ସାହିତ୍ୟ ଓ ସଂସ୍କୃତି ଆଦି ଘରେ ପଲଙ୍କରେ ନେଇ ବସାଇବେ । ନୂଆମାନେ ହୁଏତ ସେଇଟି ନିମନ୍ତେ ଅପେକ୍ଷାକରି ରହିଥିବେ । କଲେଜର ଟୋକା ନେତାମାନେ ଏଣିକି ପୁରୁଣାମାନଙ୍କ ଘରକୁ ନଯାଇ ନୂଆ ପ୍ରଜାରଞ୍ଜକମାନଙ୍କ ପାଖକୁ ଯିବେ । କୁବୁଜାପରି ସେମାନଙ୍କୁ ବାର ଶୃଙ୍ଗାରରେ ସଜାଇବେ, ସେମାନଙ୍କର ଅଙ୍ଗଭୋଗ ଲାଗି ଶୁକ୍ଳାଭିସାରର କେତେକେତେ ବରାଦ କରିବେ । ପ୍ରକାଶକମାନେ ପୁରୁଣାମାନଙ୍କୁ ଛାଡ଼ି ଏଣିକି ନୂଆମାନଙ୍କୁ ଭର୍ତ୍ତା କରିବେ । ସେମାନେ ନୂଆମାନଙ୍କର ବହି ଛାପିଦେବାଲାଗି ନହୁରୁଣି ଧରି ବାରିକାଣୀ ସାଜି ସେମାନଙ୍କ ଘରେ ପହଞ୍ଚିବେ । ଗ୍ରାମାଞ୍ଚଳରେ ସାହିତ୍ୟ ଓ ସଂସ୍କୃତିକୁ ନେଇ ଗେଣ୍ଡାବେପାର କରୁଥିବା ମରଦମାନେ ଏଣିକି ନୂଆ ପାଞ୍ଜି ଅନୁସାରେ ନାହାକ ଠିକ୍ କରିବେ । ନିତାନ୍ତ ନିର୍ବୋଧ ହୋଇ ନଥିଲେ ସେମାନେ ପୁରୁଣାମାନଙ୍କୁ କଦାପି ମନ କରିବେ ନାହିଁ ।

ଆମ ଏହି ରାଜ୍ୟଖଣ୍ଡଟାରେ କ'ଣ ସାହିତ୍ୟ ଓ ସଂସ୍କୃତି ସମେତ ସାର୍ବଜନୀନ ଯାବତୀୟ ପରିମଳ ଚିରକାଳ ଏହିଭଳି ଭେରେଣ୍ଡାମିରେ ଚାଲିଥିବ ? ଭେରେଣ୍ଡାମାନେ

କ'ଣ ସତକୁ ସତ ମୋଟେ ବଦଳିବେ ନାହିଁ ?  ଭେରେଣ୍ଡାମାନେ ଉଭୟ ପଟରେ ଅଛନ୍ତି; ଯେଉଁମାନେ ଆଦୌ କୌଣସି ଦର୍ପଣର ସାହାଯ୍ୟ ନ ନେଇ ବର ଆଣିବାକୁ ଯାଉଛନ୍ତି, ସେମାନେ ଭେରେଣ୍ଡା; ଯେଉଁମାନଙ୍କ ହାତରେ ନିଜକୁ କଳିବାର ଓ ନିଜର ଗୋତ୍ରାଦି ବିଷୟରେ ସାବଧାନ ହେବାର ଆଦୌ କୌଣସି ଦର୍ପଣ ନାହିଁ, ସେମାନେ ମଧ୍ୟ ଭେରେଣ୍ଡା । ହୁଏତ ଏହି କ୍ଷେତ୍ରରେ କିଞ୍ଚିତ୍ ବିନୟ ସାହାଯ୍ୟ କରିପାରିବ । କିଛି ମାୟାବାଦ ମଧ୍ୟ ସାହାଯ୍ୟ କରିବ ।  ନିଜର ଆସନ ଅନୁସାରେ ନିଜ ଯୋଗ୍ୟତାକୁ କଳନା ନକରିବା ଓ ନିଜର ଅସଲ ବୃତ୍ତି ଓ ସୀମାଗୁଡ଼ିକୁ ଜାଣିବା - ତାହା ହେଉଛି ମଣିଷର ଅସଲ ବିନୟ, ଅସଲ ଲଜ୍ଜା ।  ଏହି ପୃଥିବୀରେ ମୁଁ ଆଦୌ ଅପରିହାର୍ଯ୍ୟ ନୁହେଁ, ତେଣୁ ମୁଁ ନଥିଲେ ମଧ୍ୟ ପୃଥିବୀ ଅବଶ୍ୟ ଚାଲିବ, ହୁଏତ ଅଧିକ ଶାଳୀନ ଓ ସୁନ୍ଦର ଭାବରେ ଚାଲିବ, ସେଇଟି ହେଉଛି ଏକ ଅତ୍ୟାବଶ୍ୟକ ମାୟାବାଦ । ସତ୍ୟର ସ୍ଥାନରେ ତୁଚ୍ଛା ମାୟାଗୁଡ଼ାକୁ ନେଇ ଥାପିବାରେ ଆଦୌ ସାହାଯ୍ୟ ନକରିବା ପାଇଁ ଏହି ପ୍ରକାରର ଏକ ସ୍ୱାସ୍ଥ୍ୟକର ମାୟାବାଦ ଆମକୁ ପ୍ରକୃତରେ ଭାରି ସାହାଯ୍ୟ କରିପାରିବ ।  ଏହି ପୃଥିବୀକୁ, ଆମର ପୃଥିବୀଟିକୁ ତାହା ଅନେକ ଭେରେଣ୍ଡାମିରୁ ବଞ୍ଚାଇ ରଖି ପାରିବ ।  ଆମ ଜୀବନର ବାୟୁଟିକୁ ବହୁବିଧ ପ୍ରଦୂଷଣରୁ ଦୂରରେ ରଖିପାରିବ ।  ମଣିମାମାନେ ସଦୟ ହୋଇ ଏହି କଥାଟିକୁ ବୁଝନ୍ତୁ । ମଣିଷମାନଙ୍କୁ ଖୋସାମଦ କରି ଏକାରାତିକେ ମୋଟା ହୋଇଯିବେ ବୋଲି ସ୍ୱପ୍ନ ଦେଖୁଥିବା ଜନ୍ତୁମାନେ ମଧ୍ୟ ଏକଥା ବୁଝନ୍ତୁ ।

୩/୨/୯୦

# ସନ୍ତୁଷ୍ଟ ଅସନ୍ତୁଷ୍ଟ

ସନ୍ତୋଷର ସ୍ତରଭେଦରେ ସନ୍ତୁଷ୍ଟ ତଥା ଅସନ୍ତୁଷ୍ଟମାନଙ୍କର ବିଭିନ୍ନ ସ୍ତର ରହିଛି । ଏବେ ରାଜନୀତିରେ ଯେଉଁମାନେ କ୍ଷମତାରେ ଅଛନ୍ତି, ସେମାନେ ହେଉଛନ୍ତି ସନ୍ତୁଷ୍ଟ, ଏବଂ ଯେଉଁମାନେ କ୍ଷମତାରେ ନାହାନ୍ତି, ସେମାନେ ଅସନ୍ତୁଷ୍ଟ । ସେହି ଗୋଟିଏ ରାଜନୀତିକ ଦଳ ଭିତରେ ମଧ୍ୟ ସନ୍ତୁଷ୍ଟ ରହିଛନ୍ତି, ଅସନ୍ତୁଷ୍ଟ ରହିଛନ୍ତି । ମନେ କରନ୍ତୁ ଦଳ କ୍ଷମତାରେ ଅଛି, ଦଳ ଭିତରୁ ମନ୍ତ୍ରୀ ଅଛନ୍ତି, କାହାକୁ ସାଧବ କରାଯାଇଛି ତ ଆଉ କାହାକୁ ମାଧବ କରାଯାଇଛି ।  ଏହି କଥାଟି ଅତ୍ୟନ୍ତ ସ୍ପଷ୍ଟ ଯେ ଦଳର ସମସ୍ତେ କଦାପି ମନ୍ତ୍ରୀ ହୋଇ ପାରିବେ ନାହିଁ, ସାଧବ ବା ମାଧବ ମଧ୍ୟ ହୋଇପାରିବେ ନାହିଁ ।  ଯେଉଁମାନଙ୍କ କପାଳକୁ ଶିକା ଛିଡ଼ିବ, ସେହିମାନେ ହିଁ ସେସବୁ  ହୋଇପାରିବେ ।  ତେଣୁ କେତେକ ବ୍ୟକ୍ତି ଅବଶ୍ୟ ବାହାରେ ରହିଯିବେ । ଭାରି ଆଶାୟୀ ଓ ହନ୍ତସନ୍ତ ହୋଇ ରହିଥିବେ ।  ବାହାରକୁ

ସାଙ୍ଗରେ ଅଛନ୍ତି ବୋଲି ଭାରି ଦେଖା ଯାଉଥିବ, ମାତ୍ର ସେମାନଙ୍କର ମନଗୁଡ଼ାକ ଏକାବେଳେକେ ସେମାନଙ୍କର ନିଜ ଗଣ୍ଡିରେ ଯାଇ ରହିଥିବ । ବାହାରେ ଯେତେ ଖୁସୀ ଦିଶୁଥିଲେ ମଧ୍ୟ ସେମାନେ ଭାରି ଶୁଖିଲା ଆଉ ସେନ୍ତେରା ହୋଇ ରହିଥିବେ । ସାମ୍ବାଦିକମାନେ ସେମାନଙ୍କୁ ଅସନ୍ତୁଷ୍ଟ ବୋଲି କହିବେ । ଏହି ଅସନ୍ତୁଷ୍ଟମାନଙ୍କର ଏକ ଭିତିରିଆ ଗୋଷ୍ଠୀ ଅବଶ୍ୟ ଥିବ ।

ଏପରି ବି ମନେ କରନ୍ତୁ ଯେ, ଗୋଟିଏ ଦଳ ସରକାର ଗଢ଼ିଥିଲେ, ଅର୍ଥାତ୍ ସେହି ଦଳରୁ କେତେ ମନ୍ତ୍ରୀ ହୋଇଥିଲେ ଓ ଆହୁରି କେତେ ସାଧବ ଓ ମାଧବ ହେବାର ସୌଭାଗ୍ୟ ଲାଭ କରିଥିଲେ । ହଠାତ୍ କୌଣସି ଦୁଃଖଦାୟକ ପରିସ୍ଥିତି ଉପୁଜିଲା, ଯାହା ଫଳରେ କି ମନ୍ତ୍ରୀମଣ୍ଡଳ ବଦଳିଗଲା । ସାମ୍ବାଦିକମାନେ ଏହି ଘଟଣାକୁ ଦଳର ନେତୃତ୍ୱ ବଦଳିଲା ବୋଲି କହିବେ । ଅର୍ଥାତ୍, ଏପର୍ଯ୍ୟନ୍ତ ଯେଉଁମାନେ ଦଳ ପକ୍ଷରୁ ଗାଦୀରେ ବସିଥିଲେ ଓ ଅନ୍ୟ ଯେଉଁମାନେ ଓଜନିଆ ଓଜନିଆ ହୋଇ ରହିଥିଲେ, ସେମାନେ ଆଉ ଗାଦୀରେ ରହି ପାରିଲେ ନାହିଁ । ସେମାନଙ୍କର ଓଜନ କମ୍ ହେଲା । ଏପର୍ଯ୍ୟନ୍ତ ଯେଉଁମାନେ ବାହାରେ ଥିଲେ, ଅସନ୍ତୁଷ୍ଟ ଗୋଷ୍ଠୀରେ ରହିଥିଲେ, ସେମାନେ ଆସି ଗାଦୀରେ ବସିଲେ, ଓଜନିଆ ହେଲେ । ଏବଂ ଯେଉଁମାନେ ଏବଯାଏ ଗାଦୀରେ ଥିଲେ, ସେମାନେ ଏଣିକି ଅସନ୍ତୁଷ୍ଟ ହେଲେ । ଅର୍ଥାତ୍, ଅତ୍ୟନ୍ତ ସେନ୍ତେରା ଓ ଭଙ୍ଗା ମନରେ ସେମାନେ ବାହାରେ ବସିଲେ । ରାଜେନ୍ଦ୍ରର ଆସନରୁ ଖସି ଫକୀର ହେଲାପରି ଅନୁଭବ କଲେ । ବାହାରକୁ ଦେଖିବାକୁ ବଡ଼ ଶୀତଳ ପଡ଼ିଗଲେ । ମାତ୍ର ସତକୁ ସତ ଅଲଗା ହୋଇ ରହିଲେ, ନୀରବରେ କ୍ରୋଧ ଉଦ୍‌ଗାର କଲେ, ନିଜର ଅଲଗା ମନ୍ତ୍ରଣା କଲେ ଓ ପୁଣି କ'ଣ ଗୋଟାଏ ଓଲଟପାଲଟକୁ ଅତ୍ୟନ୍ତ ସକ୍ରିୟ ଭାବରେ ଚାକି ରହିଲେ । ନାହାକ ପାଖରେ ନିଜର ଖଡ଼ି ପକାଇଲେ ।

ପ୍ରାୟ ଯାବତୀୟ ଯଥାର୍ଥ ରାଜନୀତି ପଛରେ ଏକ ଅସନ୍ତୋଷ ରହିଥାଏ । କାରଣ ଯାବତୀୟ ରାଜନୀତିକ ବ୍ୟକ୍ତି ତା'ସମ୍ମୁଖରେ ଏକ ସ୍ୱପ୍ନ ଦେଖୁଥାଏ । ସିଏ ବର୍ତ୍ତମାନଟାକୁ ବଦଳାଇବାକୁ ଚାହୁଁଥାଏ । ତା'ଆଗରେ ଏକ ରାଜନୀତିକ ଆଦର୍ଶ ଥାଏ । ସେହି ଆଦର୍ଶ ଲାଗି ସିଏ ନିଜର ଯାବତୀୟ ରାଜନୀତିକ କାର୍ଯ୍ୟକଳାପକୁ ସମର୍ପିତ କରି ରଖିଥାଏ । ସେହି ଅନ୍ୟ ଅଥଚ ଯଥାର୍ଥ ଅସନ୍ତୋଷର ଯୁଗଟି ଭାରତବର୍ଷର ରାଜନୀତିରୁ କ୍ରମେ ବିଦାୟ ନେଇ ଚାଲିଗଲାଣି । କାଞ୍ଜିଆମାନଙ୍କର ପୁଣି କେଉଁ ଆଦର୍ଶ, କେଉଁ ରାଜନୀତି ବା କେଉଁ ଅସନ୍ତୋଷ ରହିବ ଯେ, ସେମାନେ ନିଜ ଭିତରେ ଦେଶ ପାଇଁ ସତକୁ ସତ ଘାଣ୍ଟି ହେବେ ? ସେମାନେ କେବଳ ନିଜ ପାଇଁ ହିଁ ଘାଣ୍ଟି ହେବେ । କ୍ଷମତାରେ ଥିଲେ ଦୋଳି ଖେଳୁଥିବେ

ଓ କ୍ଷମତାରେ ନଥିଲେ ଡ଼ାଳଟାକୁ ଭାଙ୍ଗି ଦୋଳିରେ ବସିଥିବା ପରିପନ୍ଥୀମାନଙ୍କୁ ଦୋଳି ସମେତ ତଳେ ପକାଇ ଦେବାକୁ ଚେଷ୍ଟା କରୁଥିବେ । ସେମାନେ ତଳେ ପଡ଼ିଗଲେ ସିନା ଏମାନଙ୍କର ପାଳି ଆସିବ ।

୧୭/୨/୯୦

# ସାମ୍ରାଜ୍ୟବାଦୀର ସ୍ୱାର୍ଥ

ମଣିଷ ମାତ୍ରକେ ସ୍ୱାର୍ଥପର ବୋଲି ଶାସ୍ତ୍ରରେ ଏକ ଅପବାଦ ରହିଛି । ନିଜକୁ ସବୁ ବ୍ୟାପାରର କେନ୍ଦ୍ର ବୋଲି ଭାବୁ ଭାବୁ ଅନେକ ମଣିଷ ଛାଉଲେ ଛାଉଲେ ସତେଅବା ସେଇଠି ଲାଖି ରହିଯାଆନ୍ତି । ପରିଧି ବୋଲି କିଛି ରହିଛି ବୋଲି ସେମାନେ ସ୍ମରଣ ରଖି ପାରନ୍ତି ନାହିଁ । କେବଳ ନିଜକୁ ଦେଖିପାରନ୍ତି, ଆଉ କାହାକୁ ଦେଖି ପାରନ୍ତିନାହିଁ । ଏମିତି ଅଗ୍ରଗତି କରୁ କରୁ ସ୍ୱାର୍ଥ ହିଁ ସେମାନଙ୍କ ଲାଗି ଜୀବନର ଏକମାତ୍ର ଅର୍ଥ ହୋଇ ରହିଯାଏ । ତା'ପରେ ସେମାନେ ନିଜ ଫାଶରେ ନିଜେ ବନ୍ଧା ହୋଇ ରହନ୍ତି । ଏକୁଟିଆ ଆପଣାକୁ ହିଁ ସଂସାରର ସାରବସ୍ତୁ ବୋଲି ଦେଖନ୍ତି ।

ଏକାନ୍ତ ଭୟାଳୁ ମଣିଷ ଏକାନ୍ତ ସ୍ୱାର୍ଥପର ହେବାକୁ ଅନେକ ଉତ୍ସାହ ପାଉଥାଏ । ସେହି ଭୟ ଜୀବନରେ ଏକ ନିର୍ଦ୍ଦିଷ୍ଟ ସୀମାକୁ ଅତିକ୍ରମ କରିବାକୁ ଆରମ୍ଭ କଲେ ମଣିଷର ସ୍ୱାର୍ଥ ସାମ୍ରାଜ୍ୟବାଦୀ ହୁଏ । ସାମ୍ରାଜ୍ୟ ବିସ୍ତାର କରିବାକୁ ସିଏ ଭାରି ଆକୁଳ ହୋଇପଡ଼େ । ନିଜେ ରାଜା ହୋଇଥିଲେ ନିଜ ଅନ୍ତେ ନିଜ ପୁଅଟିକୁ ମଧ୍ୟ ରାଜା କରି ବସାଇ ଯିବାକୁ ନସରପସର ହୋଇପଡ଼େ । ପୃଥିବୀରେ ସବୁ ମଣିଷ ନିଜର ପୁତ୍ରକନ୍ୟା ଓ ନିକଟସ୍ଥ ଆତ୍ମୀୟସ୍ୱଜନଙ୍କ ବିଷୟରେ ଅବଶ୍ୟ ଭାବନ୍ତି । ମାତ୍ର, ସାମ୍ରାଜ୍ୟବାଦୀ ସ୍ୱାର୍ଥ ସେମାନଙ୍କର କଥା ଭାବିବାବେଳେ ଏତେ ଅଧିକ ପରିମାଣରେ କାତର ହୋଇପଡ଼େ ଯେ ସେମାନଙ୍କ ବିଷୟରେ ଗୋଟାଏ କିଛି ଦୃଢ଼ ବ୍ୟବସ୍ଥା କରିନଗଲେ ସିଏ ମୋଟେ ସ୍ଥିର ହୋଇ ପାରେ ନାହିଁ । ତା'ପରେ ତା'ର ଭାବନାରେ ମଧ୍ୟ ଡ଼େଣା ଲାଗେ । ସିଏ ମନ୍ତ୍ରୀଟିଏ ହୋଇ ବସିଥିଲେ ପୁଅଟିକୁ ବା ଝିଅଟିକୁ ମନ୍ତ୍ରୀ କରି ବସାଇ ଯିବାକୁ ଲଣ୍ଡଭଣ୍ଡ ହୋଇପଡ଼େ । ମନ୍ତ୍ରୀ ନକରି ପାରିଲେ, ତାକୁ ସୌଦାଗରଟିଏ କରେ, ବ୍ୟବସାୟୀଟିଏ କରେ ବା ସେହିପରି ଆହୁରି କିଛି କରି ଦେଇଯାଏ । ସିଏ ଦଳର ସବା ଉଚ୍ଚ ନେତା ଥିଲେ ନିଜ ଅନ୍ତେ ପୁଅଟାକୁ ମଧ୍ୟ ନେତା ପଦରେ ଲେଖାଇ ଦେଇଯାଏ । ପୂର୍ବକାଳରେ ରାଜାମାନଙ୍କ ପରେ ଯୁବରାଜମାନେ ହିଁ ରାଜା ହେଉଥିଲେ । ଏବେ ଆମ ନେତାଏ ଆପଣାକୁ ଚେନାଏ ଚେନାଏ ରାଜା ବୋଲି ଅନୁଭବ କରିବାର ଏକାଧିକ କାରଣ ରହିଛି । ତେଣୁ ବିଚରାମାନେ

ନିଜ ପୁଅମାନଙ୍କୁ ଯୁବରାଜ ବୋଲି ମଣିବାରେ ବିସ୍ମିତ ହେବାର ଆଦୌ କୌଣସି କାରଣ ନାହିଁ ।

ଏପରି ହେବା ପଛରେ ହୁଏତ ଆହୁରି ଗୋଟିଏ କାରଣ ରହିଛି । ରାଜନୀତିର ନେତାମାନେ ନିଜର ପୁଅ ବା ଝିଅମାନଙ୍କୁ ମଧ୍ୟ ଯେ ନିଜେ ଯିବା ପୂର୍ବରୁ କୌଣସି ସିଂହାସନରେ ବସାଇ ଦେଇଯିବାର ଚିନ୍ତା କରୁଛନ୍ତି, ତାହା ପଛରେ ଏକ ପରିସ୍ଥିତିଗତ କାରଣ ହୁଏତ ଅବଶ୍ୟ ରହିଥିବ । ନେତାମାନଙ୍କର ପୁଅମାନେ ଏବେ ଆଉ ପ୍ରାୟ ଆଉ କିଛି ହୋଇ ପାରୁନାହାନ୍ତି । ରାଜାପୁଅମାନଙ୍କର ପାଠ ହେଉନାହିଁ କି ନାବାଳକତ୍ୱ ମଧ୍ୟ ତୁଟି ପାରୁନାହିଁ । ଆପଣା ପିତାଶ୍ରୀମାନଙ୍କର କୃପାରୁ ଘରେ ଓ ଦରବାରମାନଙ୍କରେ ସେମାନେ ସାନଟି ଦିନରୁ ଯେଉଁସବୁ କାରବାର ଦେଖୁଛନ୍ତି, ଜୀବନରେ ତାହାହିଁ ପ୍ରତିଷ୍ଠାର ସତେଅବା ପ୍ରଶସ୍ତତମ ଓ ସହଜତମ ଉପାୟ ବୋଲି ସେମାନେ ଗୋଟାସୁଦ୍ଧା ସ୍ପଷ୍ଟ ହୋଇ ଯାଉଛନ୍ତି । ବାପାମାନଙ୍କ ସାଙ୍ଗରେ ଜାଲ ଧରି ଯାଉ ଯାଉ କ୍ରମେ ମାଛ ଧରି ବି ଶିଖି ଯାଉଛନ୍ତି । ବାପାମାନେ ସେମାନଙ୍କ ବିଷୟରେ କିଛି ଗୋଟାଏ ବରାଦ କରି ନଯାଉଥିଲେ ସେମାନେ ବିଚରା ପ୍ରକୃତରେ ଏକାବେଳେକେ ଅରକ୍ଷିତ ହୋଇ ଯାଉଥାନ୍ତେ । ବାପାମାନଙ୍କୁ ମୁଣ୍ଡିଆ ମାରୁଥିବା ଲୋକେ ବାପାଙ୍କ ଅନ୍ତେ ପୁଅମାନଙ୍କୁ ହୁଏତ ଗୋଇଠା ମାରିବାକୁ ଆସୁଥାନ୍ତେ । ତାହା କେଡ଼େ ଦୁଃଖଦାୟକ ନହେଉଥାନ୍ତା ।

ଭାରତୀୟ ସାମନ୍ତବାଦକୁ ଏହି ରାଜନୀତିକ ସାମ୍ରାଜ୍ୟବାଦ ଖୁବ୍ ସୁହାଉଛି । ତେଲ ଆଉ ତେଲିଙ୍କ ଭିତରେ ବିଚରା ଗଣତନ୍ତ୍ରଟା ପଡ଼ିଯାଇ ଭାରି ହରକତ ହେବାରେ ଲାଗିଛି । ଗଣତନ୍ତ୍ର ପାଇଁ ସତକୁ ସତ ଯେଉଁ ବିବେକଟି ଆବଶ୍ୟକ, ତାହା ମାଡ଼ ଖାଇ ଯାଉଛି । ସାମ୍ରାଜ୍ୟବାଦୀ ମୋହଟା ତୁଟିବାଯାଏ କେବଳ ଗଣତନ୍ତ୍ରକୁ ନୁହେଁ, ସମଗ୍ର ଭାରତବର୍ଷକୁ ମଧ୍ୟ ତାହାର ଉପଦ୍ରବ ଅବଶ୍ୟ ସହିବାକୁ ପଡୁଥିବ । ଏବଂ, ବହୁବିଧ କ୍ଷେତ୍ରରେ ତଥାକଥିତ ନେତୃତ୍ୱର ଗୋଡ଼ରେ ପଥର ବନ୍ଧା ହୋଇ ରହିଥିବ ।

୩/୩/୯୦

# ପରମ୍ପରା ବଦଳାଅ

ତୁମ ସାହିର ସାନ ପାନଦୋକାନୀଟିକୁ ପଚାର ଏବଂ ଜାଣିବ ଯେ ସିଏ ବି କିଛି ଦେଉଛି । ସତକୁ ସତ ଦେଉଛି ବୋଲି ବେଆଇନ ଭାବରେ ଆପଣାର କୁନି ଢ଼ାବାଟି ପକାଇ ଦୋକାନ ଦେଇଛି ଓ ଦି' ପଇସା ଉପାର୍ଜନ କରୁଛି । ତାକୁ ତା' ଜାଗାରୁ ପୁଣି ଉଠାଇ ପାରିବ କିଏ ? କେହି ଉଠାଇବାକୁ ବସିଲେ ସିଧା ଚନ୍ଦ୍ର ବା ଇନ୍ଦ୍ର ସରବରାକର

ଆସି ତା' ପକ୍ଷରେ ଆୟୁଧ ଧରି ଛିଡ଼ାହେବେ । ଆଉ କିଏ କହୁଛି, ତାକୁ କେହି ଏଠାରୁ ବଦଳି କରି ପାରିବେ ନାହିଁ । ସିଏ ଯେ ଏଠାରେ ମଞ୍ଜି ପୋତିଛି ଓ ଏହିଠାରେ ହିଁ ଚିରଦିନ ରହିବ, ସେ କଥା ଖୋଦ ଚିତ୍ରଗୁପ୍ତଙ୍କ ଖାତାରେ ଲେଖାହୋଇ ରହିଛି । ଇନ୍ଦ୍ରଙ୍କ ହୁକୁମରେ ସେକଥା ଚିତ୍ରଗୁପ୍ତ ଲେଖି ରଖିଛନ୍ତି ଏବଂ କୌଣସି ବିଚିତ୍ରଗୁପ୍ତଙ୍କର ମାଧ୍ୟମରେ ଉଭୟ ଇନ୍ଦ୍ର ଏବଂ ଚିତ୍ରଗୁପ୍ତଙ୍କୁ ମୋଟା ରକମର କିଛି ଦେଇପାରିଛି ବୋଲି ସିଏ ଏଭଳି ଭାଗ୍ୟର ଅଧିକାରୀ ହୋଇପାରିଛି । ତାକୁ ହଲାଇ ପାରିବ, ସେ ସାଧ କାହାର ଅଛି ?

ଚାକିରିଟିଏ ପାଇବାକୁ ଇଚ୍ଛା କରୁଛ, ତୁମକୁ କିଛି ଦେବାକୁ ହେବ । ଚାକିରି ପାଇସାରିବା ପରେ ମଧ୍ୟ ତୁମେ ଦଶଦିଗପାଳମାନଙ୍କୁ ମାସକୁମାସ ପେସ୍‌କିସ୍ ଦେଉଥିବ । ତୁମେ ସେଥିପାଇଁ ଟଙ୍କା ଯେଉଁଠୁ ବା ଯେପରି ଆଣ ପଛକେ, ସେଥିପାଇଁ ସରକାର କିମ୍ବା ତାଙ୍କର ଗଉଁନିଆମାନେ ଆଦୌ ମୁଣ୍ଡ ଖେଳେଇବେ ନାହିଁ । ମାତ୍ର ସେମାନଙ୍କର ନିର୍ଦ୍ଧାରିତ ପାଉଣାଟା ନିୟମିତ ଭାବରେ ଯାଇ ପହଞ୍ଚି ଯାଉଥିବା ଆବଶ୍ୟକ । ସରକାରଙ୍କଠାରୁ ତୁମେ ଋଣ ପାଇବ, ତେବେ ମଲ୍ଲ ଓ ଚାଣୁରମାନଙ୍କ ପାଖରେ ଅବଶ୍ୟ କିଛି ଦେବାକୁ ହେବ । ନହେଲେ ଦଉଡ଼ି ଦଉଡ଼ି ତୁମ ଗୋଡ଼ରୁ ଚମଡ଼ା ଉଠିଯିବ, ଖୁବ୍ ସମ୍ଭବ କାଗଜପତ୍ରମାନେ ମଧ୍ୟ ବଦଳିଯିବେ । ପଇସା ଦିଅ, ତୁମ ପିଲାର ନମ୍ବର ବଢ଼ିଯିବ, ଅର୍ଥାତ୍ ନିଜର ପିଲା ପାଇଁ ତୁମେ ଯେଉଁ ଶ୍ରେଣୀର ଭାଗ୍ୟ ଖରିଦ କରିବାକୁ ଇଚ୍ଛା କରିବ, ତାହା ତୁମକୁ ଅବଶ୍ୟ ମିଳିଯିବ । ପଇସା ଦେଲେ ଅବଶ୍ୟ ହେବ । ନହେବାର କଦାପି ହେବନାହିଁ ।

ସରକାରୀ କଲେଜ ଲାଇବ୍ରେରୀ ପାଇଁ ଏତେ ହଜାର ବା କେଇଲକ୍ଷ ଟଙ୍କାର ବହି କିଣାଯିବ । ବିଭାଗୀୟ ଅଧ୍ୟାପକମାନେ ବହି ତାଲିକା କରିଦିଅନ୍ତେ ଓ ସେହି ଅନୁସାରେ ବହି କିଣାହୋଇ ଆସିଯାଆନ୍ତା । ମାତ୍ର ସେକଥା ହୋଇପାରିବ ନାହିଁ । ଛକ ମୁଣ୍ଡରେ ଗ୍ରନ୍ଥାଗାରୀ ଅଛନ୍ତି, ଗ୍ରନ୍ଥାଗାରୀଙ୍କ ପଛରେ ଅଧକ୍ଷ ଅଛନ୍ତି, ସେମାନେ ତୃପ୍ତ ନହେଲେ କିଛି ହେବ ନାହିଁ । ବହିଗୁଡ଼ିକୁ ଯୋଗାଇ ଦେବାକୁ ଯେଉଁ ଦୋକାନୀମାନଙ୍କୁ କୁହାଯିବ, ଏମାନେ ଯିଏ ଯେତିକି ଦେଇପାରିବେ, ସେକଥା ସେହି ଅନୁସାରେ ନିଷ୍ପତ୍ତି ହେବ । ଟଙ୍କା ହେଉ, ଫଳ ହେଉ, ପୁଷ୍ପ ହେଉ, କିଛି ଭେଟି ଦେବାକୁ ହିଁ ପଡ଼ିବ । ପ୍ରକାଶକଙ୍କର କେଉଁ ବହି ସରକାର କିଣିନେବା ସକାଶେ ବଛାହେବ, ସେକଥା ମଧ୍ୟ ସେହି ଉପରମୁଣ୍ଡରେ ସ୍ଥିରୀକୃତ ହେବ । ଶେଷ ଆଦେଶ ସେଇଠୁ ଆସିବ । ତେଣୁ ସେଠାରେ ଠିକ୍ ସମୟରେ ଲକ୍ଷ୍ମୀ ଯାଇ ପହଞ୍ଚୁଥିବା ଆବଶ୍ୟକ । ଏହି ପରମ୍ପରା ଆମ ସମସ୍ତଙ୍କୁ ଖାଇଯାଉଛି । ଏ କାଳର ଦିଅଁମାନେ ଖଟୁଲିଟାକୁ ବି ଖାଇବାକୁ ମନ କରୁଛନ୍ତି । ମଣିଷ ହାର୍ ମାନି ମାନି ଯାଉଛି ।

ତୁମେ ଯିଏ ନୂଆ ରାଜଦଣ୍ଡ ଧରିଛ ଓ ନୂଆ ସରକାର ଗଢ଼ିଛ, ଏଣିକି ସବୁ ଅଲଗା ପ୍ରକାରର ହେବ ବୋଲି ଆଶ୍ୱାସନା ଦେଇ ପାରିବା ଲାଗି, ତୁମେ ଏହି ପରମ୍ପରାଟିକୁ ବଦଳାଇ ପାରିଲେ ସିନା ଯାଇ ଯାହା ହେବ । ତୁମେ ଏହି ନାଳଗୁଡ଼ାକୁ ପରିଷ୍କାର କରିଦେଇ ପାରିବ ? ନିଜେ କଦାପି ଯାଇ ସେହି ନଳୀରେ ପଶିବ ନାହିଁ ବା ନିଜର କେହି ଅମଲା ବା ହାକିମ ନଳାରେ ଯାଇ ପଶିଲେ ତୁମେ ଦେଶର ଆଇନ ଅନୁସାରେ ତାକୁ ଅବଶ୍ୟ ଶାସ୍ତି ଦେବ ଓ ସେଥିଲାଗି ତୁମକୁ ଆଦୌ କୌଣସି ଲାଞ୍ଚ ଦେବାକୁ ପଡ଼ିବନାହିଁ, ତୁମେ ଦେଶର ପ୍ରଜାଗଣଙ୍କୁ ଏତିକି ପ୍ରତିଶ୍ରୁତି ଦେଇପାରିବ ? ତୁମ କକା ଓ ଦାଦାମାନେ ଯାହା ସବୁ କରୁଥିଲେ, ତୁମେମାନେ ସ୍ୱୟଂ ତାହା ମୋଟେ କରିବନାହିଁ ବୋଲି ନିଜ ପାଖରେ ଶପଥ ଗ୍ରହଣ କରିପାରିବ ? ଦେଶର ଯାବତୀୟ ଯନ୍ତ୍ର ଓ ତନ୍ତ୍ର ଏହି ଦେଶର ମଣିଷର ସେବା କରିବା ସକାଶେ ହିଁ ତିଆରି ହୋଇଛି, ଆମର ଶାସକମାନେ ସେହି ଭରସାଟିକୁ କୋଉଦିନୁ ଭୁରୁଡ଼ାଇ ଦେଇ ସାରିଲେଣି । ପରମ୍ପରା ବଦଳି ଗଲାଣି । ଆଲୁଅକୁ ଅନ୍ଧାର ଗୋଟା ସୁଦ୍ଧା ମାଡ଼ି ବସିଛି । ତୁମେ ସେହି ପରମ୍ପରାକୁ ବଦଳାଇ ଦେଇପାରିବ ? ତୁମେ ସତକୁ ସତ ଭଦ୍ର ହୋଇପାରିବ ? ନା, ବଡ଼ଲୋକ ହେବ ବୋଲି ସବୁଯାକ ବିବେକର ବେକ ମୋଡ଼ି ଦେବ ଓ ରାଜା ହୋଇ ପାପ କମାଉଥିବ ?

୧୦/୩/୯୦

# ନିଷେଧ - ସଂହିତା

ଯେଉଁମାନେ ନୂଆ ନିର୍ବାଚିତ ହୋଇ ଶାସନକୁ ଆସିଛନ୍ତି, ସେମାନେ ଅଲଗା ପ୍ରକାରର ହୁଅନ୍ତୁ, ସେମାନେ ଆଗମାନଙ୍କ ଭଳି ନ ହୁଅନ୍ତୁ । ତେବେଯାଇ ସେମାନେ ଆମ ମଣ୍ଡଳଟାକୁ ଗତ ବହୁ ବର୍ଷ ଧରି ଦୂଷିତ କରି ରଖିଥିବା ଦୂଷିତ ହାଉଆଟିକୁ ହୁଏତ ଟିକିଏ ବଦଳାଇ ଦେଇ ପାରିବେ । ଶାସନକୁ ଆସିଲେ ହାତକୁ କେବଳ କ୍ଷମତା ହିଁ ଆସେ ନାହିଁ । ଶାସନକୁ ଆସିଲେ ଦାୟିତ୍ୱ ମଧ୍ୟ ବଢ଼େ । ଭାରତବର୍ଷରେ ଶାସନର ଆଚାର ଗୁଡ଼ାକ ଏକାଧିକ କାରଣରୁ ଏପରି ବଦଳି ଯାଇଥିଲା ଯେ, ଶାସନକୁ ଯାଉଥିବା ମଣିଷମାନେ କ୍ଷମତାରେ ବସିବାଟାକୁ ହିଁ ଅହୋଭାଗ୍ୟ ବୋଲି ମନେ କରୁଥିଲେ ଓ ଦାୟିତ୍ୱ-ଘରେ ଚୋର ହୋଇ ରହି ଯାଉଥିଲେ । ଯେଉଁ ସାଧାରଣ ପ୍ରତ୍ୟୟ ଏବଂ ନିଷ୍ଠା ରହିଲେ ଗୋଟିଏ ଶାସନ ବା ଦେଶ ପ୍ରକୃତରେ ଚାଲିଲା ଭଳି ଚାଲେ, ସେମାନେ ସେହି ନିଷ୍ଠାଟିକୁ ମାରାକରି ଦେଇଥିଲେ । ନୂଆମାନେ ସେହି ଭୁଲ ନ କରନ୍ତୁ ।

ତେଣୁ, ମୂଳରୁ ଆପଣା ପାଇଁ ଗୋଟିଏ ନିଷେଧ-ସଂହିତା ତିଆରି କରି ରଖନ୍ତୁ । ଆପଣାର ସୀମା ବିଷୟରେ ସର୍ବଦା ସଚେତନ ରହନ୍ତୁ । ଯାହାପାଖରେ ନିଜ ଦାୟିତ୍ୱ ଓ ବ୍ୟକ୍ତିତ୍ୱର ସୀମା ବିଷୟରେ ଏକ ସଚେତନତା ରହିଥାଏ, ସିଏ ନିଜେ ଭଦ୍ର ହୁଏ, ଚଳଣିଗୁଡ଼ିକୁ ମଧ୍ୟ ଭଦ୍ରକରି ରଖିବାରେ ବହୁତ ସାହାଯ୍ୟ କରିଥାଏ । ଟିକିଏ ଚଲାଖି ହେଲେ ଯେକୌଣସି ମନୁଷ୍ୟ ନିଜର ସୀମାଗୁଡ଼ିକ ବିଷୟରେ ଅବଶ୍ୟ ବହୁତ ସଚେତନ ହୋଇପାରିବ । ତେବେ ଆମ ଏଦେଶରେ ଅନେକ କ୍ଷମତାଶାଳୀଙ୍କ ପରି କଦାପି ଲୋଭରେ ପଡ଼ି ଅଥାନରେ ଯାଇ ବସିଯିବ ନାହିଁ ଓ ତେଣୁ ହାସ୍ୟାସ୍ପଦ ହେବ ନାହିଁ । ସେମାନଙ୍କର ପୂର୍ବସୂରୀମାନେ ଅତ୍ୟନ୍ତ ଲଜ୍ଜାକର ଭାବରେ ହାସ୍ୟାସ୍ପଦ ହୋଇଛନ୍ତି । ସେମାନେ ନହୁଅନ୍ତୁ ।

ଯେଉଁମାନେ ନୂଆ ହୋଇ ଶାସନକୁ ଆସିଛନ୍ତି, ସେମାନେ ନୂଆ ଡ଼ାଆଣୀ ହୋଇ ସବୁ ଥାନକୁ ଦଉଡ଼ିଯାଇ ଗୃହ ଖାଇବାର ବୁଦ୍ଧି ନକରନ୍ତୁ । ସେମାନେ କ୍ଷମତାକୁ ଆସିଲେଣି ଜାଣି ସେମାନଙ୍କଠାରୁ ଅଧିକ ବୁଦ୍ଧିଆମାନେ ଏଥର ସେମାନଙ୍କ ପାଖକୁ କେଡ଼େ ପ୍ରେମରେ ଅବଶ୍ୟ ଆସିବେ । ସେମାନଙ୍କୁ ସାହିତ୍ୟ ଭିତରକୁ ଡାକିବେ, ଶ୍ରୀକ୍ଷେତ୍ରର ଧର୍ମସଭାକୁ ଡାକିବେ, ସଂସ୍କୃତି ଭିତରେ ସେମାନଙ୍କୁ ଧରାବର କରି ବସାଇ ହରବର କରାଇବାକୁ ଆସିବେ । ନାଟକୋତ୍ସବରେ ପୁରୋଧା ହେବାକୁ ଅନୁରୋଧ କରିବେ । ବୟସ୍ୟମାନେ ସେମାନଙ୍କର ପୁରୁଣା ଖାତା ଖୋଲାଇ ସେମାନଙ୍କର ସାହିତ୍ୟକୃତି ଆବିଷ୍କାର କରିବେ ଓ ବହି କରି ଛପାଇ ଦେବେ । ପ୍ରକାଶକେ ସେମାନଙ୍କ ଘରକୁ ଭାରଥୋର ପଠାଇବେ । ସାହିତ୍ୟ-ସମ୍ମିଳନୀର ସଧବା ଏବଂ ବିଧବାମାନେ ସେମାନଙ୍କୁ ସଭାରେ ବିଜେ କରି କାମସ୍ପର୍ଶ ଦେଇଯିବାକୁ କାରୁଣ୍ୟ କରିବେ । ସେମାନେ ଯାହା ନୁହନ୍ତି, ସେମାନଙ୍କୁ ତାହାହିଁ ବୋଲି ଦେଖାଇବାକୁ ସାହୀମାନଙ୍କରେ କେତେ ଉଦ୍ୟମ ହେବ । ସେମାନେ କିଛି ନ ଜାଣିଥିବା ବହୁକ୍ଷେତ୍ରରୁ ସେମାନଙ୍କ ପାଟିରୁ କଥାମାନ ବାହାର କରିନେବାର ଚେଷ୍ଟା ହେବ । ଆଗରୁ ଠିକ୍ ଯାହାସବୁ ହେଉଥିଲା, ଏଥର ମଧ୍ୟ ସମାନ ଧୃଷ୍ଟତା ସହିତ ତାହାହିଁ ହେବ ।

ନୂଆମାନେ ଯଦି ପ୍ରକୃତରେ ନୂଆ ହୋଇଥିବେ, ତେବେ ସେମାନେ ଏସବୁ ଭିତରେ କଦାପି ଭଳି ଯିବେ ନାହିଁ । ସେମାନେ ଆପଣାର ମହତ ରଖିବେ, ସାଧାରଣ ଜୀବନର ମହତ ମଧ୍ୟ ରଖିପାରିବେ । ତୋଷାମଦରେ ବଶ ହେବେ ନାହିଁ । ହାତଗୁଞ୍ଜାରେ ମଧ୍ୟ ବଶ ହେବେ ନାହିଁ । ତେବେଯାଇ ସେମାନେ ବିଗିଡ଼ି ଯାଇଥିବା ହାଉଆଗୁଡ଼ିକୁ ପୁଣି ସଜାଡ଼ିଦେଇ ପାରିବେ । ନିଜର ସୀମାକୁ ଜଗିଥିଲେ ଆପଣା ଥାନରେ ସେମାନେ

ଅବଶ୍ୟ ଯଥାର୍ଥ ସମ୍ମାନ ପାଇବେ । ତୋଷାମଦକାରୀମାନଙ୍କୁ କାଳ ହେବେ । ତେଣୁ ସମଗ୍ର ଦେଶର ସମ୍ମାନ ଓ ସ୍ପର୍ଦ୍ଧାଗୁଡ଼ିକୁ ମଧ୍ୟ ଯୋଗ୍ୟ ପ୍ରହରୀ ପରି ରକ୍ଷାକରି ପାରିବେ ।

୧୭/୩/୯୦

# ସର୍ବେ ପିତଳ ମୁଁ ସୁନା

ଭୋଟବେଳେ ଭୋଟ ମାଗୁଥିବା ବାବୁମାନଙ୍କର ରାଉ ରାଉ ଘଣ୍ଟପିଟା ଶୁଣି ଅଧିକାଂଶ ସମୟରେ ଭାରି ବିରକ୍ତ ଲାଗୁଥିଲା ସତ, ମାତ୍ର ତଥାପି ସେହି ଅକଥା ଭିତରୁ ମଧ୍ୟ ଗୋଟାଏ କଥା ବେଶ୍ ମନୋରମ ଲାଗୁଥିଲା । ଏକ ରାଜନୀତିକ ଶାସନଛାଞ୍ଚ ରୂପେ ଭାରତବର୍ଷ ସିନା ଗଣତନ୍ତ୍ରକୁ ଗ୍ରହଣ କରିନେଇଛି, ମାତ୍ର ଭୋଟ ମାଗୁଥିବା ବେଳେ ତୁମେ ରାଜନୀତିର ପ୍ରସଙ୍ଗ ବାହାର କଲେ ମୋଟେ ଜୟଲାଭ କରିପାରିବ ନାହିଁ । ମୁଁ ଯେଉଁ ରାଜନୀତିକ ଦଳ ପକ୍ଷରୁ ନିର୍ବାଚନରେ ଛିଡ଼ା ହୋଇଛି, ରାଜନୀତିକ ବିଚାର ଏବଂ କାର୍ଯ୍ୟକ୍ରମର କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ ରାଜନୀତିକ ଦଳମାନେ ତାହାଠାରୁ କେତେ ପୃଥକ, ଭାରତବର୍ଷର ନିର୍ବାଚନ ସଭାମାନଙ୍କରେ ସେକଥା ଆଦୌ ଶୁଣିବାକୁ ମିଳେ ନାହିଁ, ତେଣୁ ଏକ ରାଜନୀତିକ ମଞ୍ଚକୁ ଆଧାର କରି ନିର୍ବାଚନର କୌଣସି ପ୍ରଚାର ହୁଏ ନାହିଁ ।

ମାତ୍ର, ପ୍ରକୃତରେ ମନୋରମ ଜିନିଷଟି ଯାହା ହୁଏ, ସେଇଟି ହେଉଛି ଯେ, ମୋ' ପକ୍ଷର ସମର୍ଥନ କରି ଭାଷଣ ପିଟିଲାବେଳେ ମୁଁ ନିଜକୁ ଏବଂ ନିଜର ଦଳକୁ ଗୋଟାସୁଦ୍ଧା ସୁନା ବୋଲି କହେ ଏବଂ ତେଣୁ ଅନ୍ୟ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ବା ସେମାନଙ୍କର ଦଳକୁ ଗୋଟାସୁଦ୍ଧା ପିତଳ ବୋଲି ପ୍ରମାଣ କରିଦିଏ । କେଉଁ ସବୁ ରାଜନୀତିକ କାରଣରୁ, ଭାବରୁ ବା ଅଭାବରୁ, ସେମାନେ ସମସ୍ତେ ପିତଳ ଓ ମୁଁ ଏକୁଟିଆ ସୁନା, ସେଇଟିର ପ୍ରସଙ୍ଗ ପଡ଼ିବା ଆଦୌ ଆବଶ୍ୟକ ହୁଏ ନାହିଁ । ମୁଁ ଗୋଟାସୁଦ୍ଧା ସୁନା ବୋଲି ପ୍ରତିପାଦିତ କରିବା ଲାଗି ହୁଏତ ସ୍ୱତନ୍ତ୍ର ଭାବରେ ମୋଟେ କୌଣସି କଷ୍ଟ କରିବାକୁ ପଡ଼େନାହିଁ । ଆଉମାନଙ୍କୁ କଥା ଅକଥା ଲଗାଇ ପିତଳ ବୋଲି ସାବ୍ୟସ୍ତ କରିଦେଲେ ତାହାରି ଦ୍ୱାରା ହିଁ ମୁଁ ସୁନା ବୋଲି ଆପେଆପେ ପ୍ରମାଣିତ ହୋଇଯାଏ । ଗଣତନ୍ତ୍ରକୁ ଗାଦୀବ୍ରହ୍ମ ରୂପେ ଗ୍ରହଣ କରିଥିବା କୌଣସି ସାମନ୍ତବାଦୀ ଦେଶରେ ଏତିକି ହିଁ ସବୁଠାରୁ ଅଧିକ କାମ ଦିଏ । ଶୁଣୁଥିବା ଲୋକମାନେ ମଧ୍ୟ ତାହାକୁ ଭାରି ଉପଭୋଗ କରନ୍ତି ।

ନିର୍ବାଚନ ଗଣତନ୍ତ୍ରକୁ ଗ୍ରହଣ କରି ନେଇଥିବା ଗୋଟିଏ ଦେଶର ଜନଗଣଙ୍କ ଲାଗି ଅନେକ ଦୃଷ୍ଟିରୁ ଏକ ଶିକ୍ଷାଳୟ ପରି କାର୍ଯ୍ୟ କରେ । ଦେଶର ଶାସନରେ

ତଦ୍ଵାରା ସେମାନେ ଅଧିକରୁ ଅଧିକ ସଚେତନ ଭାବରେ ଭାଗ ନେଇ ପାରନ୍ତି, ଆପଣାର ରାଜନୀତିକ ବିବେକକୁ ଅଧିକ ମାର୍ଜିତ ଓ ସ୍ପଷ୍ଟ କରିବାରେ ସେମାନଙ୍କୁ ଏହି ନିର୍ବାଚନ ବହୁତ ସାହାଯ୍ୟ କରିଥାଏ । ବିଭିନ୍ନ ରାଜନୀତିକ ଦଳ ଭିନ୍ନ ଭିନ୍ନ ଆଦର୍ଶକୁ ନେଇ ଗଠିତ ହୋଇଥାଏ, ସାମୂହିକ ଜୀବନର ବିବିଧ ବ୍ୟାପାରକ୍ଷେତ୍ର ସମ୍ବନ୍ଧରେ ସେମାନଙ୍କର ଭିନ୍ନ ଭିନ୍ନ ଦୃଷ୍ଟି ଓ ତେଣୁ ଭିନ୍ନ ଭିନ୍ନ ବ୍ୟାଖ୍ୟା ରହିଥାଏ । ନିର୍ବାଚନ ସମୟରେ ସେମାନେ ଜନସାଧାରଣଙ୍କ ଆଗରେ ମୂଳତଃ ସେହିଗୁଡ଼ିକର ଉପସ୍ଥାପନା କରୁଥାନ୍ତେ । ତେବେ ଅପରକୁ ଚୋର ଓ ଅଯୋଗ୍ୟ ବୋଲି ବାରଟା ବଗୁଲିଆ ଦୃଷ୍ଟାନ୍ତ ଦେଇ ବର୍ଣ୍ଣନା କରି ତାହାରି ଦ୍ଵାରା ହିଁ ଆପଣାକୁ ସାଧୁ ବୋଲି ପ୍ରମାଣ କରିବାର ଖଳ ଶ୍ରମ ଆଦୌ କରିବାକୁ ପଡୁନଥାନ୍ତା । ଦେଶର ରାଜନୀତି ତାହାହେଲେ ଅଧିକ ଭଦ୍ର ହୋଇ ପାରୁଥାନ୍ତା, ଅନ୍ତତଃ ତାହାକୁ ସତକୁ ସତ ରାଜନୀତି ବୋଲି କୁହାଯାଇ ପାରୁଥାନ୍ତା ।

ରାଜନୀତିରେ ଏଇଟା ପିତଳ ନୁହେଁ କିମ୍ବା ସେଇଟା ସୁନା ନୁହେଁ । ପ୍ରତ୍ୟେକ ଦଳର ରାଜନୀତିକ ବିଶ୍ଵାସ ଓ ରାଜନୀତିକ କଳ୍ପନାଚିତ୍ରଟି ଅଲଗା ବୋଲି ସେମାନେ ନିଜକୁ ଗୋଟିଏ ଗୋଟିଏ ରାଜନୀତିକ ଦଳ ରୂପେ ଗଠନ କରିଛନ୍ତି । ଏକ ସୁସ୍ଥ ସମାଜରେ ସେମାନେ ପରସ୍ପରର ପରିପୂରକ ମଧ୍ୟ ହୋଇପାରନ୍ତି । ରାଜନୀତିରେ ସାଧୁତାକୁ ହିଁ ସର୍ବପ୍ରଧାନ ସନ୍ତକ ବୋଲି ସ୍ଵୀକାର କରାଯାଉ ଥିଲେ ଗୋଟିଏ ଦଳ ପ୍ରକୃତରେ ଆଉ ଗୋଟିକର ପରିପୂରକ ହୋଇ ହିଁ ରହିଥାଏ । ସେହି କାରଣରୁ, ଯେଉଁ ଦଳ ଅଧିକ ଭୋଟ ପାଇ କ୍ଷମତାକୁ ଆସୁ ପଛକେ, ସେହି ଦେଶର ଶାସନରେ ଏକ ସର୍ବନିମ୍ନ ସାଧୁତା ଓ ଶାଳୀନତା ଅବଶ୍ୟ ରହିଥାଏ । ଭାରତବର୍ଷ ପ୍ରକୃତରେ କେବେ ସେହି ସାଧୁତାର ଯୋଗ୍ୟ ହୋଇପାରିବ ?

୨୪/୩/୯୦

# ପ୍ରାରବ୍ଧର ଶୂଳଃପୀଡ଼ା

ମଣିଷର ଗତଜନ୍ମର ବହୁ ସଂସ୍କାର ପ୍ରାରବ୍ଧ ରୂପେ ତା' ସହିତ ଏ ଜନ୍ମକୁ ଆସେ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି । ନିଜ ବଂଶରେ ପୂର୍ବପୁରୁଷମାନଙ୍କ ସମୟରେ ଆମର ଯେଉଁସବୁ ସଂସ୍କାର ରହିଥାଏ, ସେଗୁଡ଼ିକ ମଧ୍ୟ ଏକ କୁଳାନୁକ୍ରମୀ ଅଭ୍ୟାସରେ ଆମ ଦେହରେ ଭାରି ଲାଖି ରହିଥାଏ । ଅଥବା ଅନ୍ୟପଟୁ କହିଲେ, ଆମେମାନେ ନିଜେ ଅଠାପରି ସେହିଗୁଡ଼ିକ ସହିତ ଲାଗି ରହିଥାଉ । ଅଭ୍ୟାସର ମାୟା, ସଂସ୍କାରର ମାୟା, କୁଳର ମାୟା, ଏଗୁଡ଼ିକୁ ସହଜରେ ଛାଡ଼ି ହୁଏନାହିଁ । ଅତି ସବଳ ମଣିଷମାନେ ହିଁ ତାହାକୁ

ଛାଡ଼ିପାରନ୍ତି । କ୍ଷମତାଲିପ୍‌ସାର କବଳରେ ପଡ଼ିଯାଇଥିବା ବ୍ୟକ୍ତିମାନେ ହୁଏତ ଆଦୌ ଛାଡ଼ିପାରନ୍ତି ନାହିଁ । ସେମାନେ ହାସ୍ୟାସ୍ପଦ ହୁଅନ୍ତି, ଅପଦସ୍ତ ହୁଅନ୍ତି ।

ଆଗେ ଚତୁର୍ବେଦୀ ପରିବାର ଜମିଦାର ଥିଲେ । ସେମାନେ ମଣିଷମାନଙ୍କ ଉପରେ ଜମିଦାରୀ କରୁଥିଲେ । ତାଙ୍କ ଅନ୍ତେ ତାଙ୍କ ପିଲାଏ ପାଠ ପଢ଼ିଲେ, ରାଜନୀତି ବି କଲେ । ତଥାପି କୁଳ ସେମାନଙ୍କୁ ସତେଅବା ଅଠାପରି ଜାବୁଡ଼ି ଧରିଥିଲା । ଆଗେ ଚତୁର୍ବେଦୀ ଘରେ ତିନିଭାଇ ଥିଲେ । ସେମାନଙ୍କର ସତ ନାଆଁ ଅବଶ୍ୟ ଆଉ କଅଣ ଥିଲା । ମାତ୍ର ପ୍ରଜାମାନଙ୍କ ପାଖରେ ସେମାନେ ଆପଣାକୁ ଜଗନ୍ନାଥ, ଲିଙ୍ଗରାଜ ଓ ଲୋକନାଥ ନାମରେ ପରିଚିତ କରାଇ ରଖିଥିଲେ । ଏହି ତିନିହେଁ ହେଉଛନ୍ତି, ଜିଲ୍ଲାର ତିନିଠାକୁରଙ୍କ ନାଆଁ । ମଣିଷମାନଙ୍କର ସମ୍ପତ୍ତି ଉପରେ ଠାକୁରଙ୍କର ଅଧିକାର ଥାଏ । ବିଚରା ପ୍ରଜାମାନଙ୍କର ସମ୍ପତ୍ତି ଉପରେ ସେହି ନ୍ୟାୟରେ ଜମିଦାରଙ୍କର ନିଶ୍ଚୟ ଅଧିକାର ରହିବ । ଖାଲି ଜମିର ଫସଲ ଉପରେ ନୁହେଁ, ବାଡ଼ିରେ ଫଳୁଥିବା କାକୁଡ଼ି, ଛାତରେ ଫଳୁଥିବା କଖାରୁ ବା ଲାଉ, ଫଳନ୍ତି ଆମ୍ବଗଛ ବୁଢ଼ା ହେଲେ ତା'ର କାଠ - ଏଇସବୁ ଉପରେ ତାଙ୍କର ଅବଶ୍ୟ ଅଧିକାର ବା ଅନ୍ତତଃ ଭାଗ ରହିବ । ସେତେବେଳର ଜମିଦାର ଏକଥା ପ୍ରଜାମାନଙ୍କୁ ଭଲ କରି ବୁଝାଇ ଦେଇଥିଲେ । ପ୍ରଜାମାନେ ସବୁ ବୁଝିଯାଇଥିବା ପରି କାଳର ବୋଲ ମାନି ବାଡ଼ି ବା ଚାଳର ପ୍ରଥମ ଫଳଗୁଡ଼ିକ ଜମିଦାର ଘରେ ନେଇ ପହୁଞ୍ଚାଇ ଆସୁଥିଲେ । କୋଉଟି ଜଗନ୍ନାଥଙ୍କ ନାମରେ, କୋଉଟି ଲିଙ୍ଗରାଜଙ୍କ ନାମରେ ଏବଂ ଆଉ କେଉଁଟି ଶ୍ରୀଲୋକନାଥଙ୍କ ନାମରେ ପହୁଞ୍ଚାଇ ଦିଆଯାଉଥିଲା ।

ପ୍ରାରବ୍ଧ ସେ ପୁରୁଷରୁ ଏ ପୁରୁଷକୁ ଆସିବାଟା ଭାରତବର୍ଷରେ ଆଦୌ ବିଚିତ୍ର ନୁହେଁ । ସେମାନେ ଜମିଦାର ଥିଲେ, ଏ ପୁରୁଷ ରାଜନୀତି କଲେ, ନେତା ହେଲେ, କ୍ଷମତାକୁ ଗଲେ । ଏ ଅଞ୍ଚଳଟା ତାଙ୍କର ଥିଲା, ଏବେ ମଧ୍ୟ ତାଙ୍କରି ହୋଇ ରହିବ । ତେଣୁ ବାପ ପରେ ପୁଅ ଅବଶ୍ୟ ନେତା ହେବ, କ୍ଷମତାରେ ବସିବ । ଏ ପୁରୁଷର ଦେବତାଙ୍କୁ ମଧ୍ୟ ପ୍ରଜାମାନେ ଅଳବତ ସ୍ୱୀକାର କରି ନେବେ । ତେଣେ ଯୁଗର ଆଖି ବଦଳି ଯାଇଥାଉ ପଛକେ, ଦେଶ ଓ ଦଶର ଆବଶ୍ୟକତା ବଦଳି ଯାଉଥାଉ ପଛକେ, ଭିତରେ ତଥାପି ଆଣ୍ଠ ଜମାଇ ବସିଥିବା ପିତ୍ତର ଦମ୍ଭଟା ଅବଶ୍ୟ ରହିବ । ଦେଶ ସେଥିଲାଗି ଅବଶ୍ୟ ବାଟ ଛାଡ଼ିଦେବ, ପ୍ରଜାମାନେ ଅବଶ୍ୟ ସେକଥା ମାନିବେ । ଏହି ବ୍ୟକ୍ତିମାନେ ପ୍ରକୃତରେ ବଡ଼ ଅଭାଗା । ଏମାନଙ୍କର ସମୟ ସରିଗଲା ବୋଲି ଏମାନଙ୍କୁ କିଏ ବୁଝାଇଦେବ କେଜାଣି ?

ଶୂଳ ଅନେକଙ୍କୁ ଭାରି ସୁହାଏ, ତେଣୁ ଶୂଳପୀଡ଼ାଟା ମଧ୍ୟ କମ୍ ସୁହାଏ ନାହିଁ। ଶୂଳିଆମାନଙ୍କୁ ହୁଏତ ଶୂଳଃ ବି ଛାଡ଼ିଯିବାକୁ ଚାହୁଥାଏ, ମାତ୍ର ବିଚରା ଶୂଳିଆମାନେ ତଥାପି ଶୂଳଃକୁ ଛାଡ଼ିପାରନ୍ତି ନାହିଁ। ତେଣୁ ଭଗବାନଙ୍କର ସଂସାରରେ ଲୀଳାଟି ଲାଗି ରହିଥାଏ। ଯୁଗର ଚକ ଆଡ଼କୁ ଗଡ଼ିଗଲେ ମଧ୍ୟ ପ୍ରାରବ୍ଧର ପୋକଟି ତଥାପି ଛାଡ଼େନାହିଁ। ବୟସ ଗଡ଼ିଗଲେ ମଧ୍ୟ ମାୟା ଘାରିଥାଏ। ଆମ ଦେଶରେ ଏହି ମାୟାଧାରୀମାନେ ହିଁ ଏଠି ଆମ ରାଜନୀତିକ ଭାଗ୍ୟ ତଥା ଆକାଙ୍କ୍ଷା ଉପରେ ମାୟା ବିସ୍ତାର କରି ରହିଛନ୍ତି। ଦିଲ୍ଲୀରୁ ପିପିଲିଯାଏ ସବୁଠାରେ ଜଗନ୍ନାଥ, ଲିଙ୍ଗରାଜ ଓ ଲୋକନାଥମାନେ ଉପଦ୍ରବ କରିବାରେ ଲାଗିଛନ୍ତି। ଅସଲ ବିବେକଗୁଡ଼ିକୁ ଉପେକ୍ଷା କରିବାରେ ଲାଗିଛନ୍ତି। ଅର୍ଥାତ୍ ଅସଲ କ୍ଷମତା ଯୋଉମାନଙ୍କ ହାତରେ ରହିବ ବୋଲି କାଗଜପତ୍ରରେ କୋଉ କାଳରୁ ଘୋଷଣା ହୋଇ ସାରିଛି, ସେମାନେ ଏବେ ମଧ୍ୟ ଉପରିସ୍ଥ ଭୋଳାନାଥ ଓ ମଲ୍ଲୀନାଥମାନଙ୍କର କୋପନ ପ୍ରବୃତ୍ତି ଭିତରେ ଅପୁଚ୍ଛା ହୋଇ ରହି ଯାଇଛନ୍ତି। ଭାରତବର୍ଷରେ ଗଣତନ୍ତ୍ରକୁ ଆହୁରି ବେଶ୍ କେତେ ପାହୁଣ୍ଡ ଆଗକୁ ପକାଇବାର ଏବେ ମଧ୍ୟ ବାକି ରହିଛି।

୩୧/୩/୯୦

# ସାଧୁ ସାବଧାନ

ଯେଉଁ ସମାଜରେ ଏତେ ଟିକିଏ ହେଲେ ମଧ୍ୟ ଏକ ଅପରକୁ ଅପେକ୍ଷା ରଖିଥାଏ ବା ଏକ ଅପର ପ୍ରତି ଭୟ ରହିଥାଏ, ସେଠାରେ ଅସାଧୁମାନେ ସାଧାରଣତଃ ଭାରି ସାବଧାନ ହୋଇ ଚଳନ୍ତି। ସେମାନେ କାଳେ ଧରା ପଡ଼ିଯିବେ, ଅନ୍ତତଃ ସେହି କାରଣରୁ ମଧ୍ୟ ଲୁଚାଇ ଛପାଇ ଅସାଧୁତା କରନ୍ତି। ତେଣୁ, ହୁଏତ ଅସାଧୁତା ହେଉଥାଏ, ତଥାପି ଅସାଧୁତା ହେଉଛି ବୋଲି ବାହାରକୁ ଜଣାପଡ଼େନାହିଁ। ସାଧାରଣ ହାଉଆଟା ସତେଅବା ଅସାଧୁତାକୁ ଆଦୌ ଆରେଇ ନେଇପାରେ ନାହିଁ କି କ'ଣ କେଜାଣି, ସେହି ହାଉଆ ଭିତରେ ଅସାଧୁମାନେ ବଡ଼ ଅଶ୍ୱସ୍ତ ବୋଧ କରୁଥାନ୍ତି। ସାଧାରଣ ଜୀବନରେ ସାଧୁତା ରହିଥାଏ, ଦାଣ୍ଡରେ ସାଧୁତାର ସତକୁ ସତ ଆଦର ହେଉଥାଏ। ସାଧୁ ହେବାକୁ ମୋଟେ ଡ଼ର ମାଡୁନଥାଏ।

ଗତ ଦଶ ପନ୍ଦର ବର୍ଷ ଭିତରେ ଆମ ଦେଶରେ ରାଜନୀତିକ ଶାସନର କଳମାନେ କୋଉଠି କିଭଳି କାହିଁକି ମୋଡ଼ି ହୋଇଗଲେ କେଜାଣି, ଅସାଧୁତାଟା ହିଁ ସାଧୁତାକୁ କଳରେ ଏବଂ ବଳରେ ହରାଇ ସାଧୁତାକୁ ଏକାବେଳେକେ ଚିତ୍ କରିଦେଲା। ଅସାଧୁତାର

ମୁକ୍ତ ଆଚରଣ କରିବାକୁ ଏବଂ କବାଟ ଡାଡ଼ି ଘରେ ପଶି ଆସିବାକୁ ସତେ ଯେପରି ଆଉ କୌଣସି ସଙ୍କୋଚ ରହିଲା ନାହିଁ । ଏପରିକି ହାଉଆଗୁଡ଼ାକ ବି ସତେଅବା ଭୀତ ହୋଇ ଅନ୍ତରାଳକୁ ଚାଲିଗଲେ । ସଜ୍ଜନମାନେ ଭୀଷ୍ମ ଦ୍ରୋଣମାନଙ୍କ ପରି ଭୀରୁ ହୋଇଗଲେ । ବଡ଼ଠାରୁ ସାନ ପର୍ଯ୍ୟନ୍ତ ସମସ୍ତେ ଅତ୍ୟନ୍ତ ଖୋଲା ଖୋଲି ଭାବରେ ଅସାଧୁତାକୁ ହିଁ ଆଚରଣ ରୂପେ ଗ୍ରହଣ କରିନେଲେ । ସେମାନେ ଏପରି କରି ଭାରି ଖୁସି ହେଲେ । ସତେ ଯେପରି ଅସାଧୁତା ହିଁ ଯୁଗର ନୀତି ହୋଇଗଲା । ସାହିତ୍ୟିକ, ଶିକ୍ଷାବିତ୍, ଅଧ୍ୟାପକମାନଙ୍କଠାରୁ ଆରମ୍ଭ କରି ସାଧାରଣ ଅମଲା ଓ ଆହୁରି ଅଧସ୍ତନମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଅସାଧୁତା ସହିତ ଘର କରି ରହିବାକୁ ହିଁ କାଳର ନ୍ୟାୟ ବୋଲି ଗ୍ରହଣ କରିନେଲେ । ଅସାଧୁତା ଦାଣ୍ଡର କାରବାରରେ ପରିଣତ ହେଲା । ଚୋର ଧରିବା ସକାଶେ ବିଚାରାଳୟରେ ବିଚାର କରିବା ଲାଗି ମଧ୍ୟ ଦେଶରେ ଆଉ କେହିହେଲେ ବାକି ରହିଲେ ନାହିଁ ।

ତୁମେ ଯିଏ ଆମଠାରୁ ସ୍ୱୀକୃତି ନେଇ ଏଥର ଆସନ ଉପରକୁ ଆସିଲ, ତୁମେ ଯେ ଅସାଧୁମାନଙ୍କ ଭିତରେ ରହିଥିବା ଅସାଧୁତାକୁ ସାବଧାନ ରହିବ ତା' ନୁହେଁ, ତୁମେମାନେ ନିଜ ଭିତରେ ରହିଥିବା ଅସାଧୁତାକୁ ମଧ୍ୟ ସାବଧାନ ରହିବ । ତାକୁ ଆବିଷ୍କାର କରିବାଲାଗି ମନ ଦେବ । ତେବେ ଯାଇ ପ୍ରକୃତରେ ସାଧୁ ବୋଲି ଜଣାପଡ଼ିବ । ତୁମେମାନେ ତ ଦିନେ ସେହି ଘର ଭିତରେ ଥିଲ; ସେହି ସଂସ୍କାରରେ ଲାଳିତ ଓ ପାଳିତ ହୋଇଥିଲ, ତେଣୁ ତୁମ ନିଜ ଭିତରେ ଯେ ଡାହାଣୀ ପଶି ଯାଇ ନଥିବ ଓ ଏଥର ଭିନ୍ନ ପତାକାତଳେ ଏବଂ ଭିନ୍ନ ବେଶରେ ପୁନର୍ବାର ବାହାରକୁ ନ ବାହାରିବ, ସେକଥା କିଏ କହିବ। ରାଜନୀତିରେ ସାଧାରଣତଃ ଯାହା ନହୁଏ, ତୁମେ ତାହା କରିପାରିଲେ ଯାଇ ଆମର ବିଶ୍ୱାସଭାଜନ ହୋଇପାରିବ, ଏକ ନୂଆ ପରିମଳ ସମ୍ଭବ କରିବାର ଯୋଗ୍ୟ ହେବ ।

ରାଜନୀତିରେ ଅଯୋଗ୍ୟମାନେ ରାଜନୀତିକୁ କାବୁ କରି ରଖିଥିଲେ ଯେପରି ହୁଏ, ତାହା ହେଉଛି ଯେ, ଦଳେ କ୍ଷମତାକୁ ଆସିଲେ ଆର ଦଳଟାକୁ ସବୁଥିପାଇଁ ଦୋଷୀ କରନ୍ତି, ସେମାନଙ୍କୁ ଘଣା ଭିତରେ ଆଣି ପକାନ୍ତି ଏବଂ ତାହାରି ଉଦ୍ଧୁଆଳରେ ନିଜେ ମୁକ୍ତି ପାଇଯାଆନ୍ତି । ସେମାନେ ଆସନରେ ବସିଥିବାରୁ ସେମାନଙ୍କୁ କେହି କିଛି କହିବାକୁ ସାହସ କରି ପାରେ ନାହିଁ । ପୁଣି ଚକ ବଦଳିଗଲେ ଯାଇ କିଞ୍ଚିତ୍ ଓଲଟପାଲଟ ହୁଏ । ଏ ଦଳ ଦଣ୍ଡ ଦିଅନ୍ତି, ଆଗରୁ ଦଣ୍ଡ ଦେଇ ଆସିଥିବା ଦଳ ଦଣ୍ଡ ଭୋଗନ୍ତି, ଧଡ଼ିବାଜର ଦଶାକୁ ଭଜି ମୁହଁ ଲୁଚାନ୍ତି । ଏଥର ଏହି ଅବର୍ଜିଆ ଅଭିନୟ ନହେଉ । ଅସାଧୁତାକୁ ଖୋଜି ବାହାର କରିବା ପାଇଁ ଆର ପୋଖରୀଟା ପରି ତୁମ ପୋଖରୀରେ ମଧ୍ୟ ଜାଲ ପଡୁ । ମଥୁରାରେ ଜାଲ ପଡୁ, ଗୋପରେ ମଧ୍ୟ ଜାଲ ପଡୁ । ନହେଲେ ତୁମେ ଅସାଧୁମାନଙ୍କୁ

ଧରାଇବାରେ ତେଣେ ଢୋଲ ପିଟି ଦଉଡୁଥିଲା ବେଳେ ଏଣେ ତୁମରି ଘରେ ଅସାଧୁତା ଲୁଚି ବସିଥିବ । କାଲକୁ ଫୁଟ୍‌କି ମାରୁଥିବ ।

୭/୪/୯୦

# ଓଡ଼ିଶା ବଞ୍ଚାଅ

ସମସ୍ତେ ଭାବୁଛନ୍ତି, ସେମାନେ ସବାଆଗ ନିଜେ ବଞ୍ଚିଲେ ଯାଇ ଓଡ଼ିଶା ବଞ୍ଚିବ । ମୂଳତଃ ଆପଣାକୁ ସବାଆଗ ସବା ଉପରକୁ ଅର୍ଥାତ୍ ସବୁଯାକ ସଫଳତା ମଧ୍ୟକୁ ନେଇଯିବେ ବୋଲି ସେମାନେ ଆନ୍ଦୋଳନ କରି ବାହାରିଛନ୍ତି । ଓଡ଼ିଶା ଲାଗି ଆଦୌ କେହି ବାହାରି ନାହାନ୍ତି । ଓଡ଼ିଶା ଲାଗି ବାହାରିବା ଲୋକେ ଆଗେ ଥିଲେ । ସେମାନେ ମରି ଉଡ଼ିଗଲେଣି । ସେମାନଙ୍କର ମୂର୍ତ୍ତିଗୁଡ଼ିକୁ ଆମେ ଛକଜାଗାମାନଙ୍କରେ ଅବଶ୍ୟ ଦେଖିବାକୁ ପାଇବା ।

ଗୋଟାଏ ପଟ କହୁଛନ୍ତି, କଂଗ୍ରେସ ହଟାଅ, ଓଡ଼ିଶା ବଞ୍ଚାଅ । ଠିକ୍ ତାଙ୍କରି ଭଳି ଦିଶୁଥିବା ଅନ୍ୟମାନେ ଅନ୍ୟପଟୁ ଥାଇ କହୁଛନ୍ତି, କଂଗ୍ରେସକୁ ଜିତାଅ, ଓଡ଼ିଶା ବଞ୍ଚାଅ । କାମ ପାଇନଥିବା ଅଥଚ କାମ ପାଇବେ ବୋଲି ଏକଦା ପାଠ ପଢ଼ିଥିବା ନିକିମା ଇଞ୍ଜିନିୟରମାନେ ରାସ୍ତାକଡ଼ରେ ପତାକା ବାନ୍ଧି ବସିଛନ୍ତି ଓ କହୁଛନ୍ତି, ବେକାର ଇଞ୍ଜିନିୟରମାନଙ୍କୁ କାମ ଯୋଗାଇଦିଅ । ଓଡ଼ିଶା ବଞ୍ଚାଅ । ଶିକ୍ଷକମାନେ ଓଡ଼ିଶାର ଦୂରଦୂରନ୍ତ ସ୍ଥାନରୁ ରାଜଧାନୀକୁ ଆସି ହୁରି କରି ରାସ୍ତା ଉପରେ ସତେଅବା ତିନିପୁରଯାକକୁ ଶୁଭିଲାଭଳି କହୁଛନ୍ତି, ଶିକ୍ଷକମାନଙ୍କର ଦାବୀପୂରଣ କର, ଶିକ୍ଷା ବଞ୍ଚାଅ, ଓଡ଼ିଶାକୁ ବି ବଞ୍ଚାଅ । କୋଉ ବେସରକାରୀ ତୋଟାତଳିଆ କଲେଜର ଛାତ୍ରମାନେ ଦାଣ୍ଡରେ ଶୋଭାଯାତ୍ରାରେ ବାହାରିଛନ୍ତି ଏବଂ "ହେ ସରକାର, ଆମ କଲେଜକୁ ତୁମେ ହାତକୁ ନିଅ, ଓଡ଼ିଶା ବଞ୍ଚାଅ'' ବୋଲି ଦୁନ୍ଦୁଭି ବାଡ଼ାଉଛନ୍ତି । ଏହି ଓଡ଼ିଶାଟା ବଞ୍ଚୁ ବୋଲି ଯେତେବେଳେ ଏତେ ଏତେ ଆନ୍ଦୋଳନକାରୀ ପାଟି କରି ଦାଣ୍ଡକୁ ଆସିଲେଣି, ସେତେବେଳେ ଏ ସମସ୍ତଙ୍କର ଆତ୍ମକାମୀ ଉପଦ୍ରବରେ ମୃତପ୍ରାୟ ଓଡ଼ିଶାଟା ମଧ୍ୟ ନିଶ୍ଚୟ ଛାନିଆ ହୋଇ ଉଠୁଥିବ ।

ଏହି ଧ୍ୱନିଗୁଡ଼ାକ ଶୁଣି ବେଳେବେଳେ ଭାରି କହିବାକୁ ମନ ହୁଏ, ଆପଣମାନେ ସମସ୍ତେ ଅପସରି ଚାଲିଗଲେ ଯାଇ ଓଡ଼ିଶା ବଞ୍ଚିବ । ଚଲାଖମାନେ ବିଦାହୋଇ ଯାଇସାରିଲେ ଯାଇ ଏଭୂଇଁ ସତକୁ ସତ ରହିବ । ଏମାନେ ସମସ୍ତେ ଭୋଗୀ, ଓଡ଼ିଶାକୁ ଭୋଗ କରିବାକୁ ଚାହାନ୍ତି । ଲକ୍ଷ ଲକ୍ଷ ସାଧାରଣଙ୍କୁ ବଞ୍ଚିତ କରି ଏମାନେ ଏହି ଭୂଇଁରୁ

ଯଥାସମ୍ଭବ ଅଧିକ ଫାଇଦା ଦୁହିଁନେବାକୁ ଇଚ୍ଛା କରନ୍ତି । ଏମାନେ କେହି ଓଡ଼ିଶାକୁ ଚାହାନ୍ତି ନାହିଁ, କେବଳ ନିଜକୁ ଚାହାନ୍ତି । ଓଡ଼ିଶାକୁ ବଞ୍ଚାଇବାଟା ବଜାରରେ ଇତିମଧ୍ୟରେ ଗୋଟାଏ ଉତ୍ତେଜକ ବୋଲିରେ ପରିଣତ ହୋଇ ଯାଇଥିବାରୁ ହିଁ ଏମାନେ ଓଡ଼ିଶାର ନାମକୁ ବ୍ୟବହାର କରୁଛନ୍ତି । ଏମାନେ କ୍ଷମତା ଚାହାନ୍ତି, ଚାକିରି ଚାହାନ୍ତି, ଅପ୍ରମିତ ଦୁଃଖ ଭିତରେ ଏମାନେ ସବାଆଗ ନିଜେ ଅପ୍ରମିତ ସୁଖରେ ସନ୍ତରଣ କରିବାକୁ ଚାହାନ୍ତି ।

ଓଡ଼ିଶା ସେଦିନ ଯାଇ ବଞ୍ଚିବ, ଯେଉଁଦିନ ଓଡ଼ିଶାର ସବାତଳେ ରହିଥିବା ମଣିଷମାନଙ୍କ ସ୍ତରରେ ଶକ୍ତିର ସଞ୍ଚରଣ ହେବ । ବାବୁମାନେ, ନେତାମାନେ ଓଡ଼ିଶାକୁ ଖାଇଯିବେ ସିନା, କଦାପି ବଞ୍ଚାଇ ପାରିବେନାହିଁ । ଗତ ଚାଳିଶି ବର୍ଷର ପଙ୍କଗୁଡ଼ାକ ସେମାନଙ୍କୁ ପାଷଣ୍ଡ କରି ସାରିଲାଣି । ସେମାନେ ଆଦୌ କାହାରି ପାଇଁ ବଞ୍ଚି ଜାଣିନାହାନ୍ତି । ଏମାନେ ତୁଚ୍ଛା ନିଜଟା ଲାଗି ହିଁ ପାଠ ପଢ଼ିଛନ୍ତି, ତୁଚ୍ଛା ନିଜଟା ଲାଗି ହିଁ ରାଜନୀତି କରୁଛନ୍ତି, – ନିଜଟା ବ୍ୟତୀତ ଏମାନଙ୍କୁ ସତେଅବା ଆଉ କିଛିହେଲେ ଦେଖାଯାଉନାହିଁ । ନିଜ ନାଭିରେ ଏମାନେ ନିଜେ ଗୁରାଇ ତୁରାଇ ହୋଇ ବସିଛନ୍ତି । ତେଣୁ, କନାଗୁଡ଼ାକରେ କିମ୍ବା ବାନାଗୁଡ଼ାକରେ, ପାଚେରୀରେ ମରାହୋଇଥିବା କାଗଜଗୁଡ଼ାକରେ ଯାହାସବୁ ଲେଖାହୋଇଛି, ଆମେ ସେଗୁଡ଼ାକରେ ମୋଟେ ବିଶ୍ୱାସ କରିବା ନାହିଁ । ସତକୁ ସତ ଦିନେ ନା ଦିନେ ଯେଉଁ ବିପ୍ଳବ ହେବ ଅଥବା ଯେଉଁ ପରିବର୍ତ୍ତନ ଆସିବ, ଆମେ ତାହାରି ଲାଗି ଅପେକ୍ଷା କରି ରହିବା । ଇଚ୍ଛା କଲେ ଆମେ ସେହି ବିପ୍ଳବରେ ନିମିତ୍ତ ମଧ୍ୟ ହୋଇପାରିବା ।

୧୪/୪/୯୦

# ତୁମ ଆମଙ୍କ ସାନ ପୃଥିବୀ

ତୁମ ଆମ ପୃଥିବୀ, ଏକାନ୍ତ ଭାବରେ ଏକ ଅତ୍ୟନ୍ତ ସାନ ପୃଥିବୀ । ଏହି ପୃଥିବୀଟା ବଡ଼ ହୋଇଥିଲେ ସତେଅବା ତାକୁ ଆମର ମୋଟେ କୁଣ୍ଡ ପାଆନ୍ତା ନାହିଁ । ଆମେ ସତେଅବା ସ୍ୱୟଂ ମନ କରି ଆମ ପୃଥିବୀଟିକୁ ଯେପରି ଯଥାସମ୍ଭବ ଅଧିକରୁ ଅଧିକ ଛୋଟ କରି ଆଣିଥାଉ, ସମ୍ଭବତଃ ଠିକ୍ ସେହି ଅନୁପାତରେ ଆମ ପୃଥିବୀଟି ମଧ୍ୟ ଯଥାସମ୍ଭବ ଛୋଟ ହୋଇ ରହିଥାଏ । ଛୋଟ ନହେଲେ, ଅମୁହାଁ ଦେଉଳଟିଏ ପରି ନହେଲେ ସତେଅବା ଆମକୁ ପ୍ରାୟ କିଛିହେଲେ ଏକାନ୍ତ ଲାଗେନାହିଁ । ନିବିଡ଼ତାର ଅନୁଭୂତି ଲାଭ କରିବାକୁ ଅନେକ ମଣିଷ ନିଜ ତିଆରି ସାନ ଗମ୍ଭାରିଟିଏ ଭିତରକୁ ଚାଲିଯାଆନ୍ତି । ଭଲ ପାଇବାକୁ ବ୍ୟକ୍ତିଗତ, ଏକାନ୍ତ ବ୍ୟକ୍ତିଗତ ଜୀବନ ବୋଲି କହନ୍ତି ।

ଭଲ ପାଇବାକୁ ମନ ହେଲେ କବାଟ ଆଉଜାଇ ଦିଅନ୍ତି, ଆଲୁଅ ନିଭାଇ ଦିଅନ୍ତି । ଭଗବାନଙ୍କୁ ସତେଅବା ନିବିଡ଼ ଓ ଏକାନ୍ତ ଭାବରେ ପାଇବେ ବୋଲି ଭଗବାନଙ୍କ ଆଗରେ ଯାଇ ବସିବାବେଳେ ଆଖିବୁଜି ଦିଅନ୍ତି । ସେମାନଙ୍କ ଜୀବନରେ ଗଉଣୀଗୁଡ଼ିକ, କାଠିଗୁଡ଼ିକ ଏତେ ସାନ ସାନ ହୋଇ ସତେଅବା ବରାଦ ଦିଆହୋଇ ତିଆରି ହୋଇଥାଏ ଯେ, ସେମାନଙ୍କର ଆଖି ବଳେବଳେ ବୁଜି ହୋଇଯାଏ । ମୋଟେ ପରିଶ୍ରମ କରିବାକୁ ପଡ଼େନାହିଁ ।

କିଏ ପାଠ ପଢୁଛି, ତେଣୁ ପାଠପଢ଼ାର ସବୁଯାକ ଫଳ ତାହାରି । କିଏ ଚାକିରିଟିଏ କରୁଛି, ଚାକିରି ଗଛରୁ ଯଥାସମ୍ଭବ ସବୁଯାକ ଫଳ ଦୁହିଁ ଆଣି ନିଜର ଘରଟି ଭର୍ତ୍ତି କରି ଦେଇପାରିଲେ ଯାଇ ଚାକିରିର ଅସଲ ସାର୍ଥକତା । ଆଉ କିଏ ହୁଏତ ରାଜନୀତି କରୁଛି ଏବଂ କ୍ଷମତାରେ ବସୁଛି; କ୍ଷମତାରୂପକ କାମଧେନୁଟିକୁ ଜାଅନ୍ତା ହେଉ ଅଥବା ଘାଇଲା ହେଉ, ନିଜ ଘର ଭିତରକୁ ଯେକୌଣସି ପ୍ରକାରେ ବୋହିଆଣି ପାରିଲେ ଯାଇ ତା'ର ଏହି ଦୁର୍ଲଭ ନରଜନ୍ମର ସାର୍ଥକତା । ନିଜ ପୃଥିବୀକୁ ସାନ ମଣିଲେ ମଣିଷମାନେ ସଚରାଚର ଏହିଭଳି କରନ୍ତି । ଏହିଭଳି ମଣିଷମାନେ ହିଁ ପୃଥିବୀଟାକୁ ସାନ ବୋଲି ଦେଖନ୍ତି ଓ ତାହାକୁ ଅଳବତ ନିଜର ଭୋଗ ଲାଗି ନିଜଘରକୁ ବୋହି ଆଣିବା ସମ୍ଭବ ହେବ ବୋଲି ବିଚାର କରୁଥାନ୍ତି ।

ଖବରକାଗଜରେ ସବୁ କିସମର ମଣିଷଙ୍କର ମନ ତୋଷିବା ପାଇଁ ଖବରସବୁ ବାହାରେ । ସମ୍ପାଦକମାନେ କେତେ ବୁଦ୍ଧି ଖର୍ଚ୍ଚ କରି ପୃଥିବୀରେ କେତେ କିସମର ଅର୍ଥାତ୍ କେତେ ସବୁ ରୁଚିର ପାଠକ ଅଛନ୍ତି ବୋଲି ଚିନ୍ତା କରିଥାନ୍ତି ଓ ସେଥିଲାଗି ସଭିଙ୍କର ମନୋରଞ୍ଜନ ଲାଗି ବରାଦ କରିଥାନ୍ତି । ଅମୁକ ଗୋଷ୍ଠୀର ଖବର ଅମୁକ ପୃଷ୍ଠାରେ ନିୟମିତ ବାହାରିବ ବୋଲି ଯୋଜନା କରା ହୋଇଥାଏ । ରାଜନୀତି ଖବର, ସାହି ଖବର, ଖେଳ ଖବର, ସିନେମା ଜଗତର ଖବର - ଏସବୁ ଯଦି ଯେଉଁଠି ମନ ସେଠି ବାହାରୁଥାନ୍ତା, ତେବେ କେବଳ ନିଜ ସାନ ପୃଥିବୀଟିକୁ ସାଙ୍ଗରେ ଧରି ଜୀବନ ବଞ୍ଚୁଥିବା ପାଠକମାନେ ଭାରି ହରବର ହୋଇଯାଉଥାନ୍ତେ । ଖବରକାଗଜ ଧରିବା ମାତ୍ରକେ ସେମାନଙ୍କୁ ଜଙ୍ଗଲ ଭିତରେ ପଶିଥିବା ପରି ଲାଗୁଥାନ୍ତା ।

ଯାହାର କେବଳ ଖେଳଖବର ଦେଖିବା କଥା, ସିଏ କେବଳ ଖେଳ ପୃଷ୍ଠାଟିକୁ ଦେଖିବ । ରାଶିଫଳ ଦେଖିବାକୁ ଟାକି ବସିଥିବା ମଣିଷ ସବାଆଗ ସେହି ପୃଷ୍ଠାଟିକୁ ଆବିଷ୍କାର କରିବ । ଚାକିରି ଖୋଜୁଥିବା ପୁଅ ଓ ତା' ବିଷୟରେ ବ୍ୟସ୍ତ ହେଉଥିବା ବାପ ସବୁ ଛାଡ଼ି ନିଯୁକ୍ତିର ବିଜ୍ଞାପନଗୁଡ଼ିକୁ ଦେଖିବ । ମାଲଗୋଦାମର ମଣିଷଟି ବାଣିଜ୍ୟର

ପୃଷ୍ଠାଟିକୁ ଦେଖିବ ଏବଂ ଝିଅଟିଏ ମୁଣ୍ଡରେ ବୋହିଥିବା ବିବ୍ରତ ମଣିଷଟିଏ ତା'ର ଦରକାରୀ ପୃଷ୍ଠାଟିକୁ ସବାଆଗ ବାହାର କରି ତାହାକୁ ହିଁ ପଢ଼ିବ । ଆଗେ ତ ପୃଥିବୀ ମନକୁ ମନ ଛୋଟ ଥିଲା । ବେଶୀ ଦୂରକୁ ଯାଇ ହେଉନଥିଲା ବା ବେଶୀ ଦୂରକୁ ହାତ ଲମ୍ୱାଇ ହେଉନଥିଲା । ଚିହ୍ନା ପୃଥିବୀଟିକୁ କୁଣ୍ଢାଇ ଧରିବାକୁ ତଥା ଚିହ୍ନା ଗାତର ଭିତରେ ନିବିଡ଼ ଭାବରେ ନଶ୍ୱର ଜୀବନଟିକୁ ବଞ୍ଚିବାକୁ ସେତେବେଳେ ମଣିଷକୁ କେଡ଼େ ଉଷତ ଲାଗୁଥିବ । ବର୍ତ୍ତମାନ ବଡ଼ ପୃଥିବୀଟିକୁ ମଧ୍ୟ ମୁଣ୍ଡ ଥିବା ଲୋକମାନେ ସାନମୁଣ୍ଡ ସାଧାରଣଙ୍କ ନିମନ୍ତେ ଭାଗ ଭାଗ କରି ରଖି ଦେଇଛନ୍ତି, ତଦ୍ୱାରା ସତକୁ ସତ କେଡ଼େ ଭଲ ନହୋଇଛି ।

ଆଗେ ସାହିତ୍ୟ ଥିଲା, ସଙ୍ଗୀତ ଥିଲା, କଳା ଥିଲା, ସଂସ୍କୃତି ମଧ୍ୟ ଥିଲା । କିନ୍ତୁ ସେତେବେଳେ ତାହାକୁ କେହି ଆମ ସାହିତ୍ୟ ବା ଅମୁକ ଦେଶର ସାହିତ୍ୟ ବୋଲି ମୋଟେ କହୁନଥିଲେ । ଏପରି କହିବା ପାଇଁ ସେକାଳର ପରିମଳରେ କୌଣସି ବ୍ୟାକରଣ ହିଁ ଲେଖା ହୋଇନଥିଲା । ଠିକ୍ ସେହିପରି କଳା, ସଙ୍ଗୀତ ଓ ସଂସ୍କୃତି । ଏବେ ଯାଇ ବୁଦ୍ଧିଆ ମଣିଷମାନେ ସେଗୁଡ଼ିକୁ ଭାଗ ଭାଗ କଲେ, ନିକଟକୁ ନିଜର ଏକାନ୍ତ ସମ୍ପତ୍ତି ବୋଲି ଜାଣିଲେ । ଆଗେ ଭୂମି ଅବଶ୍ୟ ଥିଲା, ମାତୃଭୂମି ଅଥବା ପିତୃଭୂମି କଥାଟି ଏବେ ବାହାରିଲା । ଆଗେ ଭଗବାନ ସର୍ବତ୍ର ପୂରି ରହିଥିଲେ ବୋଲି ସମ୍ଭବତଃ ତାଙ୍କୁ ଦରକାର ମାତ୍ରକେ ଗଛରେ ଚଢ଼ିଯାଇ ତୋଳି ଆଣି ହେଉନଥିଲା । ତେଣୁ, ସତେଅବା ବାଧରେ ପଡ଼ି, ଧର୍ମରୁ ତୋ' ଧର୍ମ ହେଲା, ମୋ' ଧର୍ମ ହେଲା, ତୋ' ଧର୍ମ ମୋ' ଧର୍ମ ଅନୁସାରେ ଅଲଗା ଅଲଗା ଦେଉଳମାନ ତୋଳା ହେଲା । । ଭଳିକୁ ଭଳି ଦିଅଁମାନେ ବାହାରିଲେ । ଚିତାପଇତା ଭଳି ଭଳି ହେଲା । ତଦ୍ୱାରା ଯାହାକୁ ଚିତା କଟା ହୋଇଥାଉ ପଛକେ, ମଣିଷମାନେ ନିବିଡ଼ ଭାବରେ ନିଜର ଦରବଟିକୁ ପାଇଲେ, ସମ୍ପତ୍ତି ରୂପେ ଭୋଗ କଲେ, ନିଜର ଧର୍ମ ସକାଶେ ପ୍ରାଣ ଦେବାର ଓ ଖଣ୍ଡା ଦେଇ ନିଜ ଧର୍ମର ରକ୍ଷା କରିବାକୁ ନୂଆ ମନ୍ତ୍ରଟିଏ ମଧ୍ୟ ଶିକ୍ଷା କଲେ । ଧର୍ମ ଅନୁସାରେ, ଭେକ ଅନୁସାରେ, ବାଦ ଓ ଆଦର୍ଶ ଅନୁସାରେ ଧରାପରା ଲାଗିଲା, ଧରାପରାରୁ ମଣିଷମାନେ ହଣାହଣି ହେଲେ, – ଏବେ ମଧ୍ୟ ହେଉଛନ୍ତି । ବିଚିତ୍ର ଭାବରେ ନିଶାରେ ଭୋଳ ହୋଇ ରହିଛନ୍ତି ।

ଆମ ପୃଥିବୀଟି ସାନ ହୋଇ ଆସିଲେ ଆମ ମୁଣ୍ଡଭିତରେ ନିଶା ଘାରେ । ହୃଦୟଟାକୁ ଆଣି ଗାତ ଭିତରେ ପୂରାଇ ଦିଆଗଲେ ମଣିଷମାନେ ପରସ୍ପର ଆଡ଼କୁ ଖଣ୍ଡା ଉଞ୍ଚାନ୍ତି, ଖଣ୍ଡା ଉଞ୍ଚାଇବାର ଯାବତୀୟ ଦୁରାଚାର ଆମ ରାଜନୀତି ଭିତରେ ଆସି ପଶିଯାଏ । ମଣିଷଟା ସତେଅବା ଗର୍ତ୍ତଲୋଭୀ ଏତେ ବଡ଼ ଗୋଟିଏ ପୋକରେ ପରିଣତ ହୋଇଯାଏ । ପୋକଜୀବନର ଯେଉଁ ତଥାକଥିତ ନିବିଡ଼ତା, ତାହା କ'ଣ ଯଥାର୍ଥ ନିବିଡ଼ତା ? ବଡ଼

ପୃଥିବୀରେ ଏହି ସାନ ହୋଇ ରହିବ ବୋଲି ଆଣ୍ଠ କରି ବସିଥିବା ବଡ଼ ପୋକଟିକୁ ସେକଥା କିଏ କିପରି ବୁଝାଇ ପାରିବ କେଜାଣି ?

୨୧/୪/୯୦

# ବଡ଼ ପୃଥିବୀରେ ତୁମେ ଓ ଆମେ

କୋଉଠି ବଡ଼ ପୃଥିବୀଟିଏ ରହିଛି ବୋଲି ଆମର ଛୋଟ ପୃଥିବୀଟି ଚଳୁଛି । କେବଳ ଛୋଟ ପୃଥିବୀଟି ନୁହେଁ, ବଡ଼ ପୃଥିବୀଟି ମଧ୍ୟ ଆମ ଭିତରେ ରହିଛି । ସାମୂହିକ ଜୀବନଟିଏ ଆମକୁ ଆବେଷ୍ଟନ କରି ରହିଛି ଓ ଆବେଷ୍ଟିତ କରି ଧରିଛି ବୋଲି ଆମ ବ୍ୟକ୍ତିଗତ ଜୀବନ ସମ୍ଭବ ହୋଇ ପାରୁଛି । ପରିବାରଟିଏ ନଥିଲେ କେବଳ ଜଣେ ବ୍ୟକ୍ତି ହିସାବରେ ଆମର ଜୀବନ କିପରି ସମ୍ଭବ ହୁଅନ୍ତା ? ଦେଶଟିଏ ନଥିଲେ ଆମର ଏହି ପ୍ରିୟ ପ୍ରଦେଶଟି ପ୍ରକୃତରେ କେଉଁଠି ଥାଆନ୍ତା ? ପୃଥିବୀଟିଏ ପ୍ରକୃତରେ କେଉଁଠି ଥାଆନ୍ତା ? ପୃଥିବୀଟିଏ ନଥିଲେ ଆମ ପ୍ରିୟ ଓ ପୂତ ନିଜ ଦେଶଟି ମଧ୍ୟ କିଭଳି ଆତଯାତ ହୋଇ ପାରନ୍ତା ? ଏକ ଜାଗତିକ ଜୀବନଧର୍ମ ମଣିଷର ସମଗ୍ର ପୃଥିବୀକୁ ଆବୋରି ଧରି ନଥିଲେ ଏହିସବୁ ଧର୍ମ କୁଆଡୁ ଭିଆଣ ହୋଇ ଆସିଥାନ୍ତା ?

ଅସଲ ଧର୍ମଟିକୁ କିଳି ଗୋଟାସୁଦ୍ଧା ସତେଅବା ନିଜର କରି ଦେଖିଲେ ଆମେ ହିନ୍ଦୁଧର୍ମ ଦେଖିବା, ଇସଲାମ ଧର୍ମ ଦେଖିବା କିମ୍ବା ଖ୍ରୀଷ୍ଟିଆନ୍ ଧର୍ମ ଦେଖିବା । ଆଗ ନିଜକୁ ହିନ୍ଦୁ ବୋଲି ନିଠ ମାରି ଦେଖିବାକୁ ଚେଷ୍ଟା କଲେ ଯାଇ ଆଉ କିଏ ଶିଖ, ବୌଦ୍ଧ ଅଥବା ଜୈନ ପରି ଦେଖାଯିବ । ନିଜ ଘର ଭିତରେ ନିଜକୁ ଶୁଦ୍ଧତମ ଏବଂ ଉଚ୍ଚତମ ବୋଲି ଦେଖିବାକୁ ଆମର ସରାଗ ଅତିରିକ୍ତ ହେବାକୁ ମନକଲେ ଯାଇ ଅନ୍ୟମାନେ ଆମକୁ ମ୍ଳେଚ୍ଛ ଅଥବା କାଫେର୍ ପରି ଦେଖାଯିବେ । ତାପରେ ଆମ ଘର ଓ ବାହାର ଭିତରେ ଘୋର କନ୍ଦଳ ଲାଗିଯିବ; ରାମ ଜନ୍ମଭୂମିକୁ ବାବରୀ ମସ୍‌ଜିଦ୍ ମାଡ଼ିବସିଛି ବୋଲି ଦେଖାଯିବ । କିଳି ହୋଇ ରହିଥିବା ଏହି ଘରଟିର ଝରକାଗୁଡ଼ିକୁ ଖୋଲି ଦେଲେ ଆମ ନିଜ ଧର୍ମ, ନିଜ ପୀଠ ଓ ନିଜର ପିଣ୍ଡଟି ଭିତରେ ମଧ୍ୟ ଆମେ ବିଶ୍ୱଯାକର ଧର୍ମ, ବିଶ୍ୱଯାକର ପୀଠ ଓ ବିଶ୍ୱତମାମର ଅସଲ ପିଣ୍ଡଟିକୁ ଅନୁଭବ କରିବାକୁ ଆରମ୍ଭ କରିବା ।

ଜୀବନଟା ଯେତେବେଳେ ସତେଅବା କେଉଁ ଉପଦ୍ରବର ଗରଜରେ ପଡ଼ି ଗୋଟାସୁଦ୍ଧା ନିଜ ଭିତରକୁ କିଳି ହୋଇ ଆସେ, ସେତେବେଳ ତାହା ଏକ ସ୍ୱାର୍ଥରେ ପରିଣତ ହୋଇଯାଏ । ସେତେବେଳେ ଜୀବନ କହିଲେ ହିଁ ଆମେ ନିଜର ତଥାକଥିତ

ସ୍ୱାର୍ଥଗୁଡ଼ିକୁ ବୁଝୁ । ଗାତ ଭିତରେ ଥାଇ ବିଶ୍ୱକୁ ଦେଖୁ, ତେଣୁ ସତକୁ ସତ କିଛି ଦେଖି ପାରୁନାହିଁ । କାନ୍ଥଗୁଡ଼ାକ ଏଡ଼େ ଉଚ୍ଚ ହୋଇ ଛିଡ଼ା ହୋଇଥିବା ପର୍ଯ୍ୟନ୍ତ କାନ୍ଥ ବାହାରେ ଗୋଟାଏ ପୃଥିବୀ ରହିଛି ବୋଲି ଆମେ ଜାଣିପାରିବା କିପରି ? ଅନେକ ମଣିଷ ଘରକୁ ଅଲକ୍ଷଣା ରଖି ଏହି କାନ୍ଥଗୁଡ଼ାକୁ ହିଁ ଉଚ୍ଚରୁ ଆହୁରି ଉଚ୍ଚ କରିବାରେ ଲାଗିଥାନ୍ତି । ଧନ କମାନ୍ତି, ଜ୍ଞାନ କମାନ୍ତି, ପୁଣ୍ୟ କମାନ୍ତି, ମାତ୍ର ସବୁକିଛି ଏହି କାନ୍ଥଗୁଡ଼ାକୁ ଅଧିକରୁ ଅଧିକ ଉଚ୍ଚ କରିବାରେ ହିଁ ଖରଚ ହେବାରେ ଲାଗିଥାଏ ।

ଏହି କାଟର ମଣିଷମାନେ ଯାବତୀୟ ଆଡ଼ମ୍ବର ସତ୍ତ୍ୱେ ଭାରି ଅଲକ୍ଷଣା ହୋଇ ରହନ୍ତି ଓ ସାରା ପୃଥିବୀଟାକୁ ଅଲକ୍ଷଣା କରି ରଖିଥାନ୍ତି । ଏମାନଙ୍କର ରାଜନୀତି ଜଗତକୁ ଭାରି ନିଃସ୍ୱ କରି ରଖିଥାଏ । ସଂସାରରେ ଛଅଗୁଣ ଅଧିକ ସମ୍ପଦ ମହଜୁଦ ହୋଇ ରହିଥାଏ, ତଥାପି ସଂସାରରେ ଅଧେ ମଣିଷଙ୍କର ପେଟ ପୂରେ ନାହିଁ; ଶିକ୍ଷାରେ ପେଟୁଆମାନେ ଘୋର ଓ ଆହୁରି ଘୋର ଗବେଷଣାମାନ କରିବାରେ ଲାଗିଥାନ୍ତି, ଅଥଚ ପୃଥିବୀର ଅଧେ ପିଲା ଇସ୍କୁଲକୁ ଆସି ପାରୁନାହାନ୍ତି । ଆମ ତୁମ ଗାଆଁକୁ ହୁଏତ ସବୁଦିନିଆ ରାସ୍ତାଖଣ୍ଡେ ନଥାଏ, ମାତ୍ର ତେଣେ ପାରିଲା ଘରର ପୁଅମାନେ ମଙ୍ଗଳ ଓ ବୃହସ୍ପତି ଆଦି ଗ୍ରହମାନଙ୍କୁ ଯାତ୍ରା କରିବାର ବରାଦ କରୁଥାନ୍ତି । ବିଜ୍ଞାନ ପକ୍ଷୀରାଜ ଘୋଡ଼ା ଉପରେ କାନ ଦୁଇଟାକୁ ଏଡ଼େ ଏଡ଼େ ଫୁଲାଇ ବସିଥାଏ ସିନା, ମାତ୍ର ତେଣେ ତା'ର ପେଟ କାମୁଡ଼ି ଦେଉଥାଏ ।

ନିଜକୁ ନିଜଠାରୁ ବୃହତ୍ତର କୌଣସି ଏକ ଆୟତନ ଭିତରେ ଦେଖିବା, ସମ୍ଭବତଃ ତାହା ଅସଲ ଦେଖିବା । ନିଜ ଦେଶଟିକୁ ବୃହତ୍ତର ପୃଥିବୀର ଏକ ପୃଷ୍ଠଭୂମି ଉପରେ ଦେଖିବା, ନିଜ ପ୍ରଦେଶଟିକୁ ସମଗ୍ର ଦେଶର ବୃହତ୍ତର ମାନଚିତ୍ରଟି ଉପରେ ଦେଖିବା ଓ ତେଣୁ ତାହାକୁ ଅନ୍ୟ ସବୁଯାକ ପ୍ରଦେଶମାନଙ୍କ ସହିତ ଏକତ୍ର ସାମିଲ କରି ଦେଖିବା, ନିଜ ଅଥବା ନିଜ ପରିବାରର ଭାଗ୍ୟଟିକୁ ନିଜ ଚାରିପାଖରେ ବାସ କରୁଥିବା କୋଟି କୋଟି ମଣିଷଙ୍କର ଭାଗ୍ୟ ସହିତ ଏକାଠି ଗଅଁଠାଇ କରି ଦେଖିବା, ନିଜର ଗାତରୁ ବାହାରି ଆସି ପାରିବା ପାଇଁ ସମ୍ଭବତଃ ଏହାହିଁ ହେଉଛି ସବୁଠାରୁ ସୁନିଶ୍ଚିତ ଉପାୟ । ତେବେ ଏହି ବଡ଼ ପୃଥିବୀ ପରି ଆମର ନିଜ ଘରଟି ମଧ୍ୟ ସତକୁ ସତ ବଡ଼ ହୋଇ ଦିଶିବ ଓ ଆମ ସ୍ୱପ୍ନଗୁଡ଼ିକର ଚେରମାନେ ଯଥାର୍ଥରେ ଏକ ଗଭୀର ତଳକୁ ସ୍ପର୍ଶ କରି ପାରିବେ ।

ପୃଥିବୀରେ ଏବେ ସବୁଠାରୁ ବଡ଼ ପ୍ରୟୋଗଟି ସେହି ସତ୍ୟକୁ ଆଧାର କରି ଚାଲିଛି । ଅର୍ଥନୀତି କହିଲେ ଏବେ ନ୍ୟାୟତଃ ଏକ ବିଶ୍ୱ-ଅର୍ଥନୀତିକୁ ବୁଝାଉଛି । ସମସ୍ତ

ପୃଥିବୀ ସମ୍ପନ୍ନ ହେବା ଉପରେ ହିଁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଦେଶର ଅର୍ଥନୈତିକ ଓ ଅନ୍ୟାନ୍ୟ ସମ୍ପନ୍ନତା ନିର୍ଭର କରୁଛି । ରାଜନୀତିରେ ସ୍ଥାନୀୟ ଭାବରେ ଘଟୁଥିବା ସକଳ ଘଟଣା କେଡ଼େ ସ୍ୱାଭାବିକ ଭାବରେ ସମଗ୍ର ପୃଥିବୀକୁ ଦୋହଲାଇ ଦେଇ ପାରୁଛି । ଏବଂ ଯେକୌଣସି ଦେଶ ମଉଗଜ ପରି ଯେଡ଼େ ଶକ୍ତିଶାଳୀ ହୋଇଥିଲେ ମଧ୍ୟ ସତେଅବା ପୃଥିବୀଯାକର ଚାପ ତା' ଉପରେ ଆସି ପଡ଼ୁଛି ଏବଂ ତାକୁ ପରିଚ୍ଛଦ ବଦଳାଇବାକୁ, ଏପରିକି ମୁଣ୍ଡ ନୁଆଁଇବାକୁ ବାଧ କରୁଛି ଯାହା ଫଳରେ କି ସ୍ଥାନୀୟ ଭାଷଣମାନେ ସାବଧାନ ହେଲେଣି, ପୃଥିବୀରେ ରାଜନୀତି ଓ ବିବେକ ଭିତରେ ସତେଅବା ଏପରି ଆଉଗୋଟିଏ କ'ଣ ଜନ୍ମଲାଭ କରୁଛି । ଛାଉଣୀଯାକର ଅସ୍ତ୍ର ଓ ମାରଣାସ୍ତ୍ରମାନେ ତା' ଆଗରେ ହଟି ପଳାଇବାକୁ ଅବଶ୍ୟ ବାଧ୍ୟ ହେବେ । ଗାତରୁ ବାହାରିବା ମାତ୍ରକେ ଠେକୁଆଟାଏ କି ନେଉଳଟାଏ ମଧ୍ୟ ଏହି କଥାଟିକୁ ଅତ୍ୟନ୍ତ ନିର୍ଭୁଲ ଭାବରେ ପ୍ରତ୍ୟକ୍ଷ କରି ପାରିବ ।

୨୮/୪/୯୦

# ବୃହତ୍ ବି କାମ୍ୟ

କ୍ଷୁଦ୍ର ହିଁ କାମ୍ୟ ସତ, ମାତ୍ର କ୍ଷୁଦ୍ର ଯଥେଷ୍ଟ ନୁହେଁ । କ୍ଷୁଦ୍ର ସହିତ ବୃହତ୍ ଯୋଡ଼ା ହୋଇଥିବା ଆବଶ୍ୟକ । ଗୋଡ଼ ଅବଶ୍ୟ ଭୂଇଁ ଉପରେ ରହିଥିବ, ମାତ୍ର ଆଖି ଦୁଇଟି ସୁଦୂର ଆକାଶ ମଧ୍ୟକୁ ପ୍ରସାରିତ ହୋଇ ରହିଥିବ । ଆମର ଭାଷା ଏହି ଓଡ଼ିଆ ଭାଷା, ଆମର ସାହିତ୍ୟ ଏହି ଓଡ଼ିଶାର ସାହିତ୍ୟ ଏବଂ ଆମର ସଂସ୍କୃତି ଏହି ଓଡ଼ିଶାର ସଂସ୍କୃତି, – ଏସବୁଥିରେ ଆଦୌ କୌଣସି ସନ୍ଦେହ ନାହିଁ; ମାତ୍ର ଏଗୁଡ଼ିକର ମାଧମରେ ଆମର ସମଗ୍ର ଭାବରେ ଯେକୌଣସି ଭାଷା ପ୍ରତି, ଯେକୌଣସି ଭାଷାର ସାହିତ୍ୟ ପ୍ରତି ଓ ଯେକୌଣସି ଜନସମୂହର ସଂସ୍କୃତି ପ୍ରତି ଏକ ସ୍ୱଭାବଗତ ଅନୁରାଗ ରହିଥିବା ଉଚିତ । ସେହି ବୃହତ୍ତର ଅନୁରାଗଟି ହିଁ ଆମର କ୍ଷୁଦ୍ରତର ବା ସ୍ଥାନୀୟ ଅନୁରାଗଗୁଡ଼ିକୁ ଯଥାର୍ଥରେ ବିଶୁଦ୍ଧ କରି ରଖେ, ଆମର ଜୀବନରେ ବହୁ ପ୍ରସାରଣ ଓ ବିମୋଚନରେ ସାହାଯ୍ୟ କରେ । ପ୍ରଦୂଷଣ ଆରମ୍ଭ ହୁଏ, ଯେତେବେଳେ ଆମେ ଏହି କ୍ଷୁଦ୍ର ନିଜରଟି ପଛରେ ରହିଥିବା ବୃହତ୍ତର ଆବେଦନଟିକୁ ଭୁଲିଯାଉ । ସେତେବେଳେ ଆମେ ଆମର ସଂସ୍କୃତିକୁ ପ୍ରଧାନତଃ ଆମର ବୋଲି ଭଲ ପାଉ, ଆମ ସାହିତ୍ୟକୁ ପ୍ରଧାନତଃ ଆମର ବୋଲି ଭଲ ପାଉ ଏବଂ ଆମର ଭାଷାକୁ ପ୍ରଧାନତଃ ଆମର ବୋଲି ଭଲ ପାଉ । ଏସବୁ ଯାବତୀୟ କ୍ଷେତ୍ରରେ ଆମେ ସେତେବେଳେ ସତେ-ଅବା ଭୂତମାନଙ୍କର କବଳରେ ପଡ଼ି ଯାଇଥାଉ ।

ଜଗନ୍ନାଥ ଅର୍ଥାତ୍ ଜଗତର ନାଥ । ନାଆଁଟି ଆମକୁ ଆମେ ଇଚ୍ଛା କଲେ କେତେ ମହନୀୟ ଭାବନାର ଡ଼େଣା ଉପରେ ବସାଇ କେତେ କୁଆଡ଼େ ଚେତନାର ସଖ୍ୟ ଲଗାଇ ଆସିବା ଲାଗି ଉଦ୍‌ବୋଧନ ଦେଇପାରିବ । ଆମ ଘରର ସବୁଯାକ ଝରକା ସତେଅବା ଏକାବେଳେକେ ଖୋଲି ଯିବାପରି ମନେହେବ । ଆମ ପଚା ଗଡ଼ିଆଗୁଡ଼ାକର ଅହଙ୍କାରକୁ ତାହା ନିମିଷକ ମଧ୍ୟରେ ଚୂନା କରିଦେବ । କିନ୍ତୁ, ନାଆଁଟିକୁ ଜଗନ୍ନାଥ ବୋଲି ଦେଇ ଯେତେବେଳେ ଆମେ ତାଙ୍କୁ ସବାଆଗ ଆମର, ଆମ ଓଡ଼ିଶାର ବା ଏପରିକି ଆମ ହିନ୍ଦୁ ଜାତିର ବୋଲି କହିବା, ତାଙ୍କୁ କେବଳ ଆମ ଇଷ୍ଟଦେବ ବୋଲି ଘୋଷଣା କରି ଫୁଲେଇ ଦେବା, ସେତବେଳେ ଆମର ଦିଅଁ ମଧ୍ୟ ଠିକ୍ ଆମରି ପରି ଛତରା ହୋଇଯିବେ । ତେଣିକି ସିଏ ଆମ ଅହଙ୍କାରୀମାନଙ୍କର ସମ୍ପତ୍ତି ହୋଇ ରହିବେ ସିନା, ତାଙ୍କୁ ଆପଣା ଜୀବନରେ ସ୍ଥାନ ଦେଇ ଆମର ଯେଉଁ ବିମୋଚନଗୁଡ଼ିକ ଘଟିଥାନ୍ତା, ସେଥିରୁ ଆମେ ନିଜକୁ ବଞ୍ଚିତ କରି ରଖିବା । ତାଙ୍କୁ ଆମେ ଦେଉଳରେ ବସାଇଛୁ ସିନା, ମାତ୍ର ସିଏ କଦାପି ଦେଉଳ ଭିତରେ ହିଁ ଆବଦ୍ଧ ହୋଇ ରହିନାହାନ୍ତି । ଦେଉଳ ଭିତରେ କେବଳ ପ୍ରତୀକଟି ରହିଛି । ପ୍ରତୀକର ବେଶୀ କିଛି ମୂଲ୍ୟ ନାହିଁ; ପ୍ରତୀକଟିର ପଛରେ ଯେଉଁ ବିରାଟ ଆହ୍ୱାନ ରହିଛି, ସେଇଟି ଅସଲ । ତେଣୁ, ପ୍ରତୀକ ଭିତରେ ଆମେ ଯିଏ ଯେତିକି ଅଳପ ବା ଯେତିକି ଅଧିକ ଦେଖୁଛୁ, ପ୍ରତୀକଟି ଆମ ପାଇଁ ସେତିକି ପରିଣାମ ସମ୍ଭବ କରି ପାରୁଛି ।

ବୃହତ୍‌କୁ ମଧ୍ୟ କାମ୍ୟ ରୂପେ ଗ୍ରହଣ କରି ପାରିଲେ ଯାଇ ଆମକୁ ଆମର ଏହି ଯାବତୀୟ କ୍ଷୁଦ୍ରଗୁଡ଼ିକରୁ ଯଥାର୍ଥ ଆନନ୍ଦ ଓ ଯଥାର୍ଥ ପରିପୂର୍ଣ୍ଣତା ମିଳିପାରିବ । ଅନେକ ସମୟରେ ଆମର ଏହି ସାନ ଘରଟିର ସଉଧଗୁଡ଼ାକ ବଢ଼ିବାରେ ଲାଗିଥାଆନ୍ତି ସତ, ମାତ୍ର ନଜରଗୁଡ଼ାକ ଅତ୍ୟନ୍ତ ଛୋଟ ହୋଇ ଆସୁଥାଏ । ଆମର ନଜରଗୁଡ଼ିକୁ ଛୋଟ କରି ରଖାଇବାରେ ଆମର ଧର୍ମ, ଆମର ରାଜନୀତି ତଥା ଆମର ପରୋକ୍ଷ ଅଥବା ପ୍ରତ୍ୟକ୍ଷ ଅନେକାନେକ ସ୍ୱାର୍ଥ ଭାରି ସାହାଯ୍ୟ କରିଥାଏ । ଆମ ପୃଥିବୀଟାକୁ ପରସ୍ପରକୁ ଦ୍ୱେଷ କରୁଥିବା ସାନ ସାନ ଖଣ୍ଡରେ ବିଭକ୍ତ କରି ଦେଇଥିବା ଆମର ଜାତୀୟତାବାଦଟା ମଧ୍ୟ ସେଥିରେ କମ୍ ସାହାଯ୍ୟ କରି ନାହିଁ । ଜାତୀୟତାବାଦ ବି ଏକ ପ୍ରତୀକ ବା ଏକ ସଙ୍କେତ । ତାକୁ ଆମେ ଗୋଟାଏ ପିତୁଳା ପରି ବ୍ୟବହାର କରୁଥିବା ପର୍ଯ୍ୟନ୍ତ ତାହା ଆମକୁ ଅଧିକରୁ ଅଧିକ ଉଗ୍ର କରୁଥିବ ସିନା, ମାତ୍ର ଆମ ନଜରଗୁଡ଼ାକୁ କ୍ରମଶଃ ଛୋଟ ଓ ଆହୁରି ଛୋଟ କରି ଆଣୁଥିବ ।

ଭାରତବର୍ଷର ଜାତୀୟତାବୋଧ ଏକଦା ଆମ ଦେଶକୁ ରାଜନୀତିକ ସ୍ୱାଧୀନତା ଆଣିଦେବାରେ ପ୍ରକୃତରେ ପ୍ରଭୂତ ଭାବରେ ସାହାଯ୍ୟ କରିଥିଲା । ମାତ୍ର, ସ୍ୱାଧୀନତା ଲାଭ

କରିବାର ପଚାଶବର୍ଷ ନପୂରୁଣୁ ତାହା ଆପଣାର ନଜରରେ କ୍ଷୁଦ୍ର ଆହୁରି କ୍ଷୁଦ୍ର ହୋଇ କ୍ରମେ ପ୍ରଧାନତଃ ସ୍ଥାନୀୟ ଡ଼ିହସ୍ୱାର୍ଥଗୁଡ଼ାକୁ ମଧ୍ୟ ବୁଝାଇଲାଣି । ଆଉ ଭାରତବର୍ଷର କଥା କହିବାକୁ ବା ଅନ୍ଦାଜଗୁଡ଼ାକୁ ସମଗ୍ର ଭାରତବର୍ଷ ସହିତ ସ୍ପର୍ଶ କରାଇ ରଖିବାକୁ ଆମ ବଣିକମାନେ ଆଦୌ ଲାଭଜନକ ବୋଲି ଭାବୁ ନାହାନ୍ତି । ତେଣୁ, ଓଡ଼ିଶାର ନେତା ଓଡ଼ିଶା କଥା ଭାବିଲେଣି, ପଞ୍ଜାବକୁ ଆଉ କେଉଁମାନେ ଏକ ଅଲଗା ଦେଶ କରିଦେବେ ବୋଲି ଗୁଳି ଫୁଟାଫୁଟି ହେଲେଣି । ଧର୍ମ ବୋଲି ଜୀବନରେ ଯେ ଏକ ସମଗ୍ର ମୂଲ୍ୟବୋଧ ଅଛି, ସେକଥା କ୍ରମେ ପାଶୋର ଯାଉଛି । ବଣିକମାନେ ଏବେ ହିନ୍ଦୁଧର୍ମର କଥା କହୁଛନ୍ତି, ଆଉ କିଏ ଗଛର ଆଉଗୋଟାଏ କେନାକୁ ଦେଖାଇ ତାହାକୁ ହିଁ ପୂରା ଗଛ ବୋଲି କହୁଛି ଏବଂ ସେହି କେନାଟାକୁ ଭାଙ୍ଗି ଅଲଗା କରି ନେଇ ପାରିଲେ ଯାଇ ତା'ର ମନବୋଧ ହେବ ବୋଲି ଗର୍ଜନ କରି କହିବାକୁ ବସିଲାଣି ।

କ୍ଷୁଦ୍ରଟିକୁ ଏକମାତ୍ର କାମ୍ୟ ବୋଲି ଘୋଷଣା କରି ନିଶା ଖାଇବାକୁ ମନ କଲେ କ୍ଷୁଦ୍ର ଏକ ପ୍ରଚଣ୍ଡ ଭୂତ ହୋଇ ଆମେ ସମସ୍ତେ ଛିଡ଼ା ହୋଇଥିବା ମାଟିଟିକୁ ମଧ୍ୟ ଭୁଷୁଡ଼ାଇ ଦେବାକୁ ଚକ୍ରାନ୍ତ କରି ବାହାରେ । ତେଣୁ କ୍ଷୁଦ୍ରକୁ କୋଳରେ ଧରି ତା'ପଛରେ ବୃହତ୍‌ଟିଏ ରହିଥିବା ଦରକାର । ସତେଅବା ପୃଥିବୀଯାକ ବର୍ତ୍ତମାନ ଏହି ସତ୍ୟଟି ହିଁ ମଣିଷଜାତି ପାଇଁ ତା'ର ବୃହତ୍ତମ ଆହ୍ୱାନ ରୂପେ କବାଟ ଉପରେ ଧକ୍‌କା ଦେବାକୁ ଆସିଛି । ଆମ ଲାଳସାର ଲାଳଗୁଡ଼ାକ ସେହି ବୃହତ୍‌ର ସମ୍ମୁଖରେ ଯେତେ ଶୀଘ୍ର ନିଜର ପରାଜୟକୁ ସ୍ୱୀକାର କରି ନେବ, ମନୁଷ୍ୟଜାତି ନିମନ୍ତେ ତାହା ସେତେ ବେଶୀ କଲ୍ୟାଣକର ହେବ । ବୃହତ୍ ସ୍ୱାର୍ଥଗୁଡ଼ିକ ରହିଲେ ଯାଇ ତାତ୍କାଳିକ କ୍ଷୁଦ୍ର ସ୍ୱାର୍ଥଗୁଡ଼ିକର ଯଥାର୍ଥ ରକ୍ଷା ହୋଇପାରିବ । ବୃହତ୍ ଅନୁରାଗଗୁଡ଼ିକୁ ବାଟ ଛାଡ଼ି ଦେଇଥିଲେ ଯାଇ ଆମର କ୍ଷୁଦ୍ର ଅନୁରାଗଗୁଡ଼ିକ ମଧ୍ୟ ଆମକୁ ସୁସ୍ଥ କରି ରଖି ପାରୁଥିବେ । ଜଳବାୟୁ ସୁସ୍ଥ ରହିଲେ ଯାଇ ଆମ ବାଡ଼ିରେ ରୋପା ହୋଇଥିବା ଗଛଟି ମଧ୍ୟ ସୁସ୍ଥ ରହିପାରିବ ।

୫/୫/୯୦

# ହିନ୍ଦୁଧର୍ମ ହିନ୍ଦୁରାଷ୍ଟ୍ର

ହିନ୍ଦୁ ଧର୍ମକୁ କେହି ମହାପୁରୁଷ ଏକା ପ୍ରଚାର କରିନାହାନ୍ତି, ସମ୍ଭବତଃ ତାହାହିଁ ହିନ୍ଦୁଧର୍ମ ବିଷୟରେ ସବୁଠାରୁ ବଡ଼ କଥା ଓ ସବୁଠାରୁ ବଡ଼ ଗୌରବର କଥା । ଏହି ମୂଳ କଥାଟିରେ ଯିଏ ବିଶ୍ୱାସ କରୁନାହିଁ ଓ ସେହି ବିଶ୍ୱାସଟିକୁ ଆପଣାର ଛୋଟ ବଡ଼ ପ୍ରତ୍ୟେକ କଥାରେ ଏବଂ ଛୋଟ ବଡ଼ ପ୍ରତ୍ୟେକ କରଣିରେ ଅନୁଭବ କରୁନାହିଁ, ସିଏ ହୁଏତ ନିଜ

ଦୁର୍ବୁଦ୍ଧି ଅଥବା ଦୁଷ୍ଟ ଲାଳସାର କୌଣସି ଚକ୍ରାନ୍ତରେ ପଡ଼ି ସଂପ୍ରଦାୟୀ ହୋଇଯାଉଛି । ସମ୍ପ୍ରଦାୟୀ ହେଲେ ଯେ ମଣିଷ ଉଗ୍ର ହୁଏ ଏବଂ ଉଗ୍ର ହେଲେ ଯେ ଧର୍ମଭ୍ରଷ୍ଟ ହୁଏ, ସିଏ ସେ କଥାଟିକୁ ସଂପୂର୍ଣ୍ଣ ଭାବରେ ଭୁଲିଯାଉଛି ।

ପୃଥିବୀରେ ବହୁତ ଧର୍ମ ଅବଶ୍ୟ ରହିବେ, ବହୁତ ବାଟ ଅବଶ୍ୟ ରହିବ, ଏହା ହେଉଛି ସତକୁ ସତ ହିନ୍ଦୁଧର୍ମକୁ ନିଜ ଜୀବନର ସର୍ବମୂଳ ସଂସ୍କୃତି ରୂପେ ଗ୍ରହଣ କରି ଜୀବନ ବଞ୍ଚୁଥିବା ଜଣେ ଧର୍ମସ୍ଥ ବ୍ୟକ୍ତିର ସର୍ବମୂଳ ବିଶ୍ୱାସ । ସେହି ହିନ୍ଦୁଧର୍ମ ଭିତରେ ମଧ୍ୟ ବହୁ ମାର୍ଗ ରହିବ, ବହୁ ରୀତି ରହିବ, ବହୁ ଭେକ ମଧ୍ୟ ରହିବ, ହିନ୍ଦୁ ଧର୍ମର ଅସଲ ପୁରୋଗାମୀମାନେ ଏକଥା ଅତ୍ୟନ୍ତ ପରିଷ୍କାର ଭାବରେ ଘୋଷଣା କରି ଆସିଛନ୍ତି । ଗୋଟିଏ ମାର୍ଗ ଆଉଗୋଟିଏ ମାର୍ଗକୁ ଆଦୌ ଈର୍ଷା କରିବ ନାହିଁ, ଗୋଟିଏ ଭେକ ଆପଣାକୁ କେବଳ ଏକମାତ୍ର ଭେକ ବୋଲି କହି ବଡ଼ାଇ କରିବ ନାହିଁ, ବିଭିନ୍ନ ରୀତି ଅବଶ୍ୟ ରହିବେ । ଏହିଭଳି ଗୋଟିଏ ଦୃଷ୍ଟି ହେଉଛି ହିନ୍ଦୁଧର୍ମର ସ୍ୱତନ୍ତ୍ର ଦୃଷ୍ଟି । ସମ୍ଭବତଃ ଏହି ଦୃଷ୍ଟିଟିକୁ ଗୌରବର ସହିତ ଘୋଷଣା କରି ଆସିଥିବାରୁ ହିନ୍ଦୁପ୍ରଧାନ ଭାରତବର୍ଷରେ ଆମ ପୃଥିବୀର ବିଭିନ୍ନ ଧର୍ମ ମଧ୍ୟ ନିଜ ଲାଗି ନିର୍ଭୟ ନୀଡ଼ଟିଏ ତିଆରି କରି ନେଇ ପାରିଛନ୍ତି । ହିନ୍ଦୁ ଧର୍ମରେ ଉପାସନା ରହିଛି ସତ, ମାତ୍ର ଗୋଟିଏ ମାର୍ଗ-ଉପାସନା ଆଉ ଗୋଟିଏ ମାର୍ଗର ଉପାସନାକୁ କେବେହେଲେ ଅସାର ବୋଲି କହିବାର ଦମ୍ଭ କରିନାହିଁ । ଆସ୍ତିକ ଯେତେବେଳେ ନାସ୍ତିକ ଉପରେ ଉପଦ୍ରବ କରି ବାହାରେ, ସେତିକିବେଳେ ଧର୍ମର କ୍ଷେତ୍ରରେ ବହୁବିଧ ଉପଦ୍ରବ ଆରମ୍ଭ ହୁଏ । ହିନ୍ଦୁଧର୍ମ ଆସ୍ତିକ ଏବଂ ନାସ୍ତିକ ଉଭୟଙ୍କୁ ସ୍ୱୀକାର କରିଛି, ଉଭୟଙ୍କୁ ସମ୍ମାନ ଦେଇଛି । କେବଳ ନିଜର ବାଟଟିକୁ ଠିକ୍ ବାଟ ବୋଲି କହି ଅନ୍ୟ ଯାବତୀୟ ବାଟକୁ ଭୁଲ ବୋଲି କହୁଥିବା ମଣିଷମାନେ ନିଜ ବ୍ୟତୀତ ଅନ୍ୟ ବାଟରେ ପଥିକ ଓ ପଥଚାରୀମାନଙ୍କୁ ନାସ୍ତିକ ବୋଲି କହନ୍ତି । ହିନ୍ଦୁ ଧର୍ମର ମୂଳ ଦୃଷ୍ଟିଗୁଡ଼ିକ ଏଭଳି ବ୍ୟଭିଚାରକୁ ଖୁବ୍ କମ୍ ପ୍ରଶ୍ରୟ ଦେଇଛି ।

ପ୍ରାଚୀନ ଭାରତରେ ହିନ୍ଦୁ ରାଜାମାନେ ନିଜ ରାଜ୍ୟରେ ଅନ୍ୟାନ୍ୟ ଧର୍ମ ଏବଂ ଅନ୍ୟାନ୍ୟ ମାର୍ଗଗୁଡ଼ିକୁ ମଧ୍ୟ ପୂର୍ଣ୍ଣ ସ୍ୱୀକୃତି ଦେଇଥିଲେ । ସେମାନେ ଧର୍ମରେ ଥିଲେ, ରାଜ୍ୟବାସୀ ଧର୍ମରେ ଥିଲେ, ତେଣୁ ରାଷ୍ଟ୍ରର ବେକରେ ଧର୍ମର କୌଣସି ଢ଼ିଙ୍କିଆ ପକାଇ ସେହି ଢ଼ିଙ୍କିଆରୁ ହିଁ ରାଷ୍ଟ୍ରକୁ ଚିହ୍ନିବା ଲାଗି ଆଦୌ ଆବଶ୍ୟକତା ନଥିଲା । ହିନ୍ଦୁ ରାଷ୍ଟ୍ରର କଥାଟି ଏବେ ଆସିଲା । ଧର୍ମ ଅନୁସାରେ ଜୀବନଟିଏ ବଞ୍ଚିବା ଅପେକ୍ଷା ଧର୍ମ ନାମରେ ଗାଦୀଟାଏ ମାଡ଼ି ବସିବାକୁ ଯେଉଁମାନେ ଅଧିକ ବୁଦ୍ଧିମତ୍ତାର କାର୍ଯ୍ୟ ବୋଲି ବିଚାରିଲେ, ସେହିମାନେ ହିଁ ଦାଣ୍ଡକୁ ବାହାରି ଏକଥା କଲେ । ସେହିମାନେ ହିନ୍ଦୁଧର୍ମକୁ ଭାରତବର୍ଷର ମୂଳଧର୍ମ ବୋଲି କହିଲେ । ନିଜ ଧର୍ମକୁ ରାଣୀ ବୋଲି ଦେଖୁଦେଖୁ ଅନ୍ୟମାନଙ୍କର ଧର୍ମ

ସେମାନଙ୍କୁ ସଡେଥିବା ପୋଉଲୀ ପରି ଦେଖାଗଲା । ସେମାନେ ଧର୍ମଭ୍ରଷ୍ଟ ହୋଇ ଏଭଳି କହିଲେ ଓ ସଡେଥିବା ଅହିନ୍ଦୁ ବୋଲି ଧରା ପଡ଼ିଗଲେ । ସେମାନେ ନିଜ ଜୀବନରେ ଅସଲ ଭୂମିଟିକୁ ପାଇ ନଥିଲେ କି କ'ଣ କେଜାଣି, ବାହାରେ ଧର୍ମଭୂମିମାନଙ୍କୁ ଖୋଜି ବୁଲିଲେ । ଠାକୁରମାନଙ୍କର ଜନ୍ମଭୂମି ଆବିଷ୍କାର କରି ବାହାରିଲେ । ଧର୍ମର ଅସଲ ସମ୍ପଦଗୁଡ଼ିକୁ ଇତିହାସ ଭିତରେ ଆଣି ପୂରାଇଦେଲେ । ଧର୍ମକୁ ମାରା କରିଦେଲେ, ମନ୍ଦିରଗୁଡ଼ିକର ଶାନ୍ତି ଭଙ୍ଗ କଲେ । ଯାହାର ଆଖି ଭିତରକୁ ଅନାଇ ମୋଟେ କିଛି ଦେଖି ପାରିନଥାଏ, ବିଚରା ସେହି ଧ୍ୱଜାଟାଏ ଧରି ବାହାରେ ଭୂମିଟାଏ ଠାବ କରେ ଓ ସେହି ଭୂମିରେ ମନ୍ଦିରଟାଏ ତିଆରି କରିବ ବୋଲି ସଭାରେ ହୁରି କରେ । ହୁଙ୍କାର ଦେଇ ରାଜନୀତିରେ ପଶେ । ଅସଲ ଆଖିଟିକୁ ହରାଇଥାଏ ବୋଲି ରାଜନୀତିରେ ପଶେ । ସିଏ ଧର୍ମକୁ ଗାନ୍ଧାରୀର ମାଂସପିଣ୍ଡୁଳାରେ ପରିଣତ କରିଦିଏ, ଯେଉଁଥିରୁ କି କେବଳ ଦୁଷ୍ଟମାନେ ହିଁ ବାହାରନ୍ତି । ଧର୍ମଭ୍ରଷ୍ଟମାନେ ହିଁ ପୁତ୍ର ନଲୋଡ଼ି ମାଂସପିଣ୍ଡୁଳାକୁ ଲୋଡ଼ନ୍ତି ।

ହିନ୍ଦୁଧର୍ମକୁ ରାଜନୀତିର ବୁଜୁଳାଟିଏ କରି ଧରିଥିବା ଚାଲାଖମାନେ ଏବେ ହିନ୍ଦୁରାଷ୍ଟ୍ର କଥା କହୁଛନ୍ତି । ପାଖ ଦେଶଗୁଡ଼ିକର ଅନୁକରଣ କରି ସେମାନେ ଏକଥା କହୁଛନ୍ତି । ପୃଥିବୀର ଅନ୍ୟ ଯେଉଁ କେତୋଟି ଧର୍ମ ରାଷ୍ଟ୍ରପାଖରେ ମୁଣ୍ଡ ବିକି ସାରିଛି, କଂସମାନଙ୍କର ରାଜ୍ୟରେ କୁବୁଜା ହୋଇସାରିଛି, ଏମାନେ ସେହିମାନଙ୍କର ନକଲ କରି ଏପରି କଥା କହୁଛନ୍ତି । ଭାରତ-ବର୍ଷର ଅସଲ ସମସ୍ୟାଗୁଡ଼ିକର ସମାଧାନ କରିବାରେ ଅପାରଗ ହୋଇ ସେମାନେ ଏପରି କହୁଛନ୍ତି । ଭାରତୀୟମାନେ ଜୀବନରେ ଧର୍ମକୁ ହିଁ ସବାବଡ଼ ସ୍ଥାନ ଦିଅନ୍ତି ବୋଲି ଏଠି ଯେଉଁ ଅପବାଦ ରହିଛି, ଏମାନେ ସମ୍ଭବତଃ ତାହାରି ଫାଇଦା ଉଠାଇବାକୁ ଚେଷ୍ଟା କରୁଛନ୍ତି । ଧର୍ମ ନାମରେ ମଣିଷକୁ ଓ ତା'ର ଧର୍ମକୁ ଭ୍ରଷ୍ଟ କରିବା ଲାଗି ଇଚ୍ଛା କରୁଛନ୍ତି । କାଳକ୍ରମେ ହିନ୍ଦୁଧର୍ମକୁ ଯେଉଁମାନେ କେବଳ ଏକ ସଂପ୍ରଦାୟର ହୀନସ୍ତରକୁ ଖସାଇ ଆଣିବାରେ ଦୈତ୍ୟପରି ସାହାଯ୍ୟ କରିଛନ୍ତି, ସେମାନେ ଏଥିରେ ହୃଷ୍ଟ ହେବା ଅତ୍ୟନ୍ତ ସ୍ୱାଭାବିକ । ଧର୍ମକୁ ମନ୍ଦିର ଭିତରେ ଆବଦ୍ଧ କରି ରଖିବା ଦ୍ୱାରା ଧର୍ମ ଯେପରି ଅଫିମରେ ପରିଣତ ହୋଇଯାଏ, ଧର୍ମକୁ ରାଜନୀତି ଭିତରେ ଆଣି ପୂରାଇବା ଦ୍ୱାରା ମଧ୍ୟ ଠିକ୍ ସେହିପରି ଧର୍ମକୁ ମାରି ଦିଆଯାଏ ଓ ଅଫିମକୁ ପ୍ରଶ୍ରୟ ଦିଆଯାଏ । ଅଫିମିଆମାନେ ଧର୍ମକୁ ମୋଟେ ସହିପାରନ୍ତି ନାହିଁ । କ୍ଷମତା ଇଚ୍ଛା କରୁଥିବା ମଣିଷମାନେ ଧର୍ମ ନାମରେ ଅଫିମରେ ବଣିଜ କରି ବାହାରନ୍ତି, ଦୁନିଆଟାକୁ ଭ୍ରଷ୍ଟ କରନ୍ତି । ହିନ୍ଦୁରାଷ୍ଟ୍ର ହିନ୍ଦୁଧର୍ମର କଥା ନୁହେଁ, ଏହା ହେଉଛି ଅଫିମର କଥା । ଧର୍ମସ୍ଥମାନଙ୍କର କଥା ଆଦୌ ନୁହେଁ, ଚାଲାଖ କ୍ଷମତାବିଟମାନଙ୍କର କଥା ।

୧୨/୫/୯୦

# ଗଣତନ୍ତ୍ର ଲାଗି ଆନ୍ଦୋଳନ

୧୯୪୭ ମସିହାରେ ଯେତେବେଳେ ଆମେ ଶାନ୍ତିନିକେତନର ଦଳେ ଛାତ୍ର ନେପାଳ ବୁଲି ଯାଇଥିଲୁ, ସେତେବେଳେ ମଧ୍ୟ ସେହି ପାର୍ବତୀ ଭୂମିରେ ପ୍ରଜାର ପ୍ରତିନିଧିମୂଳକ ଶାସକ ଦାବୀ କରି ଆନ୍ଦୋଳନ ହେଉଥିଲା । ନେପାଳ ଜାତୀୟ କଂଗ୍ରେସ ସେହି ଆନ୍ଦୋଳନର ନେତୃତ୍ୱ ନେଇଥିଲା । ସେତେବେଳେ ଭାରତବର୍ଷ ସଦ୍ୟ ରାଜନୀତିକ ସ୍ୱାଧୀନତା ଲାଭ କରିଥାଏ । ଏଡ଼େବଡ଼ ଇଂରେଜ ଶାସନକୁ ଯଦି ପଡ଼ୋଶୀ ଦେଶରୁ ହଟାଇ ଦିଆଯାଇ ପାରିଲା, ତେବେ ଆମେ କାହିଁକି ଆମର ଏହି କୁନି ଦେଶଟିରେ ଆମର ରାଜନୀତିକ ଭାଗ୍ୟକୁ ବଦଳାଇ ଦେଇ ନପାରିବା; ମୁଖ୍ୟତଃ ଏହି ପ୍ରେରଣା ହିଁ ସେତେବେଳେ ନେପାଳୀ ଜାତୀୟ କଂଗ୍ରେସର ଆନ୍ଦୋଳନକୁ ପ୍ରବୁଦ୍ଧ କରି ରଖିଥିଲା । ଆମେ କାଠମାଣ୍ଡୁରେ ପହଞ୍ଚିବା ମାତ୍ରକେ ଆମ ପଛରେ ରଜାଙ୍କ ଗୋଇନ୍ଦା ଲାଗିଗଲେ । ଆମେ ଏଠି ଲୋକମାନଙ୍କୁ ଆନ୍ଦୋଳନ ଲାଗି ମତାଇବାକୁ ସମତଳଭୂଇଁରୁ ଆସି ପର୍ବତ ମଧ୍ୟରେ ରହିଥିବା ଏହି ଦୁର୍ଗରେ ପ୍ରବେଶ କରିଛୁ କି, – ଶାସକର ମନରେ ଏହିପରି ଏକ ସନ୍ଦେହର ଉଦ୍ରେକ ହେବା ଅତ୍ୟନ୍ତ ସ୍ୱାଭାବିକ ।

ମୋର ମନେଅଛି, ସେତେବେଳେ ହିନ୍ଦୁ ମହାସଭାର ସଭାପତି ଶ୍ରୀଯୁକ୍ତ ଶ୍ୟାମାପ୍ରସାଦ ମୁଖାର୍ଜୀ ନେପାଳୀ ସ୍ୱାଧୀନତା ଆନ୍ଦୋଳନକୁ ବିରୋଧ କରି ଖବରକାଗଜରେ ଏକ ବିବୃତ୍ତି ଦେଇଥିଲେ । ନେପାଳରେ ରାଜତନ୍ତ୍ରକୁ ହଟାଇବା ନିମନ୍ତେ ନବସ୍ୱାଧୀନ ଭାରତବର୍ଷରୁ ଦିଆଯାଉଥିବା ପ୍ରୋତ୍ସାହନକୁ ସେ ଆଦୌ ପସନ୍ଦ କରୁନଥିଲେ । ପୃଥିବୀର ଶେଷ ହିନ୍ଦୁରାଷ୍ଟ୍ର ହିସାବରେ ସେ ନେପାଳରେ ଜଣେ ହିନ୍ଦୁ ରାଜାଙ୍କର ରାଜତ୍ୱକୁ ଏକ ପବିତ୍ର ପ୍ରତୀକ ଭଳି ଦେଖୁଥିଲେ । ପ୍ରଧାନତଃ ହିନ୍ଦୁମାନଙ୍କର ଦେଶ ଭାରତବର୍ଷରେ କୌଣସି ଅଧିବାସୀ ନେପାଳର ହିନ୍ଦୁରାଜାଙ୍କୁ ହଟାଇବା ନିମନ୍ତେ କରାଯାଉଥିବା ଆନ୍ଦୋଳନକୁ ସମର୍ଥନ କରିବା ଉଚିତ ନୁହେଁ ବୋଲି ଶ୍ରୀଯୁକ୍ତ ଶ୍ୟାମାପ୍ରସାଦ କେଡ଼େ ଭାବପ୍ରବଣ ହୋଇ କହିଥିଲେ । ସ୍ମରଣ ଥାଉ କି, ହିନ୍ଦୁ ମହାସଭା ଆମ ଭାରତବର୍ଷରୁ ଇଂରେଜ ଶାସନ ହଟିଯାଉ ଓ ଭାରତ ସ୍ୱାଧୀନ ହେଉ ବୋଲି ମଧ୍ୟ କଦାପି ଇଚ୍ଛା କରୁନଥିଲା । ସେତେବେଳେ ବିଦେଶୀ ଦଣ୍ଡି ଉପରେ ଗୋଟାଏ ପାଖରେ ମୁସ୍‌ଲିମ୍‌ଲିଗ୍ ଓ ଆଉଗୋଟିଏ ପାଖରେ ହିନ୍ଦୁ ମହାସଭା ଦୁଇ ସମର୍ଥକ ରୂପେ ବସି ବସିଥିଲେ ଓ ସ୍ୱାଧୀନତା ସଂଗ୍ରାମର ବିରୋଧ କରୁଥିଲେ ।

ଯିଏ ନିଜ ଦେଶର ରାଜନୀତିକ ସ୍ୱାଧୀନତା ଲାଗି ହେଉଥିବା ସଂଗ୍ରାମରେ ବି ଶାସକ ପଟେ ରହିଥିଲା, ସିଏ ଆଉଗୋଟାଏ ଦେଶର ଅଧିବାସୀଙ୍କ ମଧ୍ୟରେ ସ୍ୱାତନ୍ତ୍ର୍ୟ

ଲାଗି ରହିଥିବା ବ୍ୟାକୁଳତାକୁ କିପରି ବା ବୁଝିପାରନ୍ତା ? ଠିକ୍ ନବେବର୍ଷ ତଳେ ଓଡ଼ିଶାରେ ଓଡ଼ିଆଭାଷୀଙ୍କୁ ଗୋଟିଏ ଶାସନ ମଧ୍ୟକୁ ଆଣିବା ଲାଗି ଯେଉଁ କଥାକଥିତ ଦେଶମିଶ୍ରଣ ଆନ୍ଦୋଳନ ଚାଲିଥିଲା, ସେଥିରେ ମୁଖ୍ୟତଃ ରାଜାମାନେ ହିଁ ନେତୃତ୍ୱ ନେଇଥିଲେ । ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବା ସଙ୍ଗେ ସଙ୍ଗେ ଗଡ଼ଜାତଗୁଡ଼ାକ ମଧ୍ୟ ସେହି ଓଡ଼ିଶାରେ ମିଶିଯିବ ବୋଲି ଯଦି ସେତେବେଳର ଉତ୍କଳ ସମ୍ମିଳନୀ ମତ ବ୍ୟକ୍ତ କରିଥାନ୍ତା, ତେବେ କୋଉ ରାଜା କାହିଁକି ସେହି ସମ୍ମିଳନୀ ଭିତରେ ରହିଥାନ୍ତା ? ପ୍ରଧାନତଃ ସ୍ୱାଧୀନତା ଆନ୍ଦୋଳନର ଶକ୍ତିହ୍ରାସକାରୀ କୋଡୋଟି ସମାନ୍ତର ଗଢ଼ି ଅସଲ ସଂଗ୍ରାମକୁ ବିଭକ୍ତ କରି ରଖାଇବା ଲାଗି ହିଁ ଏହିସବୁ ମିଛ ଆନ୍ଦୋଳନର ଭିଆଣ ହୋଇଥିଲା । ହିନ୍ଦୁ ମହାସଭା ମଧ୍ୟ ଭାରତବର୍ଷର ରାଜନୀତିକ ପାଶମୁକ୍ତି ଇଚ୍ଛା କରୁନଥିଲା । ତେଣୁ ସେହି ମହାସଭାର ନେତା ଶ୍ରୀଯୁକ୍ତ ଶ୍ୟାମାପ୍ରସାଦ ବି ନେପାଳ ରାଜ୍ୟର ସାଧାରଣ ଅଧିବାସୀଙ୍କ ଅପେକ୍ଷା ସେମାନଙ୍କୁ ଶାସନ କରୁଥିବା ହିନ୍ଦୁ ରାଜାଙ୍କୁ ଆଗ ଦେଖୁଥିଲେ ଏବଂ ତାଙ୍କୁ ହଟାଇବାକୁ ହେଉଥିବା ଆନ୍ଦୋଳନ ବିଷୟରେ ଏତେ ବ୍ୟଥିତ ହୋଇ ପଡୁଥିଲେ ।

ନେପାଳରେ ଏବେ ପୁଣି ପ୍ରଜାଶାସନ ନିମନ୍ତେ ଆନ୍ଦୋଳନ ଆରମ୍ଭ ହୋଇଛି । ଏହା ହିଁ ନେପାଳର ଅଧିବାସୀମାନଙ୍କୁ ଇପ୍‌ସିତ ସଫଳତା ଆଣିଦେବ ବୋଲି ବୋଧ ହେଉଛି । ଏତିକିବେଳେ ନେପାଳର କୋଇରାଲା ପରିବାର କଥା ଭାରି ମନେପଡୁଛି । କୋଇରାଲା ପରିବାର ଗତ ତିନି ପୁରୁଷ ଧରି ନେପାଳର ରାଜନୀତିକ ପରିବର୍ତ୍ତନ ଲାଗି ସଂଗ୍ରାମ କରି ଆସିଛନ୍ତି । ଶ୍ରୀଯୁକ୍ତ ବିଜୟ ପ୍ରସାଦ କୋଇରାଲା ନେପାଳୀ ରାଜାଙ୍କର ବନ୍ଦୀଶାଳାରେ ଦୀର୍ଘକାଳ ଯାବତ୍ ଅତିଥି ହୋଇ ରହିବା ଫଳରେ ପ୍ରାୟ ଚିରରୋଗୀ ହୋଇ ପ୍ରାଣତ୍ୟାଗ କରିଛନ୍ତି । ସେହି ପରିବାରର ଅଧିକାଂଶ ବ୍ୟକ୍ତିଙ୍କୁ ରାଜାଙ୍କର ବନ୍ଦୀଶାଳାରେ କଏଦୀ ହୋଇ ରହିବାକୁ ପଡ଼ିଛି ଅଥବା ଭାରତବର୍ଷକୁ ପଳାଇ ଆସିବାକୁ ହୋଇଛି । ବର୍ତ୍ତମାନର ମୁକ୍ତିସଂଗ୍ରାମ ସେହି ପ୍ରେରଣାରୁ ନିଶ୍ଚୟ ପ୍ରଭୂତ ବଳ ଲାଭ କରୁଥିବ । ନେପାଳର ଅଧିବାସୀ ବିଜୟ କୋଇରାଲାଙ୍କୁ ଖୁବ୍ ସ୍ମରଣ କରୁଥିବେ ।

ଏହି ପ୍ରସଙ୍ଗରେ ଭାରତର ଶ୍ରୀଯୁକ୍ତ ରାମମନୋହର ଲୋହିଆ ମଧ୍ୟ ଅବଶ୍ୟ ମନେପଡ଼ିବେ । ଭାରତବର୍ଷ ସ୍ୱାଧୀନ ହେବା ପରେ କୋଇରାଲାଙ୍କ ନେତୃତ୍ୱରେ ନେପାଳରେ ଯେତେବେଳେ ପ୍ରଜାଶାସନର ପ୍ରତିଷ୍ଠା ଲାଗି ସତ୍ୟାଗ୍ରହ ଆନ୍ଦୋଳନ ଚାଲିଥିଲା, ସେତେବେଳେ ଶ୍ରୀ ଲୋହିଆ ମଧ୍ୟ ସକ୍ରିୟ ଭାବରେ ସେଥିରେ ଯୋଗ ଦେଇଥିଲେ । ନେପାଳର ଆଭ୍ୟନ୍ତରୀଣ ବ୍ୟାପାରରେ ଭାରତର କେତେକ ବ୍ୟକ୍ତି ହସ୍ତକ୍ଷେପ କରୁଛନ୍ତି ଓ ସେଠା ଶାସନର ଶାନ୍ତିଭଙ୍ଗ କରୁଛନ୍ତି ବୋଲି ସେତେବେଳେ କୂଟନୈତିକ ସ୍ତରରେ କେତେ

ଅଭିଯୋଗ ହୋଇଥିଲା । ରାମମନୋହର ଲୋହିଆ ଭାରତରେ ଥିବା ନେପାଳୀ ଦୂତାବାସ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରି କାରାବରଣ କରିଥିଲେ । ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଜବାହରଙ୍କର ଆଦେଶରେ ତାଙ୍କୁ ଗିରଫ କରାଯାଇଥିଲା । ଲୋହିଆ ବଞ୍ଚି ରହିଥିଲେ ଆଜି ନେପାଳରେ ରାତି ପାହିବାର ପ୍ରାକ୍‌କାଳରେ କେଡ଼େ ଖୁସି ହୋଇଥାନ୍ତେ ।

୧୯/୫/୯୦

# ଏହା କ'ଣ ଅଶୁଭ ?

ଓଡ଼ିଶାରେ ଏବର୍ଷ ଅଦିନ ବର୍ଷା ଲାଗିରହିଛି । ବସନ୍ତ ଯାଉ ନଯାଉଣୁ ବର୍ଷାକାଳ ଆସି ପହଞ୍ଚିଗଲା ପରି ମନେ ହେଉଛି । ଶ୍ରାବଣ ମାସ ପରି ପାଗ ହୋଇଯାଉଛି । ବର୍ଷାକୁ ପୃଥିବୀର ମଣିଷ କାଳେ କାଳେ ଭଗବାନଙ୍କର ଏକ ଆଶୀର୍ବାଦ ବୋଲି କହି ଆସିଥିବାବେଳେ ବର୍ତ୍ତମାନର ଏହି ଅସମୟ ବର୍ଷାକୁ ଓଡ଼ିଶାରେ ଅନେକ ବ୍ୟକ୍ତି ଏକ ଅଶୁଭ ସୂଚନା ବୋଲି ଗଣିଲେଣି । ଏହି ବର୍ଷା ଦ୍ୱାରା ଓଡ଼ିଶାବାସୀଙ୍କର ପ୍ରଭୂତ କ୍ଷତି ହେବ । ଏବଂ, ଆହୁରି ଅଧିକ ଆଶଙ୍କାର କଥା ହେଉଛି ଯେ, ଆଉ ଚାରି ପାଞ୍ଚମାସ ପରେ ଯେତେବେଳେ ଚାଷୀର କ୍ଷେତ ଅଧିକ ବୃଷ୍ଟି ଆବଶ୍ୟକ କରିବ, ସେତେବେଳେ ଆକାଶରୁ ହୁଏତ ବୁନ୍ଦାଏ ପାଣି ବରଷିବ ନାହିଁ । ସେଥିରୁ ବହୁ ଅନିଷ୍ଟ ଉପୁଜିବ ।

ପୃଥିବୀର ଜଳବାୟୁ ବଦଳି ଯାଉଛି ଓ ସେହି କାରଣରୁ ଏବେ ପ୍ରକୃତିର କ୍ରମଟି ମଧ୍ୟ ଭାରି ଅଦିନିଆ ହୋଇଯାଉଛି ବୋଲି ବୈଜ୍ଞାନିକମାନେ ଆଶଙ୍କା କରୁଛନ୍ତି । ମନୁଷ୍ୟ ଦ୍ୱାରା ଭିଆହେଉଥିବା କେତେକ କାରଣରୁ ଏହି ବିଚ୍ୟୁତିମାନ ଘଟୁଛି ବୋଲି ଅନେକ ବୈଜ୍ଞାନିକ କହିଲେଣି । ବିଜ୍ଞାନଗତ ସମସ୍ୟାଗୁଡ଼ିକର ବିଜ୍ଞାନ ଦ୍ୱାରା ହିଁ ମୁକାବିଲା କରାଯିବ । ଆବଶ୍ୟକ ହେଲେ ମଣିଷକୁ ତା'ର ଜୀବନର ରୀତିଗୁଡ଼ିକୁ ବଦଳାଇବାକୁ ପଡ଼ିବ । ପ୍ରକୃତି ଉପରେ ବିଜୟ ହାସଲ କରିବାର ମନୋଦୃଷ୍ଟିକୁ ଛାଡ଼ି ପ୍ରକୃତି ସହିତ ସହଯୋଗ କରି ବଞ୍ଚିବାର ସେହି ବିକଳ୍ପ ବିଦ୍ୟାଟିକୁ ଶିଖିବାକୁ ପଡ଼ିବ । ମାତ୍ର, ଆମର ବଡ଼ମାନେ ଏଗୁଡ଼ିକ ଅଶୁଭ ବୋଲି କହୁଥିବା ପର୍ଯ୍ୟନ୍ତ ହୁଏତ ଆମେ ଏଗୁଡ଼ିକର ମୁକାବିଲା କରିବା ଦିଗରେ ଯଥେଷ୍ଟ କ୍ରିୟାଶୀଳ ହୋଇପାରିବା ନାହିଁ । ଏଣେ ଆମର ଦୁର୍ଦ୍ଦଶା ବଢ଼ି ବଢ଼ି ଯାଉଥିବ ।

ଅଶୁଭମାନେ କ'ଣ କେବଳ ଆକାଶରୁ ଆସନ୍ତି ? ଆମ ପୃଥିବୀର ବାହାରେ କ'ଣ କୌଣସି ଖଳ ଭଗବାନ ଅଛନ୍ତି, ଯିଏକି କୌଣସି କାରଣରୁ କ୍ରୋଧାନ୍ୱିତ ହୋଇ ମଣିଷକୁ ଗଞ୍ଜଣା ଦେବାଲାଗି ତେଣୁ ଅଶୁଭଗୁଡ଼ିକୁ ପୃଥିବୀକୁ ପଠାନ୍ତି ଓ ସେହିହେତୁ ମଣିଷ

କଷ୍ଟ ପାଏ ? ୧୯୩୪ ମସିହାରେ ଯେତେବେଳେ ବିହାରରେ ଭୂମିକମ୍ପ ହୋଇଥିଲା, କ୍ରୋଧୀ ଏବଂ ଅପ୍ରସନ୍ନ ଭଗବାନ ଭାରତବର୍ଷକୁ ଏକ ଶିକ୍ଷା ଦେବାର ଅଭିପ୍ରାୟରେ ସେହି ଭୂମିକମ୍ପକୁ ପ୍ରେରଣ କରିଛନ୍ତି ବୋଲି ମହାତ୍ମା ଗାନ୍ଧୀ ସେତେବେଳେ କେଡ଼େ ନିଷ୍ଠାର ସହିତ କହିଥିଲେ ! ସମ୍ଭବତଃ କିଛି ପ୍ରତ୍ୟାଶା ରଖି ମଧ୍ୟ କହିଥିଲେ । ଭାରତବର୍ଷର ହିନ୍ଦୁ ସମାଜ ଆପଣା ପରିଧି ଭିତରେ ରହିଥିବା କେତେ କୋଟି ମଣିଷଙ୍କୁ ଅସ୍ପୃଶ୍ୟ କରି ରଖି ଯେଉଁ ପାପ ଅର୍ଜୁଛି, ତାହାକୁ ଏକ ଆଧିଦୈବିକ ଦଣ୍ଡ ଦେଇ ଭଗବାନ ତାକୁ ସେହି କଳଙ୍କ ମଧ୍ୟରୁ ବାହାରି ଆସିବା ଲାଗି ଆହ୍ୱାନ ଦେଉଛନ୍ତି ଓ ସେଥିଲାଗି ବିହାରରେ ଭୂମିକମ୍ପଟିକୁ ଘଟାଇଛନ୍ତି ବୋଲି ସେତେବେଳେ ମହାତ୍ମା ଗାନ୍ଧୀ କହିଥିଲେ । ଧର୍ମଭୀରୁ ଭାରତବର୍ଷ ହୁଏତ ଏଥିରେ ସତକୁ ସତ ବୁଝିବ ଓ ନିଜକୁ ବଦଳାଇ ଦେବ ବୋଲି ଆଶାୟୀ ହୋଇ ସେ ଏପରି କଥାଟିକୁ କହିଥିଲେ ।

ସେଥିରେ ସତକୁ ସତ କେତେ କ'ଣ ଫଳ ଫଳିଲା କେଜାଣି ? ଅଶୁଭମାନେ କ'ଣ କେବଳ ଅନ୍ତରୀକ୍ଷରେ ଭଗବାନଙ୍କର ଅସ୍ତ୍ରାଗାରରେ ରହିଛନ୍ତି ? ଆମ ହାତ ପାଆନ୍ତାରେ ମଧ୍ୟ ଅଶୁଭ ରହିଛି, ଅନେକ ସମୟରେ ଅତ୍ୟନ୍ତ ଦୃଶ୍ୟମାନ ଭାବରେ ମଧ୍ୟ ରହିଛି । ଆମ ସମାଜରେ ଥୋକେ ମଣିଷ ବହୁସଂଖ୍ୟକ ମଣିଷଙ୍କୁ ଅତ୍ୟନ୍ତ ଅସହାୟ ଓ ଅକିଞ୍ଚନ କରି ରଖିଛନ୍ତି, ତାହା କଣ ଅଶୁଭ ନୁହେଁ ? ଆମ ଦେଶର ବାବାଜୀମାନେ ସତେଅବା ସାଂସାରିକ ପ୍ରୟୋଜନରେ ପଡ଼ି ମୁଖ୍ୟତଃ ସେହି ଥୋକେ ମଣିଷଙ୍କ ପଟେ ରହିଛନ୍ତି ଓ ଧର୍ମର ମଙ୍ଗକୁ ପ୍ରାୟ ସେଇମାନଙ୍କର ଅନୁକୂଳ ହେଲାଭଳି ମୁହାଁଇ ରଖିଛନ୍ତି, ଏହାଦ୍ୱାରା ସମଗ୍ର ଭାରତବର୍ଷକୁ କ'ଣ କମ୍ ଅଶୁଭ ଓ ଦୁଷ୍ଟତାର କଷଣ ଭୋଗ କରିବାକୁ ପଡୁଛି ? ଆମ ରାଜନୀତି, ଶିକ୍ଷା ନାମରେ ଜମିଦାରୀ ଢ଼ଙ୍ଗରେ ଚାଲୁଥିବା ଆମର ଯାବତୀୟ ଅଶିକ୍ଷା, ବହୁ ପରିବର୍ତ୍ତନକୁ ଅତ୍ୟନ୍ତ କ୍ରୂର ଭାବରେ ବାଟ ଓଗାଳି ରଖିଥିବା ଆମର ବିଶାଶହେ ପ୍ରକାରର ଜଡ଼ତା ଓ ତାମସିକତା, ଭଗବାନଙ୍କୁ ସବାଆଗ ନିଜ ଭିତରେ ଏବଂ ପରସ୍ପର ଭିତରେ ନଦେଖି ମନ୍ଦିରମାନଙ୍କରେ ଥାପିତ ହୋଇ ରହିଥିବା କଣ୍ଢେଇମାନଙ୍କ ଭିତରେ ଦେଖିବା ଓ ସେଇଠୁ ନିଶାଖାଇ ଆସି ସଂସାରରେ ଦୌରାତ୍ମ୍ୟ କରୁଥିବା ଆମର ଯାବତୀୟ ହୃଦୟହୀନତା, ଏସବୁ ଅଶୁଭର ଦାଉକୁ ତ ଆମକୁ ନିତି ସହ୍ୟ କରିବାକୁ ପଡୁଛି । ସେହି ଅଶୁଭଗୁଡ଼ିକୁ ହଟାଇବା ବିଷୟରେ ଆମର ପ୍ରାୟ କୌଣସି ତତ୍ପରତା ନାହିଁ । ଜୀବନକୁ ପ୍ରାୟ ଗୋଟାଏ ମଞ୍ଚରେ ପରିଣତ କରିଦେଇ ଆମର ବହୁବିଧ ଲୋଲୁପତା ଗୁଡ଼ିକର ନୃତ୍ୟଟି କେଡ଼େ ପ୍ରଚଣ୍ଡ ଭାବରେ ଏଠି ଲାଗି ନରହିଛି । ଦେଶର ଅନ୍ଧାର ଭିତରେ ଏସବୁ କେଡ଼େ ଜଳ ଜଳ ହୋଇ ଦେଖା ନଯାଉଛି ! ଆମ ଚାରିପାଖରେ ଶନିମାନେ ଆମକୁ ଶାଗୁଣା ପରି ବେଢ଼ି ରହିଛନ୍ତି । ଜ୍ଞାନକୁ, କ୍ଷମତାକୁ ଏବଂ ବହୁ ପାରୁଆପଣକୁ ବିବିଧ

କୌଶଳରେ ପରିଣତ କରି ବହୁ ଚୌର୍ଯ୍ୟର ଏହି ବଜାରରେ ପ୍ରାୟ ସବୁକିଛି ମାରିନେବାକୁ ତତ୍ପର ହୋଇ ରହିଛନ୍ତି, ଏବଂ ଏଣେ ଆମ ଅନ୍ଧ, ଭୀରୁ ପଣ୍ଡିତମାନେ ଆମକୁ ମନ୍ଦିରକୁ ଯାଇ ଶନିପୂଜା କରିବାର ପରାମର୍ଶ ଦେଉଛନ୍ତି । ବର୍ଷା ଯେତେ ଅଦିନରେ ହେଲେ ମଧ୍ୟ, ପରସ୍ପରକୁ ମଣିଷର ଆଖି ନେଇ ଅନାଇ ପାରୁଥିଲେ ଏହି ଭାରତବର୍ଷରେ ତଥାପି ଯେତିକି ଶୁଭ ସମ୍ଭବ କରାଯାଇ ପାରୁଥାନ୍ତା, ଆମର ଭାଗ୍ୟ-ରୂପକ ଯନ୍ତ୍ରଟିକୁ ଚଳାଇବାର ଦାୟିତ୍ୱରେ ରହିଥିବା ଅସାଧୁ ଧୀଷଣାଗୁଡ଼ାକ ସେଥିଲାଗି ସତେଅବା ଏକାନ୍ତ ଅନିଚ୍ଛୁକ ହୋଇ ରହିଛନ୍ତି । ସେମାନେ ନିଜକୁ କେଉଁ ଭାଗ୍ୟଦେବୀଙ୍କର ବିଶେଷ ସୁବିଧାପ୍ରାପ୍ତ ସନ୍ତାନ ବୋଲି ଭାବୁଛନ୍ତି ଓ ଆଉ ସମସ୍ତଙ୍କୁ ନିଜ ଭାଗ୍ୟଗୁଡ଼ିକୁ ମାନିନେବା ଲାଗି ସୂତର କରିବାରେ ଲାଗିଛନ୍ତି । ଘୁଷୁରିମାନଙ୍କ ଭିତରେ ପାଟ ଘୁଷୁରି ହୋଇ ରହିଛନ୍ତି । ମଣିଷର ଭିତରେ ରହିଥିବା ଦେବତା କ୍ରୋଧ କଲେ ଯାଇ ସେହି ଚରମ ଅଶୁଭ ଗୁଡ଼ିକର ନିରାକରଣ ହୋଇପାରିବ ।

୨୬।୫।୯୦

# ଇଏ କହୁଥିଲେ, ସିଏ କହୁଛନ୍ତି

ଯେଉଁମାନେ ଏବେ କ୍ଷମତାରେ ଅଛନ୍ତି, ସେମାନେ କାଲି କହୁଥିଲେ । ସେତେବେଳେ ସେମାନେ କ୍ଷମତାରେ ନଥିଲେ । କ୍ଷମତାକୁ ଆସିବା ଲାଗି କଳକଳ ହେଉଥିଲେ । ଭଗବାନ ଚକୁଳିପିଠାଟାକୁ ଓଲଟାଇଦେଲେ । ଏମାନେ କ୍ଷମତାକୁ ଆସିଲେ । ଏବେ ଏମାନେ ଆଉ କିଛି କହୁନାହାନ୍ତି । ଯେଉଁମାନେ କାଲି କ୍ଷମତାରେ ଥିଲେ, କିଛି କହୁନଥିଲେ, କ୍ଷମତା ନାମକ ମହାସଙ୍ଗରୁ ବଞ୍ଚିତ ହେବାପରେ ଏବେ ସେମାନେ ହିଁ ସବୁକିଛି କହୁଛନ୍ତି । ଭାରି କଳବଳ ହୋଇ କହିବାରେ ଲାଗିଛନ୍ତି । ସେମାନଙ୍କ ଲାଗି ବର୍ତ୍ତମାନ ଭାରତବର୍ଷରେ ସବୁ ବିଗିଡ଼ି ଯାଇଛି । ବର୍ତ୍ତମାନ ଯେଉଁ ସରକାର ଦିଲ୍ଲୀରେ କ୍ଷମତାରେ ବସିଛନ୍ତି, ସେମାନଙ୍କର ଅଯୋଗ୍ୟ ହାତରେ ପଡ଼ି ପଞ୍ଜାବ ଓ କାଶ୍ମୀରର ସମସ୍ୟା କ୍ରମେ ଭୟାନକ ଆକାର ଧାରଣ କଲାଣି ବୋଲି ସେମାନେ ଏବେ ଯାଉଣୁ ଆସୁଣୁ କହିବାରେ ଲାଗିଲେଣି । ସେମାନେ ସିଂହାସନ ମାଡ଼ିବସିଥିବା ସମୟରେ କାଶ୍ମୀର ସମସ୍ୟା ଅବଶ୍ୟ ଥିଲା, ପଞ୍ଜାବର ସମସ୍ୟା ମଧ୍ୟ ସେହିମାନଙ୍କର ଚୂଲୀରେ ବସା ହୋଇଥିବା ହାଣ୍ଡି ଉପରେ ଭାତ ପରି ଟକଟକ ହୋଇ ଫୁଟୁଥିଲା । ସେତେବେଳେ ସେମାନେ ସତେଅବା କିଛି କହୁନଥିଲେ । ସମର୍ଥ ସରକାର ସାମନ୍ତମାନଙ୍କର ସମସ୍ତ ମର୍ଯ୍ୟାଦା ଅନୁସାରେ କାଶ୍ମୀର ଓ ପଞ୍ଜାବ ସମେତ ସକଳ ସମସ୍ୟାର ସଫଳ ଭାବରେ

ମୁକାବିଲା କରୁଛନ୍ତି ବୋଲି ସେମାନେ କେଡ଼େ ଗମ୍ଭୀର ଅଥଚ ଉଦ୍ଧତ ଭାବରେ କହୁଥିଲେ । ସେତେବେଳେ ଏ ପକ୍ଷ ପାଟି କରୁଥିଲେ, କୋଠା କମ୍ପାଉଥିଲେ । ସଦସ୍ୟମାନେ ସମ୍ଭବତଃ ଠୋ' ଠୋ' ହୋଇ ହସୁଥିଲେ । ଦୁଇ ପକ୍ଷର ବୀରମାନଙ୍କର କଲବଲିଆ ବାହାଦୁରପଣ ଦେଖି ସେମାନେ ସତକୁ ସତ ଠୋ' ଠୋ' ହୋଇ ହସୁଥିଲେ ।

ସେଦିନ ସେମାନେ ମନ୍ତ୍ରୀ ଥିଲେ, ଅର୍ଥାତ୍ ରାଜ୍ୟର ସବୁଠାରୁ ବଡ଼ ଅମଲା ହୋଇ ରହିଥିଲେ । ଭାରି ଅବର୍ଜିଆ ହୋଇ ରହିଥିଲେ, ଦେଶଟାକୁ ମଧ୍ୟ ଅବର୍ଜିଆ କରି ରଖିଥିଲେ । ତଥାପି ସବୁ ଠିକ୍ ଅଛି ବୋଲି କହିବାରେ ଲାଗିଥିଲେ, ସୁନା ଦାନ୍ତକାଠିରେ ଦାନ୍ତ ଘଷୁଥିଲେ ଏବଂ ରୂପାଥାଳିରେ ହଗୁଥିଲେ । ବିଧାତା ଚକ୍ରାନ୍ତ କଲା, ଚକ ବୁଲେଇଦେଲା । ନୂଆ ଭୋଟ ହେଲା । ଦେଶବାସୀ ବହୁ ଅସନ୍ତୋଷ ଭିତରେ ପାଟିକରି ରହିଥିଲେ, ଭୋଟ ମାଧ୍ୟମରେ ଓରିମାନା ମେଣ୍ଟାଇଦେଲେ । ଥୋକେ ଗଲେ, ଆଉ ଥୋକେ କ୍ଷମତାକୁ ଆସିଲେ । ରାଜା ହେଲେ, ମନ୍ତ୍ରୀ ହେଲେ । ଯୋଉମାନେ ଛିଟିକି ହୋଇ କ୍ଷମତା ଭିତରୁ ବାହାରକୁ ନିକ୍ଷିପ୍ତ ହେଲେ, ସେମାନଙ୍କର କହିବାର ପାଳି ଆସି ପହଞ୍ଚିଗଲା । ରଣରେ ହାରିଥିବା ହିଂସ୍ରମାନଙ୍କ ପରି ସେମାନେ ବର୍ତ୍ତମାନ କ୍ଷମତାରେ ରହିଥିବା ନୂଆ ସାଆନ୍ତମାନଙ୍କର ଅପାରଗତା ଦେଖାଇବାରେ ଶତଜିହ୍ୱା ହୋଇଉଠିଲେ । ଆମେ କେତେ ପାରୁଆ ଥିଲୁ, ବର୍ତ୍ତମାନ ନିତାନ୍ତ ନିପାରୁଆମାନେ ମାଲିକ ହୋଇ ଆସିଲେ; ଏହାଦ୍ୱାରା ଦେଶକୁ ଯେ କେତେ ନରଖର ମଧ୍ୟଦେଇ ଗତି କରିବାକୁ ହେବ, ସେକଥା ବାହୁନି କେଡ଼େ ବର୍ଣ୍ଣାଢ୍ୟ ଭାବରେ କହିବାକୁ ଲାଗିଲେ ।

ଏସବୁ ରଙ୍ଗ ଦେଖିଲେ ବେଳେବେଳେ ମନେହୁଏ ଯେ, ଏହି ଦୁଇଟାଯାକ ପଟ ଏହିପରି ଭାବରେ ପରସ୍ପରକୁ ଝିଙ୍ଗାସିବାରେ ଲାଗିଥିବେ, ଏବଂ ସମସ୍ୟାଗୁଡ଼ିକ ଯେମିତି ସେମିତି ହୋଇ ରହିଥିବ । ଭୋଟ ପରେ ଭୋଟ ହେଉଥିବ, ତୁଚ୍ଛା ଆତ୍ମକାମୀ ପାଟପିନ୍ଧାମାନେ ଦୁଇ ପକ୍ଷରେ ଥାଇ ସେହି ପୁରୁଣା ଅଭିନୟକୁ କରିବାରେ ଲାଗିଥିବେ । ପକ୍ଷେ ସିଂହାସନକୁ କାମୁଡ଼ି ଧରିଥିବ ଓ ଅପରପକ୍ଷ ତା'ର ଗୋଡ଼କୁ ଟାଣି ତାକୁ ସିଂହାସନଚ୍ୟୁତ କରିବାରେ ଲାଗିଥିବ । ତେଣେ ଆମ ଦେଶ ଭାସି ଯାଉଥିବ । ମଣିଷ ହୀନମାନ ଓ ହତବଳ ହୋଇ ରହିଥିବ । ଖାଲି ପଞ୍ଜାବ କିମ୍ବା କାଶ୍ମୀରର ସମସ୍ୟା ନୁହେଁ, ଆହୁରି ଅଧିକ ମୌଳିକ ସମସ୍ୟାମାନ ଭାରତବର୍ଷରେ ମଣିଷର ଗୋଡ଼ ବାନ୍ଧି ରଖିଥିବେ । ଦରବାରମାନେ ପ୍ରବଳ ହୋଇ ପରସ୍ପରକୁ କଥାରେ ବୁଡ଼ାଇ ରଖିଥିବେ ସିନା, ମାତ୍ର ଯଥାର୍ଥରେ ରାଜନୀତି ବୋଲି କିଛି ନଥିବ । ମୂର୍ଖମାନେ, ମୋଟାମାନେ ବେଙ୍କରେ ପଇସାମାଳ ପକାଇ ନେତା ହୋଇ ବୁଲୁଥିବେ ଏବଂ ରାଜନୀତିକ ଚେତନାକୁ ପାଷଣ୍ଡଙ୍କ ପରି ପଙ୍ଗୁ କରି ରଖିଥିବେ ।

କାଲି ଇଏ କହୁଥିଲେ, ଆଜି ସିଏ କହୁଛନ୍ତି । କ୍ଷମତାର ରଣଦାଣ୍ଡରେ ପରସ୍ପରର ପରିପନ୍ଥୀ ପରି ଯେତେ ମନେ ହେଉଥିଲେ ମଧ୍ୟ, ଏମାନେ ଯେ ସତକୁ ସତ ସେଇ ଗୋଟିଏ ପଡ଼ିଆ ଗାଈର ଗୋବର, ଦେଶବାସୀ ସେହି କଥାଟିକୁ ବୁଝିଲେ ଯାଇ ଭାରତବର୍ଷରେ ମଣିଷ ପଟକୁ ଚକ ବୁଲିଯିବ । ସେପର୍ଯ୍ୟନ୍ତ ହାତରେ ମିଛଚକ ଗୁଡ଼ାକୁ ଧରି ଆମ ନେତାମାନେ ଆମକୁ ଭୁରୁଡ଼ାଇ ଦେବାରେ ଲାଗିଥିବେ । ସେତେବେଳେ ଯାଇ ଏକ ନୂଆ ନେତୃତ୍ୱ ଜନ୍ମଲାଭ କରିବ । ଏକ ନୂଆ ଭଦ୍ରତାରେ ନିର୍ମାଣର ଯାବତୀୟ ଯୋଜନା କାର୍ଯ୍ୟକାରୀ ହେବ ଏବଂ ସେଇଥିରୁ ହିଁ ଏହି ଦେଶର ସାମୂହିକ ମାନସରେ ଏକ ନୂଆ ପ୍ରତ୍ୟୟ ସମ୍ଭବ ହେବ । ଏହି ପ୍ରତ୍ୟୟଟି ଭାରତବର୍ଷରେ ଏକଦା ଥିଲା । ଭାରତବର୍ଷରେ ସ୍ୱାଧୀନତାର ପ୍ରାପ୍ତିଲାଗି ସଂଗ୍ରାମ ଲଢ଼ା ହେଉଥିଲାବେଳେ ସେହି ପ୍ରତ୍ୟୟ ଥିଲା । ରାଜନୀତିରେ ସାଧୁତା ଥିଲା । ବିଗତ ଚାଳିଶିବର୍ଷ ମଧ୍ୟରେ ଏକାଧିକ କାରଣରୁ ସେହି ପ୍ରତ୍ୟୟ ଓ ସେହି ସାଧୁତା ନଷ୍ଟ ହୋଇଯାଇଛି ।

ଅସଲ କେନ୍ଦ୍ରରେ ଏକ ଦୃଢ଼ମୂଳ ରାଜନୀତିକ ପ୍ରତ୍ୟୟ ନଥିଲେ ରାଜନୀତି ଦ୍ୱାରା ଆଦୌ କୌଣସି ସମସ୍ୟାର ସମାଧାନ ହୋଇପାରିବ ନାହିଁ । ସେପର୍ଯ୍ୟନ୍ତ ଆମ ନେତାମାନେ, ସେମାନେ ଯେଉଁ ଦଳରେ ଥାଆନ୍ତୁ ପଛକେ, ଆମକୁ କେବଳ ଠକିବାରେ ଲାଗିଥିବେ । ଅମଲାମାନଙ୍କ ଲାଗି ପାଳକ ହିଁ ପଡ଼ିଥିବ । ଗଉଣୀ ଗଉଣୀ ପଇସା ଖର୍ଚ୍ଚ ହେଉଥିବ, ନେତାମାନଙ୍କର ଗଭା ସଜାଇବାରେ ବେତା ବେତା ଫୁଲ ଆସି ଜମା ହେଉଥିବ । ତେଣେ ଲୋକଜୀବନର ଗୋଡ଼ଗୁଡ଼ିକ ସରୁ ହୋଇ ଆସୁଥିବ । ମୋଗଲମାନେ ମୟୁର ସିଂହାସନରେ ବସିଥିବେ । କନ୍ଦର୍ପକୁ ଓ କୁବେରକୁ ନିନ୍ଦି ଶୋଭା ପାଉଥିବେ । ତେଣେ ଭାଗ୍ୟର ଗଛଗୁଡ଼ିକ ଶୁଖି ଶୁଖି ଯାଉଥିବ । ଅସାଧୁମାନେ ସାଧୁ ଭଳି ଦେଖାଇ ହେଉଥିବେ । ଏହି ଦେଶର ଭଣ୍ଡାରଗୁଡ଼ିକ ପ୍ରକୃତରେ ଯାହାର, ସିଏ ତିରସ୍କୃତ ହୋଇ ଦାଣ୍ଡରେ ଛିଡ଼ା ହୋଇଥିବ ଏବଂ ତେଣେ ଘରେ ତସ୍କର ପଶିଥିବେ, ଉତ୍ସବ ପାଳନ କରୁଥିବେ, ଏକ ନାବାଳକ ଜନଭାଗ୍ୟର ଉଦ୍ଦଣ୍ଡ ତତ୍ତ୍ୱାବଧାରକ ସାଜି ଏପଟ ସେପଟ ହେଉଥିବେ, କଥାର ପତାକା ଦ୍ୱାରା ଜୀବନର ଯଥାର୍ଥ ଆକାଶଗୁଡ଼ିକୁ ଢାଙ୍କି ରଖିଥିବେ ।

୨/୬/୯୦

# ଦଶଲକ୍ଷ ବର୍ଷ ଯୁଦ୍ଧ କଲେ ବି

ପାକିସ୍ଥାନ ଦଶଲକ୍ଷ ବର୍ଷ ଯୁଦ୍ଧ କଲେ ମଧ୍ୟ କାଶ୍ମୀରକୁ ଭାରତ ହାତରୁ ଛଡ଼ାଇ ନେଇ ପାରିବ ନାହିଁ ବୋଲି ଭାରତବର୍ଷର ବୈଦେଶିକ ବ୍ୟାପାରମନ୍ତ୍ରୀ ଏବେ ଆମ ଜାତୀୟ

ପ୍ରତିନିଧିସଭାରେ କହିଛନ୍ତି । ଅଳ୍ପଦିନ ତଳେ ପାକିସ୍ତାନର ପ୍ରଧାନମନ୍ତ୍ରୀ ପାକିସ୍ତାନ କାଶ୍ମୀର ପାଇଁ ଆବଶ୍ୟକ ପଡ଼ିଲେ ଭାରତ ସହିତ ହଜାରେ ବର୍ଷ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି ବୋଲି ଯେଉଁ ଦମ୍ଭୋକ୍ତି କରିଥିଲେ, ତାହାରି ଜବାବରେ ଆମ ମନ୍ତ୍ରୀ ଏପରି କହିଛନ୍ତି । ଦମ୍ଭୋକ୍ତିର ଜବାବ ଦମ୍ଭୋକ୍ତିରେ ଦେବା, ଏହା କ'ଣ ଏକମାତ୍ର ରାଜନୀତି ? ତଥାକଥିତ କୂଟନୈତିକ କ୍ଷେତ୍ରରେ ଭାରତବର୍ଷ ଓ ପାକିସ୍ତାନର ଭକ୍ତି ମଧ୍ୟରେ କ'ଣ ଆଦୌ କୌଣସି ଫରକ ରହିବା ଉଚିତ ନୁହେଁ ? ପାକିସ୍ତାନରେ ବର୍ତ୍ତମାନ ଆଭ୍ୟନ୍ତରୀଣ ପରିସ୍ଥିତି ଯେପରି ହୋଇଥିବା ପରି ଦୂରରୁ ମଧ୍ୟ ଦେଖାଯାଉଛି, ତାହାରି ଦ୍ୱାରା ବାଧ୍ୟ ହୋଇ ପାକିସ୍ତାନର ପ୍ରଧାନମନ୍ତ୍ରୀଙ୍କୁ ଖୁବ୍ ସମ୍ଭବ ବହୁଦିନର ପୁରୁଣା କାଶ୍ମୀରନାମକ ଖେଳକୁ ପୁନର୍ବାର ଖେଳିବାକୁ ପଡ଼ୁଛି । ମାତ୍ର ଭାରତର ମନ୍ତ୍ରୀଙ୍କୁ ଠିକ୍ ସେହି ଉତ୍ତେଜନାରେ ତାର ଜବାବ ଦେବା ଲାଗି ପ୍ରକୃତରେ କେଉଁ ପରିସ୍ଥିତି ବାଧ୍ୟ କରୁଛି ?

ପାକିସ୍ତାନର ଆଉଜଣେ ପ୍ରଧାନମନ୍ତ୍ରୀ ଏକଦା ଭାରତ ସହିତ ହଜାର ବର୍ଷର ଏକ ଯୁଦ୍ଧ କଥା କହିଥିଲେ । ଏପରି କହିବାର ମାତ୍ର ଦଶଟା ବର୍ଷ ନପୂରୁଣୁ ପାକିସ୍ତାନର ଭାଗ୍ୟ ନୂତନ ଦାରପରିଗ୍ରହ କଲା ଏବଂ ତାହାରି ଫଳରେ ସେହି ପ୍ରଧାନମନ୍ତ୍ରୀ ଫାଶୀ କାଠରେ ଝୁଲିଲେ । ଆମ ଦେଶର ମନ୍ତ୍ରୀ ଯେ ଦଶ ଲକ୍ଷ ବର୍ଷର ଯୁଦ୍ଧ କଥା କହୁଛନ୍ତି, ଦଶଲକ୍ଷ ବର୍ଷ ପରେ ଭାରତବର୍ଷ ଓ ପାକିସ୍ତାନ ନାମରେ ଅଲଗା ଅଲଗା ଦୁଇଟା ଦେଶ ଅଲବତ ଥିବେ ଓ କାଶ୍ମୀର ନାମକ ମଝିରେ ଥିବା ଖଣ୍ଡେ ଡ଼ିହକୁ ନେଇ କଳହ ଲଗାଇଥିବେ ବୋଲି ସିଏ କୋଉ ସୂତ୍ରରୁ ଜାଣିଲେ ? ଦଶଲକ୍ଷ ବର୍ଷ ତ ଅନେକ ପରର କଥା, ମାତ୍ର ଏକଶହ ବର୍ଷ ପରେ ମଧ୍ୟ କ'ଣ ପରିସ୍ଥିତି ଏକାପରି ଥିବ ? ଆମର ଏହି ବଡ଼ ପୃଥିବୀରେ ଆପଣାକୁ ସତେଅବା କେଡ଼େ ବଡ଼ ବୋଲି ମନେ କରୁଥିବା ସାନ ମଣିଷମାନେ ଅନେକ ସମୟରେ ଏହିଭଳି କଥା କହନ୍ତି ଏବଂ କାଳ ପାଖରେ ଅତ୍ୟନ୍ତ ହାସ୍ୟାସ୍ପଦ ହୁଅନ୍ତି । କାଳକୁ ମାପିବା ଲାଗି ରହିଥିବା ମଣିଷର ମାପକାଠିରେ ଆମେ କଦାପି ପୃଥିବୀର ବା ତହିଁରେ ବାସ କରୁଥିବା ମନୁଷ୍ୟର ନିୟତିକୁ ମାପି ପାରିବା ନାହିଁ । ଯେଉଁଦିନ ରାଜନୀତି ଏତିକି ବୁଝିପାରିବ, ସେଦିନ ସିଏ ସତକୁ ସତ ବିନୟୀ ହୋଇ ଶିଖିବ ଏବଂ ତାହାରି ଫଳରେ ମଣିଷର ବାଟରେ ଯଥାର୍ଥ ସାହାଯ୍ୟ କରିପାରିବ ।

ଜର୍ମାନୀର ହିଟ୍ଲର୍ କ୍ଷମତାକୁ ଆସିବା ପରେ ତାଙ୍କ ଦ୍ୱାରା ସ୍ଥାପିତ ହେବାକୁ ଯାଉଥିବା ଜର୍ମାନ୍ ସାମ୍ରାଜ୍ୟଟି ହଜାରେ ବର୍ଷ କାଳ ରହିବ ବୋଲି କେଡ଼େ ଆସ୍ଫାଳନ କରି ଭାରି କହି ହେଉଥିଲେ । ସେହି ସାମ୍ରାଜ୍ୟର କଳ୍ପନା କଳ୍ପନାରେ ରହିଲା । ବିଚରା ହିଟଲରଙ୍କ ଶାସନ ମଧ୍ୟ ମୋଟେ ବାରବର୍ଷ ରହି ପାରିଥିଲା । ପୃଥିବୀ ଯେ ଭବିଷ୍ୟତରେ

ଆଉ କଦାପି ହିଟ୍‌ଲରର ଗଞ୍ଜେଇଖାନା ଭିତରକୁ ଫେରି ଆସିବ ନାହିଁ, ପୃଥିବୀର ମଣିଷମାନେ ଅଧିକରୁ ଅଧିକ ଦେଶରେ ମାନବନିୟତି ନାମରେ ଏହିଭଳି ଏକ ଶପଥ ଗ୍ରହଣ କରୁଛନ୍ତି । ସେହି ଆଗାମୀ ପୃଥିବୀରେ ହଜାରେ ବର୍ଷକାଳ କାଶ୍ମୀର ପାଇଁ ଯୁଦ୍ଧ କରିବାର ପାକିସ୍ତାନର ଗରିମା ମୋଟେ କେହି ସ୍ୱୀକାର କରିବେ ନାହିଁ । ଦଶଲକ୍ଷ ବର୍ଷ ଯୁଦ୍ଧ କରି କାଶ୍ମୀରକୁ ଅଲବତ ଆପଣା ପଟେ ରଖିବାର ବୃହତ୍ ବାଣ ମାରୁଥିବା ଭାରତର ମନ୍ତ୍ରୀଙ୍କର ମଧ୍ୟ ସେହି ପୃଥିବୀରେ ଆଦୌ କୌଣସି ପ୍ରାସଙ୍ଗିକତା ରହିବ ନାହିଁ । ଏସବୁ ନିଶାଖିଆ କଥା ଶୁଣିବା ଲାଗି ସେତେବେଳେ ପାକିସ୍ତାନରେ କୌଣସି ଲୋକ ନଥିବେ, ଭାରତବର୍ଷରେ ମଧ୍ୟ ନଥିବେ । ମନୁଷ୍ୟଜାତି ଜାତୀୟତାବାଦର ସେହି ମିଛ ଅନ୍ଧବିଶ୍ୱାସର ସ୍ତରଟିକୁ ପାର ହୋଇ ହୁଏତ କେତେ ଆଗକୁ ଚାଲି ଯାଇଥିବ । ଯାହାର ସମୟ ସରିଗଲା ବୋଲି ଘଣ୍ଟା ବାଜି ସାରିଲାଣି, ରାଜନୀତି ଘରର ସାଧବମାନେ ତଥାପି ସେହିଗୁଡ଼ାକୁ କାମୁଡ଼ି କାହିଁକି ପଡ଼ିରହିଛନ୍ତି କେଜାଣି ? ସେମାନେ ଆମକୁ କାହିଁକି ଆଗକୁ ଯିବାକୁ ବାଟ ଛାଡ଼ି ଦେଉନାହାନ୍ତି ?

'ଆମେ ସମସ୍ତେ ଦିନେ ନା ଦିନେ ମରିବା' ବୋଲି ସାଂପ୍ରତିକ ରାଷ୍ଟ୍ରୀୟ ରାଜନୀତିର କାରପଟଦାରମାନେ ହୃଦୟଙ୍ଗମ କରିବା ଉଚିତ ବୋଲି ଯୁକ୍ତରାଜ୍ୟ ଆମେରିକାର ସଭାପତି ଜନ୍ କେନେଡ଼ି ଏକଦା ସଂପୃକ୍ତ ସମସ୍ତଙ୍କୁ ସତର୍କ କରି ଦେଲାପରି କହିଥିଲେ । ନେତାମାନେ କେବେ ମରିବେ ବୋଲି ବିଶ୍ୱାସ କରନ୍ତିନାହିଁ । ପୃଥିବୀ ପଛକେ ସରିଯାଉ, ମାତ୍ର ସେମାନେ ଅବଶ୍ୟ ଜୀଇକରି ରହିବେ ବୋଲି ଆଣ୍ଠ କରିବାରେ ଲାଗିଥାନ୍ତି ଓ ପୃଥିବୀକୁ ନାନାବିଧ ପ୍ରମାଦ ଭିତରେ ପକାଇ ରଖିଥାନ୍ତି । କଂସ କେବେ ମରିବ ବୋଲି ବିଶ୍ୱାସ କରିନଥିଲା, ମହିଷାସୁର ତ ଅମରଲଡୁ ଖାଇଥିଲା । ରାବଣ ଲଙ୍କାପୁରକୁ ହିଁ ପୃଥିବୀର କେନ୍ଦ୍ର ବୋଲି ଅନୁଭବ କରୁଥିଲା । ପାକିସ୍ତାନର ପ୍ରଧାନମନ୍ତ୍ରୀ ଓ ଆମ ବୈଦେଶିକ ବ୍ୟାପାର ମନ୍ତ୍ରୀ ହୁଏତ ସେହି ନିଶାଟି ଖାଇଛନ୍ତି ବୋଲି ଏତେ ଏତେ ବର୍ଷ ଯୁଦ୍ଧ କରିବାର ଦୁଃସାହସୀ ମିଛକଥାଗୁଡ଼ାକୁ କହିବାରେ ଲାଗିଛନ୍ତି । ପରବର୍ତ୍ତୀ ପୃଥିବୀରେ ସେମାନେ ଆମର ସତକୁ ସତ କୌଣସି କାମରେ ଲାଗି ପାରିବେ ନାହିଁ ।

ରାଜନୀତି ରଣହୁଙ୍କାରର ମଞ୍ଚରୁ ମଣିଷ ପାଖକୁ ଓହ୍ଲାଇଆସୁ, ମଣିଷ ହିଁ ଯାବତୀୟ ରାଜନୀତିକୁ ଚଳାଉ । ମଣିଷକୁ ମେଣ୍ଢାକରି ରଖି ବର୍ତ୍ତମାନ ପୃଥିବୀର ଅଧିକାଂଶ ଦେଶରେ ଯେଉଁ ରାଜନୀତି ଚାଲୁଛି ଓ ଆପଣା ଆଣ୍ଠଗୁଡ଼ାକୁ ନେଇ ମଣିଷ ଉପରେ ମିଛ ସୌଧଗୁଡ଼ିକୁ ଗଢ଼ିବାରେ ଲାଗିଛି, ତାହାର ଦିନ ଯହୁଁ ଯହୁଁ ସରିଆସୁଛି, ତାହା ସତେଅବା ସେତିକି ଅଧିକ କାମ-ଉତ୍ତେଜିତ ହେବାରେ ଲାଗିଛି । ଆମଠାରୁ ଆମର ଅସଲ ଦୁଆରଗୁଡ଼ିକୁ

ଉଜ୍ଜୁଆଳ କରି ରଖିଛି । ପୃଥିବୀର ମଣିଷମାନେ ଦେଶ ବୋଲି କୁହାଯାଉଥିବା ସାନ ଗଡ଼ିଆମାନଙ୍କରେ ଆବଦ୍ଧ ହୋଇ ରହିଛନ୍ତି । ମଣିଷ ନାନାବିଧ ଭୁଗୁଡ଼ର ଶିକାର ହୋଇ ରହିଛି । ନିଶାଖିଆ ଆଖିକୁ ମଣିଷ ଅପେକ୍ଷା କାଣ୍ଟାର ଅଧିକ ବଡ଼ ଦେଖାଯାଉଛି । ଏପରି ଏକ ଅନ୍ୟ ରାଜନୀତିର ଅପେକ୍ଷା ରହିଛି, ଯାହା ମଣିଷ ଭିତରେ ଥିବା ତା'ର ଅସଲ କେନ୍ଦ୍ରଟିକୁ ସବାଆଗ ଚିହ୍ନିବାକୁ ମନ କରିବ । ସେତେବେଳେ ଘରଗୁଡ଼ିକ ପୃଥିବୀକୁ ମନ କରିବେ; ନିଜ ଘର ଭିତରେ ରହିଥିଲେ ମଧ୍ୟ ଆଖି ଖୋଲିଦେବା ମାତ୍ରକେ ପୃଥିବୀଟା ଯାକ ଦିଶିଯାଇ ପାରୁଥିବ ।

୯।୬।୯୦

# ଆପଣଙ୍କ ଆଶୀର୍ବାଦରୁ

ସମାଜରେ ଗୋଟିଏ ପାଖରେ ପୋଲିସ୍, ଡାକ୍ତର ଆଉ ଓକିଲ; ଏବଂ ଆଉ ଗୋଟିଏ ପାଖରେ ଶିକ୍ଷକ । କୌଣସି ବିପଦରେ ପଡ଼ିଥିବା ସମୟରେ ହିଁ ମଣିଷ ଡ଼ାକ୍ତରଙ୍କ ପାଖକୁ ଆସେ, ପୋଲିସ ଥାନାକୁ ଅଥବା ଓକିଲ ଘରକୁ ଯାଏ । ଖୁସିରେ କେହି ଏମାନଙ୍କ ପାଖକୁ ଆସନ୍ତି ନାହିଁ । ଡାକ୍ତରଙ୍କ ସାହାଯ୍ୟରେ ଆମେ ରୋଗରୁ ଉଦ୍ଧାର ପାଉ । ପୋଲିସ ସାହାଯ୍ୟରେ ଅସାମାଜିକତା ହାତରୁ ଉଦ୍ଧାର ପାଉ । ଓକିଲ ଆମକୁ ମୋକଦ୍ଦମାର ଅଡୁଆ ଭିତରୁ ପାର କରାଇ ନିଅନ୍ତି । ତେଣୁ ବିପଦରେ ପଡ଼ି, ଏକ ଅସରଣରେ ପଡ଼ି ହିଁ ଆମେ ଏମାନଙ୍କର ଘରକୁ ଯାଇଥାଉ, ଏମାନଙ୍କର ସାହାଯ୍ୟ ଲୋଡ଼ିଥାଉ । ସେମାନଙ୍କ ପାଖରେ କେତେ ନେହୁରା ହେଉ, ସେମାନଙ୍କର ଗୋଡ଼ହାତ ଧରୁ, ସେମାନେ ଆମର ବାପମାଆ ବୋଲି କହି କେତେ କାରୁଣ୍ୟ କରୁ । ସେତେବେଳେ ସେମାନଙ୍କ ବ୍ୟତୀତ ଆମର ସତେଅବା ଅନ୍ୟ କୌଣସି ଗତି ନଥାଏ । ମାତ୍ର ଡାକ୍ତରଙ୍କ ଚିକିତ୍ସା ଲାଭକରି ଭଲ ହୋଇସାରିବା ପରେ ଆଉ ଡାକ୍ତରଙ୍କ କଥା ମନେ ରହେ ନାହିଁ । ତାଙ୍କ ଘରକୁ ଯିବାର କୌଣସି ଆବଶ୍ୟକତା ଆଉ ନଥାଏ । ମକଦ୍ଦମାରେ ଓକିଲ ସାହାଯ୍ୟରେ ଜିତାପଟ ହୋଇସାରିଲେ ତାପରେ ବିନା କାରଣରେ ଆଉ ତାଙ୍କ ପାଖକୁ ଯିବାଲାଗି ମନ ହୁଏ ନାହିଁ । ଶୁଖିଲା ପାଟିଲାରେ କେହି ପୋଲିସ ପାଖକୁ ଯିବାଲାଗି ମଧ୍ୟ ମନ କରେ ନାହିଁ । ସେମାନଙ୍କର ଉପକାର ପାଇ ସାରିବା ପରେ ସେମାନଙ୍କ ସହିତ ବାଟରେ ଭେଟ ହେଲାବେଳେ ସେମାନଙ୍କୁ ଏଡ଼ିଦେଇ ବାଟକାଟି ଚାଲିଯିବାକୁ ମନହୁଏ । ବିପଦ ବେଳେ ଏମାନେ ଯେତିକି ନିଜର ବୋଲି ଲାଗନ୍ତି, ବିପଦ ପରେ ସେମାନଙ୍କୁ ସେତିକି ଚଞ୍ଚଳ ଭୁଲିଯିବାକୁ ମନହୁଏ । ବିପଦ ବେଳେ ଏମାନେ ଯେତିକି ନିଜର ବୋଲି ଲାଗନ୍ତି,

ବିପଦ ପରେ ସେତିକି ଚଞ୍ଚଳ ଭୁଲିହୋଇ ଯାଆନ୍ତି । ଓକିଲ, ପୋଲିସ୍ ଓ ଡାକ୍ତର, ଏମାନେ ନିଜେ ମଧ୍ୟ ଏହି କଥାଟିକୁ ଖୁବ୍ ଭଲଭାବରେ ବୁଝିଥାନ୍ତି । ତେଣୁ ସେମାନଙ୍କଠାରୁ ଉପକାର ପାଇସାରିବା ପରେ ଓ ପାଉଣା ମେଣ୍ଟାଇ ଦେବା ପରେ ମଧ୍ୟ କେହି ସେମାନଙ୍କୁ ସଙ୍ଖୋଳି ଆସୁ ବା ସମ୍ମାନ ପ୍ରଦର୍ଶନ କରୁ, ସେମାନେ କେବେହେଲେ ଏସବୁର ପ୍ରତ୍ୟାଶା ରଖିନଥାନ୍ତି ।

ମାତ୍ର, ଜଣେ ଶିକ୍ଷକ ବେଳକୁ ଏକଥା ଠିକ୍ ଓଲଟା । ବିପଦରେ ପଡ଼ି ମଣିଷ ଶିକ୍ଷକ ପାଖକୁ ଆସେନାହିଁ । କିଛି ହେବ ବୋଲି, କିଛି ପାହାଚ ଉଠିବ ବୋଲି ଓ ଜୀବନରେ ପାଇଲା ଭଳି କିଛି ପାଇବ ବୋଲି ତା'ପାଖକୁ ଆସିଥାଏ । ସଚରାଚର ଏକ ନିର୍ମୀୟମାଣ ବୟସରେ ଆମେ ଶିକ୍ଷକର ସମ୍ପର୍କରେ ଆସୁ । ସେତେବେଳେ ଆମ ବୟସ କଞ୍ଚା ଥାଏ, ମନ ଭାରି ତରଳ ଅବସ୍ଥାରେ ରହିଥାଏ, ମାତ୍ର ଆଗ୍ରହମାନେ ଅତ୍ୟନ୍ତ ଗ୍ରହଣଶୀଳ ହୋଇ ରହିଥାନ୍ତି । ଛାତ୍ର ଜଣେ ଦେବାଲାଗି ସମ୍ମତ ଶିକ୍ଷକର ସମ୍ପର୍କରେ ଆସିଲେ ଓ ଜଣେ ଶିକ୍ଷକ ପ୍ରକୃତରେ ଜଣେ ଗ୍ରହଣଶୀଳ କୌଣସି ଛାତ୍ରକୁ ଭେଟିଲେ ପୃଥିବୀରେ ସତେଅବା କେତେ ମନ କେତେ କଥା ସମ୍ଭବ ହୋଇଯାଏ । ବରଷାପାଣି ପଡ଼ି ଭୂଇଁରୁ ମୁହଁ କାଢ଼ିଥିବା ଗଛଟି ବଢ଼ିବାକୁ ଆରମ୍ଭ କରେ । ଏହା ଗଛ ଏବଂ ବରଷା ଉଭୟଙ୍କୁ ଆନନ୍ଦ ଦିଏ, ଉଭୟଙ୍କୁ କୃତାର୍ଥ କରେ । ଏହିଭଳି ଏକ ପରିଚୟ ଦ୍ୱାରା ଯାହାକିଛି ଘଟେ, ତାହା ଜୀବନଯାକ ମନେ ରହେ, ଛାତ୍ର ଓ ଶିକ୍ଷକ ଉଭୟଙ୍କର ଜୀବନଯାକ ମନେରହେ । ସତେଅବା ଦୁହେଁ ଦୁହିଁଙ୍କ ପାଖରେ କୃତଜ୍ଞ ହୋଇ ରହିଥାନ୍ତି ।

ଛାତ୍ରାବସ୍ଥାରେ ଛାତ୍ର ତା' ଅସଲ କେନ୍ଦ୍ରଟିକୁ ଛୁଇଁ ପାରିନଥିବା ମନରେ ଶିକ୍ଷକଙ୍କୁ ବୁଝିପାରେ ନାହିଁ । ଶୃଙ୍ଖଳାଗୁଡ଼ାକ ସତେଅବା ପଘାପରି ମନେ ହୁଅନ୍ତି ଓ ଛାତ୍ର ଅନେକ ସମୟରେ ସେହି ପଘାକୁ ଛିଡ଼ାଇ ବାହାରିଯିବା ପାଇଁ ବି ମନ କରିଥାଏ । କେତେ ଭୁଲବୁଝାମଣା ହୁଏ, ହୁଏତ ଅତ୍ୟନ୍ତ ନିକଟରେ ଥିଲେ ମଧ୍ୟ କେଉଁଠି ସତେଅବା କେତେ ଦୂରତା ରହି ଯାଇଥିବା ପରି ବୋଧ ହେଉଥାଏ । ତଥାପି, ଛାତ୍ର ଓ ଶିକ୍ଷକ ଉଭୟଙ୍କ ଭିତରେ ଏପରି ଉପାଦାନଟିଏ କେଉଁଠି ଅବଶ୍ୟ ରହିଥାଏ, ଯାହାକି ଦୁହିଁଙ୍କୁ ଦୁହିଁଙ୍କର ଅତ୍ୟନ୍ତ ନିକଟବର୍ତ୍ତୀ କରି ରଖିଥାଏ । ସମ୍ଭବତଃ ସେହି କାରଣରୁ ହିଁ, ତଥାକଥିତ ଛାତ୍ରାବସ୍ଥା କଟିଯିବା ପରେ ମଧ୍ୟ ଜଣେ ଛାତ୍ର ତା' ଶିକ୍ଷକଙ୍କୁ ମନେ ରଖିଥାଏ । ଦୁହିଁଙ୍କ ମଧ୍ୟରେ କେବେ ଭେଟ ହେଲେ କୃତଜ୍ଞତା ହିଁ ପ୍ରକଟ ହୁଏ । ପିଲାଦିନର ସକଳ ବୈମନସ୍ୟ ସତ୍ତ୍ୱେ ଶିକ୍ଷକ ପାଖରେ ଆପେ ଆପେ ମୁଣ୍ଡ ନଇଁଯାଏ, ଖାଲି ଭକ୍ତିରେ ଯେତେ ନୁହେଁ, ଏକ ଅନ୍ତର୍ଗତ ଆତ୍ମୀୟତାରେ ମୁଣ୍ଡ ଆପେଆପେ ନଇଁଯାଏ ।

ଆପଣାକୁ ଆପଣାର ଛାତ୍ର ପାଖରେ ଦେଇଦେଲାବେଳେ ଶିକ୍ଷକ ଯାହାକିଛି କରିଥାଏ, ତାହାକୁ ଶିକ୍ଷକର ଆଶୀର୍ବାଦ ବୋଲି କୁହାଯାଇ ପାରିବ । ସେହି ହେତୁ ଶିକ୍ଷକ ଓ ଛାତ୍ରର ଭେଟ ହେଲାବେଳେ ଶିକ୍ଷକ ଛାତ୍ରକୁ ତାର କୁଶଳ ପୁଛିବା ସମୟରେ ଛାତ୍ର "ଆପଣଙ୍କ ଆଶୀର୍ବାଦ'' ରୁ ସବୁ ଭଲ ବୋଲି ଉତ୍ତର ଦେଇଥାଏ । ଏହି କଥାପଦକ ଆଗେ ଗୋଟିଏ କଥାକୁ ବୁଝାଉଥିଲା, ଏବେ ହୁଏତ ଏକାବେଳେକେ ଆଉଗୋଟିଏ କଥାକୁ ବୁଝାଉଛି । ଛାତ୍ରଟିଏ ପାଠ ପଢ଼ିସାରି କେଉଁଠି କେତେ ବଡ଼ କାମ କରୁଛି ଓ ତାହା ଫଳରେ କେଡ଼େ ସୁଖରେ ଅଛି, ସେହିକଥା ଜଣାଇ ସିଏ ଏବେ ଶିକ୍ଷକଙ୍କ ପ୍ରଶ୍ନର ଉତ୍ତର ଦେଉଛି ଏବଂ ସିଏ ଯାହାକିଛି ସଫଳତା ପାଇଛି, ତାହାକୁ ଗୁରୁ ଆଶୀର୍ବାଦରୁ ପ୍ରାପ୍ତ ହୋଇଛି ବୋଲି ବ୍ୟକ୍ତ କରୁଛି । କିଏ ଡାକ୍ତର ହୋଇଛି, କିଏ କେଡ଼େ ବଡ଼ ଅଫିସର ହୋଇଛି, ଇତ୍ୟାଦି, ଇତ୍ୟାଦି । ଏସବୁ କ'ଣ ପ୍ରକୃତରେ ଶିକ୍ଷକଙ୍କ ଆଶୀର୍ବାଦରୁ ହୋଇଛି ? ଶିକ୍ଷକଟିଏ ଯଥାର୍ଥ ଶିକ୍ଷକଟିଏ ତାର ଜଣେ ଛାତ୍ରଠାରୁ ହୁଏତ ସମ୍ପୂର୍ଣ୍ଣ ଭିନ୍ନ ଆଉ କିଛି ଆଶା କରିଥାଏ ।

ଅସଲ ଶିକ୍ଷା ଆଉକିଛି ଆଶା ଅବଶ୍ୟ କରିଥାଏ । ଅସଲ ଶିକ୍ଷା ଆଖି ଖୋଲିଦିଏ । ଅସଲ ଶିକ୍ଷା ପୃଥିବୀକୁ ନୂଆ ଆଖିରେ ଦେଖି ଶିଖାଏ ଓ ନୂଆ ଆଖିରେ ଏହି ପୃଥିବୀକୁ ନିଜ ଭିତରେ ଅନୁଭବ କରୁଥିବା ମଣିଷର ଉଦ୍ୟମ ମଧ୍ୟ ସେହି ଅନୁସାରେ ବଦଳିଯାଏ । ଭଲ ଚାକିରିଟିଏ ପାଇବା, ବଡ଼ ଚାକିରିଟିଏ କରି କୌଣସି ଏକ ବଡ଼ ସୁଖ ବା ବଡ଼ ସଫଳତା ଲାଭ କରିବା, ଏଗୁଡ଼ାକ ତ' ଗୁଳାରେ ପଡ଼ିଯିବାର କଥା । କୌଣସି ଯଥାର୍ଥ ଶିକ୍ଷକ ଛାତ୍ର କେବଳ ଏତିକି ହେଲେ ଆଦୌ ସୁଖୀ ହୁଏନାହିଁ । ତେଣୁ ତାହାରି ଆଶୀର୍ବାଦରୁ ଛାତ୍ର ଅମୁକ ବା ସମୁକ ହାସଲ କରିଛି ବୋଲି ଶୁଣିଲେ ସେ ସୁଖୀ ହୋଇ ପାରୁଥିବ କିପରି ?

୩୦/୬/୯୦

# କ୍ରିୟାଶୀଳ ଲୋକଶକ୍ତି

କାଶୀପୁର ଆଗେ କଳାହାଣ୍ଡି ଗଡ଼ଜାତରେ ଥିଲା । ଏବେ ସ୍ୱାଧୀନ ଭାରତର କୋରାପୁଟ ଜିଲ୍ଲାରେ ରହିଛି । କାଶୀପୁରର ଅଧିକାଂଶ ମଣିଷଙ୍କ ପାଇଁ କଳାହାଣ୍ଡି ଯାହା, କୋରାପୁଟ ମଧ୍ୟ ସେଇଆ । ଆଦିବାସୀବହୁଳ ଏହି ଅଞ୍ଚଳଟି ଯଦି ସେଠାରେ ବାସ କରୁଥିବା ମଣିଷମାନଙ୍କ ପାଇଁ ହୋଇଥାନ୍ତା, ତେବେ ସେଠି ମଧ୍ୟ ମଣିଷର ଭାଗ୍ୟରେ କେତେ କ'ଣ ପରିବର୍ତ୍ତନ ହୋଇ ସାରନ୍ତାଣି । ସରକାରଙ୍କ ଅମଲାମାନେ ପ୍ରଧାନତଃ

ଆଣିବା ପାଇଁ କାଶୀପୁର ଯାଆନ୍ତି, ଲୋକମାନଙ୍କର ଉଦୟ ପାଇଁ ଏକ ଆବଶ୍ୟକ ଶାସନ ଅର୍ଥାତ୍ ନିର୍ଭର ଯୋଗାଇ ଦେବାକୁ ହୁଏତ ମୋଟେ ଯାଆନ୍ତି ନାହିଁ। କାଶୀପୁରକୁ ପଡ଼ିଆ ରଖି ସେମାନେ ଆପଣା ଭାଗ୍ୟର ଡ଼ଙ୍ଗରଚାଷ କରନ୍ତି। ତଥାପି ସେଠାରେ ମଧ୍ୟ ମଣିଷ ବୁଝିଲେଣି, ଚେଇଁଲେଣି ଓ ଆପଣାର ଆଖି ଖୋଲି ଆପଣାର ଭାଗ୍ୟ ଆଡ଼କୁ ଅନାଇଲେଣି।

ସେଠାରେ ଘଟିଥିବା ଏବକାର ଗୋଟିଏ କାହାଣୀ। ଏବେ ସେଠି ସରକାରଙ୍କ ତରଫରୁ ତଥାକଥିତ ବନ୍ଦୋବସ୍ତ କାମ ଚାଲିଛି। ଅସହାୟମାନଙ୍କର ସଂସ୍ଥାନକୁ ଆହୁରି ଅସ୍ତବ୍ୟସ୍ତ କରି ପକାଇବାର ଏକ ସରକାରୀ ବ୍ୟବସ୍ଥା – ଆମ ଦେଶରେ ଅନେକ କ୍ଷେତ୍ରରେ ତାହାରି ନାମ ବନ୍ଦୋବସ୍ତ। ଅନ୍ତତଃ କାଶୀପୁରର ଅସଲ ବାସିନ୍ଦାମାନଙ୍କ ଦୃଷ୍ଟିରୁ ସେହି କଥାଟି ଅବଶ୍ୟ କୁହାଯାଇପାରିବ। ସେହି ଅଞ୍ଚଳର ଗୋଟିଏ ଗାଆଁର ଖଣ୍ଡେ ଜମିକୁ ନେଇ ଏବେ ଯାହା ସତକୁ ସତ ଘଟିଛି, ଆମେ ଏଥର ସେଇକଥା ଶୁଣିବା। ଏହି ଜମିଖଣ୍ଡକୁ ଗତ ପଚାଶ ବର୍ଷ ହେଲା ପରଜା ଆଦିବାସୀମାନେ ଚାଷ କରି ଆସୁଥିଲେ। ବନ୍ଦୋବସ୍ତ ଆସିଲା, ପାଖ ଗାଆଁର କେତେ ଅଣଆଦିବାସୀଙ୍କର ଲାଳ ବୋହିଲା। ସେମାନେ ଆଦିବାସୀଙ୍କ ହାତରୁ ସେହି ଜମିକୁ ଛଡ଼ାଇ ଆଣିବାକୁ ମସୁଧା କଲେ। ସ୍ଥାନୀୟ ସରକାର ସେମାନଙ୍କୁ ହିମତ ଦେଲେ।

ଏହି ମସୁଧାରେ ଏକ ଅଣଆଦିବାସୀ ବାବୁ ପରିବାର କହିଲେ ଯେ ରଜାଙ୍କ ଅମଳରେ ଜମିଟି ତାଙ୍କ ପୂର୍ବପୁରୁଷମାନେ ଚାଷ କରୁଥିଲେ। ଏକଦା ସେହିମାନେ ହିଁ ଦୟାପରବଶ ହୋଇ ତାକୁ ଆଦିବାସୀମାନଙ୍କୁ ଚାଷ କରିବା ଲାଗି ଛାଡ଼ିଦେଇଥିଲେ। ମାତ୍ର ଏମାନେ ଆଉ ଛାଡ଼ିବେ ନାହିଁ, କାରଣ ଏହା ଆଇନ ଅନୁସାରେ ସେହିମାନଙ୍କର ଜମି। ସେମାନେ ଅମିନ ଧରି ଜମି ମାପ କରି ବାହାରିଲେ। ଗତ ପଚାଶ ବର୍ଷ ଧରି ଜମିକୁ ଚାଷ କରି ଆସୁଥିବା ପରଜା ଲୋକେ ତାହାର ପ୍ରତିବାଦ କଲେ। ଅମିନମାନେ ଫେରିଆସିଲେ।

ମାତ୍ର ତାହାର କେତେଦିନ ପରେ ବାବୁମାନେ ପୋଲିସକୁ ସାଙ୍ଗରେ ନେଇ ଅମିନମାନଙ୍କୁ ଧରି ପୁନର୍ବାର ଜମି ଉପରେ ଯାଇ ପହଞ୍ଚିଲେ। ସରକାରୀ ଆରକ୍ଷୀମାନଙ୍କର ଉପସ୍ଥିତିରେ ପୁଣି ଜମି ମାପ ହେଲା। ପୁଣି ଗାଆଁଯାକ ଲୋକ ପ୍ରତିବାଦ କରିବାକୁ ସେଠାରେ ଯାଇ ରୁଣ୍ଡ ହୋଇଗଲେ। ଗାଆଁର କେତେଜଣ ଟୋକା ଏଥିରେ ନେତୃତ୍ୱ ନେଲେ। ପୋଲିସ ବାବୁମାନଙ୍କର ପକ୍ଷ ସମର୍ଥନ କରି ଯୁକ୍ତି ବାଢ଼ିଲେ। ମାତ୍ର ପରଜାଏ କହିଲେ, ଆମେ ମରିବୁ ପଛେ, ଡ଼ଙ୍ଗର ଛାଡ଼ିବୁ ନାହିଁ। ପୋଲିସ ହାକିମ ଜବରଦସ୍ତି ଜମି ମାପ କରାଇବା ଲାଗି ହୁକୁମ ଦେଲେ।

ଅମିନମାନେ ପୋଲିସର ସୁରକ୍ଷା ସହିତ ଜମି ମାପିବାକୁ ବାହାରିଲେ । କିନ୍ତୁ ପରଜାମାନେ କ'ଣ ସେତିକିରେ ଛାଡ଼ି ଦେଇଥାନ୍ତେ ? ସେମାନେ ଭାବୁଥିଲେ, ସେଇମାନଙ୍କ ପକ୍ଷରେ ନ୍ୟାୟ ରହିଛି, ତେଣୁ ସେମାନେ ସେତିକିରେ ଛାଡ଼ିଦେବେ କାହିଁକି ? ସେମାନେ ଏକମେଳ ହୋଇ ଡ଼ଙ୍ଗର ଉପରକୁ ଉଠିଗଲେ ଓ ଉପରୁ ତଳକୁ ବଡ଼ ବଡ଼ ପଥର ଗଡ଼ାଇବା ଆରମ୍ଭ କରିଦେଲେ ।

ଏହି ଅବସ୍ଥାରେ ଅମିନ ବା କାହିଁକି ଜୀବନକୁ ବିପନ୍ନ କରିବାକୁ ଯିବେ ? ସେମାନେ ଛତ୍ରଭଙ୍ଗ ଦେଲେ । ପୋଲିସ ଅଫିସର ଓ ତାଙ୍କର କନିଷ୍ଠ ବଳମାନେ, ଅମିନ ଓ ଅନ୍ୟ ଗାଆଁରୁ ଜମିଟାକୁ ନିଜର କରି ନେବାପାଇଁ ଆସିଥିବା ଲୋକେ ଜମି ମାପିବା ଚେନ୍ ପ୍ରଭୃତି ଛାଡ଼ି ସେଠାରୁ ହୁରୁଡ଼ି ପଳାଇଲେ । ତାପରେ ଥାନାକୁ ଏବଂ ସେଟଲମେଣ୍ଟ ବାବୁମାନଙ୍କ ପାଖକୁ ଏତଲା ଗଲା ଉତ୍ତାରୁ ଅଫିସର ଆସି ଦୁଇପକ୍ଷ ସହିତ କଥାବାର୍ତ୍ତା ହେଲେ ଓ ଆପଣାର ରାୟ ଦେଲେ । ଜମିଟି ଆଦିବାସୀମାନଙ୍କ ହାତରେ ରହିଲା । କଳହର ଅନ୍ତ ହେଲା ।

ମଣିଷ ପକ୍ଷରେ ନ୍ୟାୟ ରହିଥାଏ, ମାତ୍ର ମଣିଷ ପାଖରେ ଶକ୍ତି ନଥାଏ । ତାକୁ ରକ୍ଷା କରିବେ ବୋଲି ବହୁ ଅପଶକ୍ତି ତାକୁ ଦୁର୍ବଳ ଓ ସହାୟହୀନ କରି ରଖିଥାନ୍ତି । ଅମଲା କିଣିହୋଇ ଯାଆନ୍ତି, ପୋଲିସ କିଣିହୋଇ ଯାଆନ୍ତି । ହୁଏତ ବାହାରକୁ ଉପରମାନଙ୍କ ପାଖକୁ ଖବର ଯାଇପାରେ ନାହିଁ ଏବଂ ଏଣେ ଜୀବନର ଡ଼ଙ୍ଗରଟି ଉଜୁଡ଼ି ଯାଏ । ତାକୁ ବାବୁମାନେ ନେଇ ପଳାନ୍ତି । ଖାଲି ଓଡ଼ିଶାର ନୁହେଁ, ଭାରତବର୍ଷର ଅଧିକାଂଶ ଆଦିବାସୀ ଗାଆଁରେ ଏକଥା ହୋଇଛି; ଏବେ ମଧ୍ୟ ହେଉଛି । ସରକାର ବୋଲି ଯାହାକିଛି ଏପର୍ଯ୍ୟନ୍ତ ସମ୍ଭବ ହୋଇଛି, ତାହା ବାବୁମାନଙ୍କ ପକ୍ଷରେ ହିଁ ଯାଇଛି । ବାବୁମାନଙ୍କ ସହିତ ସରକାରଙ୍କର ଯୁଗେ ଯୁଗେ ସତେଅବା ଏକ ରକ୍ତସମ୍ପର୍କ ରହି ଆସିଛି । ସରକାର ଇଚ୍ଛା କଲେ ମଧ୍ୟ କ'ଣ କରିପାରିବେ ? ଆଦିବାସୀର ବା ବଳ କାହିଁ, ନ୍ୟାୟ ମାଗି ରାୟଗଡ଼ା ଅଥବା କୋରାପୁଟଯାଏ ଆସିପାରିବ ! ସେଠି ନ୍ୟାୟ ମିଳିବ ବୋଲି ବା କେଉଁ ନିଶ୍ଚୟତା ରହିଛି ? ତେଣୁ ଏଣିକି ନିଜ ଆଡ଼କୁ ଅନାଇବାକୁ ପଡ଼ିବ, ନିଜର ଶକ୍ତିକୁ ଖୋଜିବାକୁ ପଡ଼ିବ । ଏହି ଶକ୍ତିକୁ ମହାତ୍ମା ଗାନ୍ଧୀ ସତ୍ୟାଗ୍ରହର ଶକ୍ତି ବୋଲି କହୁଥିଲେ । ଏହି ଶକ୍ତିକୁ ସଙ୍ଗଠିତ ଓ ସକ୍ରିୟ କରିବାକୁ ବାହାରୁ ନେତୃତ୍ୱ ଆସିବ ନାହିଁ । ବାହାରୁ ବାବୁମାନେ ଆସିବେ, ଟଙ୍କା ଆସିବ । ମାତ୍ର ଅସଲ ଶକ୍ତି ଭୂଇଁରୁ ବାହାରିବ । ସେତେବେଳେ ଡ଼ଙ୍ଗରମାନେ ବି କଥା କହିପାରିବେ ।

୭/୭/୯୦

# ମନୁଷ୍ୟେଷୁ ମହାଜନାଃ

ସିନ୍ଧୁବାବୁ ଟାଉନବସ୍ ଭିତରକୁ ପଶିଗଲେ । କିପରି ଯେ ପଶିଲେ, ସିଏ ସ୍ୱୟଂ ଜାଣିପାରିଲେ ନାହିଁ । ବସ୍ ସେତେବେଳକୁ ଯାତ୍ରୀମାନଙ୍କ ଦ୍ୱାରା ଭରପୁର ହୋଇ ଯାଇଥାଏ । ମଝିରେ ଠିଆ ହୋଇଥିବା ଯାତ୍ରୀମାନଙ୍କ ମଧ୍ୟରେ ଠେଲା ପେଲା ଆରମ୍ଭ ହୋଇଯାଇଥାଏ । ଆହୁରି ଅନେକ ଲୋକ ପଶିବାରେ ଲାଗିଥାଆନ୍ତି; ପେଲାପେଲି ଭିତରେ କେଉଁଠି ଯେ ଖସି ଯାଉଥାନ୍ତି, ସେମାନେ ନିଜେ ମଧ୍ୟ ସେକଥା ଜାଣି ପାରୁନଥାନ୍ତି । ସମସ୍ତଙ୍କ ଭିତରେ ଏକ ବ୍ୟଭିଚାରୀ ବ୍ୟସ୍ତତା, ସେମାନେ ଯେମିତି ହେଉ ବସ୍ ଭିତରେ ପଶିବେ । ଏହି ବସ୍‌ଟି ସତେଅବା ସେହି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏକ ତରଣୀ, ଯା ବାହାରିଗଲେ କି ସେମାନେ ଆଉ କେବେହେଲେ ଆରପାରିକୁ ଯାଇପାରିବେ ନାହିଁ ।

ସିନ୍ଧୁବାବୁ ଭିତରେ ନିଜପାଇଁ ଠାବଟିଏ ପାଇଗଲେ, ଠାବଟିଏ ପାଇ ପ୍ରାୟ ଏକ ମନୋରମ ତିର୍ଯ୍ୟକ୍ ଅବସ୍ଥାରେ ଛିଡ଼ାହେଲେ । ହାତଗୁଡ଼ାକୁ ଆଶ୍ରାଦେଇ ସେ ଗୋଡ଼କୁ ଦମ୍ଭ କଲେ । ଟାଉନବସ୍ ଏପରି ବେଭାରରେ ଚାଲୁଛି ଯେ, ଗୋଟାଏ ଗୋଡ଼ ଯେକୌଣସି ମତେ କେଉଁଠି ଠାକିଗଲେ ତାହାହିଁ ଯଥେଷ୍ଟ ହେବ । ଆଉ ଗୋଡ଼ଟା ଠାକି ନପାରିଲେ ମଧ୍ୟ ଚଳିବ । ଯେତେହେଲେ ତ ସେଇଟା ଏହି ଦେହବୃକ୍ଷଟା ସହିତ ଲାଗିଛି ! ତେଣୁ ଯେତେ ଅକଳରେ ରହି ଯେତେ ଯାହା ଟଳଟଳ ହେଲେ ମଧ୍ୟ ତାହା କଦାପି କୁଆଡ଼େ ଯାଇ ପାରିବନାହିଁ । ଭଗବାନଙ୍କର କେତେ କରୁଣା ଯେ ସିଏ ଏହି ଦେଶର ମଣିଷଙ୍କୁ ମାୟାବାଦର ମନ୍ତ୍ରରେ ମଣ କରି ରଖିଛନ୍ତି; ତେଣୁ ଗୋଡ଼ଟା, ଜୀବନଟା, ଏକାନ୍ତ ଆପଣାର ହୋଇ ମଧ୍ୟ ତଥାପି ସେଗୁଡ଼ାକ ପ୍ରତି ମାୟା ହେଉନାହିଁ । ସିନ୍ଧୁବାବୁ ସେହି ଭିଡ଼ ଭିତରେ ଆପଣାକୁ ସାଷ୍ଟାମ କରି ଆଣିଲେ । ବସ୍ ଚାଲିବାକୁ ଆରମ୍ଭ କଲା । ଠିକ୍ ନଉକା ଚାଲିବା ଢ଼ଙ୍ଗରେ ଚାଲିଲା । ଭିଡ଼ଟା ଆଉ ମୋଟେ ଭିଡ଼ ପରି ଲାଗିଲାନାହିଁ ।

ଏଥର ଯେଉଁ ତୀର୍ଥରେ ସିଏ ଯାଇ ପହଞ୍ଚିବା ବିଷୟରେ ଆଦୌ କୌଣସି ସନ୍ଦେହ ରହିଲା ନାହିଁ । ସିନ୍ଧୁବାବୁ ଚିନ୍ତା କରିବାକୁ ଲାଗିଲେ । ଭିଡ଼ରେ ବୋହି ସାରିଥିବା ଗମଗମ ଝାଳ ବାହାରର ହାଉଆ ଲାଗି କ୍ରମେ ଶୁଖି ଆସୁଥାଏ । ସିନ୍ଧୁବାବୁଙ୍କର ଚିନ୍ତା ବାଡ଼ ଡ଼େଇଁଗଲା । ତେଣେ ଠିଆଠିଆ ଆଖି ମାଡ଼ି ପଡୁଥାଏ ସତ, ମାତ୍ର ତାହା ତାଙ୍କ ଭାବନାରେ ଆଦୌ କୌଣସି ବାଧା ସୃଷ୍ଟି କରୁନଥାଏ । ସିନ୍ଧୁବାବୁ ସାହିତ୍ୟିକ, ସିଏ କେତେ ବହି ଲେଖିଛନ୍ତି । ସଭାସମିତିରେ ତାଙ୍କୁ କେତେ ସମ୍ମାନ ଓ ଉପାୟନ ମିଳିଛି । ତରୁଣ ଲେଖକମାନେ ତାଙ୍କରି ଭଳି ହେବେ ବୋଲି ତାଙ୍କଠାରୁ କେତେଥର ଆଶୀର୍ବାଦ

ମାଗି ଆସିଛନ୍ତି । ଏତେ ବଡ଼ ମଣିଷ ଏଭଳି ବସ୍‌ରେ ଯାଆନ୍ତି ? ସିନ୍ଧୁବାବୁଙ୍କର ଚିନ୍ତାରୂପୀ ଗନ୍ଧିପୋକରେ ସତେଅବା ଡ଼େଣା ଲାଗିଗଲା । ସେମାନେ କୁଆଡ଼େ ମନ କୁଆଡ଼େ ଉଡ଼ି ବୁଲିବାକୁ ମନ କଲେ ।

ଏହି ଦେଶ ତା'ର ସାହିତ୍ୟିକମାନଙ୍କୁ ଯଥାର୍ଥ ସମ୍ମାନ ଦେଇପାରିଲା କୁଆଡୁ- ସିନ୍ଧୁବାବୁ ଚିନ୍ତା କରିବାକୁ ଲାଗିଲେ । ଆଫ୍ରିକାରେ କୋଉ ଦେଶର ରାଷ୍ଟ୍ରପତି ହେଉଛନ୍ତି ଜଣେ କବି । ଛାର ଆଫ୍ରିକାରେ ଯାହା ହୋଇପାରିଲା, ବିଖ୍ୟାତ ଭାରତବର୍ଷରେ ମଧ୍ୟ ତାହା ହୋଇପାରିଲା ନାହିଁ ବୋଲି ସିନ୍ଧୁବାବୁ ଅତ୍ୟନ୍ତ ଆକ୍ରୋଶର ସହିତ ପ୍ରଶ୍ନ କରିବାକୁ ଲାଗିଲେ । ସାହିତ୍ୟର ସେବା କରୁଥିବା ଲୋକ ସିଂହାସନରେ ଯାଇ ବସିଥାନ୍ତି । ଯେଉଁସବୁ ଦେଶ ଆପଣାର କବି ଓ ଲେଖକମାନଙ୍କୁ ପ୍ରକୃତ ସମ୍ମାନ କରି ଜାଣନ୍ତି, ସିନ୍ଧୁବାବୁଙ୍କର ସେହି ସବୁ ଦେଶଗୁଡ଼ିକର କଥା ଭାରି ମନେ ପଡ଼ିଲା ।

ପୂର୍ବ ଇଉରୋପରେ ଦୁଇଟା ଦେଶ, ହଙ୍ଗେରୀ ଓ ଚେକୋସ୍ଲୋଭାକିଆ, – ଯେଉଁମାନେ କି ମାତ୍ର କେତେମାସ ହେଲା ପୁରୁଣା ନଅରଗୁଡ଼ାକୁ ଭାଙ୍ଗି କ'ଣସବୁ ନୂଆ ଗଢ଼ିବେ ବୋଲି ଲୋକେ ଦାଣ୍ଡରେ ମସୁଧା କରୁଛନ୍ତି, ସେଠାରେ ମଧ୍ୟ ସେମାନେ ଦୁଇଜଣ ଲେଖକଙ୍କୁ ରାଷ୍ଟ୍ରପତି କରି ବସାଇ ସାରିଲେଣି । ଅର୍ଥାତ୍, ସେମାନେ ସେମାନଙ୍କୁ ରାଜ୍ୟର ସର୍ବୋଚ୍ଚ ରାଜନୀତିକ କ୍ଷମତା ପ୍ରଦାନ କରିଛନ୍ତି ।

ଅଥଚ ଭାରତବର୍ଷରେ ତାଙ୍କ ଭଳି ଜଣେ ବିଖ୍ୟାତ ସାହିତ୍ୟିକଙ୍କୁ ଟାଉନ ବସ୍‌ରେ ଯିବାକୁ ପଡୁଛି । ହେଲା ଏବେ ସିଏ ଟାଉନବସ୍‌ରେ ଗଲେ, ଠିଆହୋଇ ଗଲେ, – ମାତ୍ର ଲୋକସାଧାରଣ ତ ଅନ୍ତତଃ ତାଙ୍କୁ ଏଡ଼େବଡ଼ ଅମୁକ ବୋଲି ଚିହ୍ନି ପାରୁଥାନ୍ତେ ! ଲୋକେ ତ ଲୋକ, ଏହି ବସ୍‌ର କଣ୍ଡକ୍ଟରଟା ମଧ୍ୟ ତାଙ୍କୁ ଚିହ୍ନି ପାରୁନାହିଁ, ତାଙ୍କୁ ସବୁ ଯାତ୍ରୀଙ୍କ ସହିତ ସମାନ କରି ପକାଉଛି, ସମସ୍ତଙ୍କ ପରି ତାଙ୍କୁ ମଧ୍ୟ ମଉସା ବୋଲି ଡାକି ପଇସା ମାଗୁଛି । "ଯେଉଁ ଜାତି ତା'ର ସାହିତ୍ୟ ଓ ସାହିତ୍ୟିକଙ୍କୁ ଉଚିତ ସମ୍ମାନ ପ୍ରଦାନ କରି ଶିଖିନାହିଁ, ସେହି ଜାତି କଦାପି ଉନ୍ନତି କରି ପାରିବ ନାହିଁ," ବୋଲି ସେ ସଭାରେ କେତେଥର ନକହିଛନ୍ତି ଓ ସଭାରେ ଥିବା ଲୋକେ ତାଙ୍କର ସେହି କଥାକୁ ଶୁଣି କେତେ କରତାଳି ନଦେଇଛନ୍ତି ! ସିନ୍ଧୁ ବାବୁ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲେ । ମର୍ମାହତ ହେବାର ସେହି ଆନନ୍ଦମୟ ମୋହରେ ସେ ଭିତରେ, ବାହାରେ, ଅଧଃରେ, ଉର୍ଦ୍ଧ୍ୱରେ ସତେଅବା କେବଳ ସାହିତ୍ୟକୁ ଦେଖିବାକୁ ଲାଗିଲେ, ନିଜକୁ ମୋଟେ ଦେଖିପାରିଲେ ନାହିଁ ।

ସେହି ସିନ୍ଧୁବାବୁ ଯେତେବେଳେ ଗଭା ବୟସର ଥିଲେ, ସେତେବେଳେ ସେ ଭାରତର ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ଯୋଗ ଦେଇଥିଲେ । ସେତେବେଳେ ବି କିଛି

କିଛି ସାହିତ୍ୟ କରିବା ଆରମ୍ଭ କରି ଦେଇଥିଲେ । ସେତେବେଳେ ଅଧିକାଂଶ ଦିନ ଅଧିକାଂଶ ବାଟକୁ ସେ ପାଦରେ ଚାଲି ଚାଲି ଯାଉଥିଲେ । ଖୁସି ହୋଇ ଚାଲି ଚାଲି ଯାଉଥିଲେ । ସେତେବେଳେ ରାଷ୍ଟ୍ରପତି ହେବାର କୌଣସି ଆକାଙ୍କ୍ଷା ତାଙ୍କୁ ଗିଳି ନଥିଲା । ଆଖି ଆଗରେ କେବଳ ସଂଗ୍ରାମ ହିଁ ଦିଶୁଥିଲା । ସାହିତ୍ୟଟା ମଧ୍ୟ ସେହି ସଂଗ୍ରାମର ଏକ ଅଂଶ ବୋଲି ଅନୁଭୂତ ହେଉଥିଲା ।

୨୧/୭/୯୦

# ମିଳିତ ସଂଗ୍ରାମଦ୍ୱାରା

ଆମ ପୃଥିବୀରେ ବଡ଼ ରାଷ୍ଟ୍ରମାନେ ମେଣ୍ଟ ବାନ୍ଧିଛନ୍ତି । ସେମାନଙ୍କ ଦେଖାଦେଖି ଏବେ ସାନ ରାଷ୍ଟ୍ରମାନେ ବି ମେଣ୍ଟ ବାନ୍ଧିଲେଣି । ସାନ ସାନ ରାଷ୍ଟ୍ରମାନେ ପୃଥିବୀର ବଡ଼ ବଡ଼ ରାଷ୍ଟ୍ରମାନଙ୍କ ପରି ହେବାକୁ ଇଚ୍ଛା କରୁଛନ୍ତି । ଆପଣା ଭିତରେ ସେମାନଙ୍କର ଯେଉଁ ହୀନମନ୍ୟତା ନାନା କାରଣରୁ ରହିଛି, ବଡ଼ ଓ ଆହୁରି ବଡ଼ ହୋଇ ସେମାନେ ସେହି ହୀନମନ୍ୟତାକୁ ଦୂର କରିପାରିବେ ବୋଲି ଏକାଠି ପାଞ୍ଚ କରୁଛନ୍ତି । ତେଣୁ, ଠିକ୍ ବଡ଼ମାନଙ୍କ ଭଳି ଏମାନେ ମଧ୍ୟ ଦରବାର ବସାଇ ମିଳିତ ହେଉଛନ୍ତି ।

ଏବେ କୁଆଲାମ୍ପୁର ଠାରେ ସେହିପରି ଦରବାରଟିଏ ବସିଥିଲା । ଏହି ସମ୍ମିଳନୀରେ ପନ୍ଦରଟି ଦେଶର ମୁଖ୍ୟମାନେ ମିଳିତ ହୋଇଥିଲେ । ସେହି ପଙ୍ଗତ ଭିତରେ ଭାରତବର୍ଷ ମଧ୍ୟ ଥିଲା ଓ ଭାରତବର୍ଷର ପ୍ରଧାନମନ୍ତ୍ରୀ ଦଳବଳ ଧରି ସେଠାକୁ ଯାଇଥିଲେ । ଆନ୍ତର୍ଜାତିକ ଅର୍ଥନୈତିକ କ୍ଷେତ୍ରରେ ଉପଯୁକ୍ତ ନ୍ୟାୟ ପାଇପାରିବା ନିମନ୍ତେ ବିକାଶୋନ୍ମୁଖୀ ରାଷ୍ଟ୍ରସମୂହ ଧନୀ ରାଷ୍ଟ୍ରଗୁଡ଼ିକର ବିରୋଧରେ ସମ୍ମିଳିତ ଭାବରେ ସଂଗ୍ରାମ କରିବାଲାଗି ସେ ସେହି ସମ୍ମିଳନୀରେ ଆହ୍ୱାନ ଦେଇଆସିଛନ୍ତି । ସିଏ ଅଭିଯୋଗ କରି କହିଛନ୍ତି ଯେ,ଦରିଦ୍ର ରାଷ୍ଟ୍ରମାନଙ୍କ ଉପରେ ଧନୀ ରାଷ୍ଟ୍ରମାନେ ଅଯଥା ଚାପ ପ୍ରୟୋଗ କରିବାକୁ ଉଦ୍ୟମ କରୁଛନ୍ତି । ଏଭଳି ଚାପ ପ୍ରୟୋଗର ମିଳିତ ପ୍ରତିରୋଧ କରିବା ସକାଶେ ଦରିଦ୍ର ରାଷ୍ଟ୍ରମାନେ ଅଣ୍ଟା ଭିଡ଼ି ଲଢ଼େଇ କରିବାକୁ ଭାରତର ପ୍ରଧାନମନ୍ତ୍ରୀ ସଂପୃକ୍ତ ସମସ୍ତଙ୍କୁ ନିବେଦନ କରିଛନ୍ତି ।

ପୃଥିବୀର ବଡ଼ ରାଷ୍ଟ୍ର ଯେଉଁମାନେ, ସେମାନେ ବଡ଼ ବେପାରୀ । ସେଇମାନଙ୍କ ହାତରେ ଅଧିକ ଧନ, ଅଧିକ ଯନ୍ତ୍ରକୌଶଳ, ଅଧିକ ଅସ୍ତ୍ର ଶସ୍ତ୍ର । ଏକ ଜାଗତିକ ପୁଞ୍ଜିବାଦୀ ବ୍ୟବସ୍ଥା ମଧ୍ୟରେ ସାନ ସାନ ରାଷ୍ଟ୍ରମାନେ ବଡ଼ ରାଷ୍ଟ୍ରମାନଙ୍କର ଲାଙ୍ଗୁଳରେ ବନ୍ଧାହୋଇ ରହିଛନ୍ତି । ବିକାଶଶୀଳ ରାଷ୍ଟ୍ରମାନେ ହେଉଛନ୍ତି ଅଧିକାଂଶତଃ ଦ୍ୱିତୀୟ ମହାଯୁଦ୍ଧ ପରେ ରାଜନୀତିକ ସ୍ୱାଧୀନତା ଲାଭ କରିଥିବା ରାଷ୍ଟ୍ର ।

ରାଜନୀତିକ ସ୍ୱାଧୀନତା ହାସଲ ହେବା ପରେ ଏହିସବୁ ଦେଶରେ ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଆହୁରି ଅନେକ ପରବର୍ତ୍ତୀ ବିପ୍ଳବ ଘଟିଥାନ୍ତା, ଆହୁରି ଅନେକ ପରିବର୍ତ୍ତନ ପାଇଁ ବାଟ ଛାଡ଼ି ଦିଆଯାଉଥାନ୍ତା । ଆମ ଅଦ୍ୟତମ ଇତିହାସ କହୁଛି ଯେ, ତାହା ଘଟିନାହିଁ ବା ଘଟୁନାହିଁ । ରାଜନୀତିକ ସ୍ୱାଧୀନତା ହାସଲ କରିଥିବା ଏବଂ ପରବର୍ତ୍ତୀ ପରିବର୍ତ୍ତନଗୁଡ଼ିକ ଲାଗି ଅପେକ୍ଷା କରି ରହିଥିବା ଅଧିକାଂଶ ଦେଶରେ ଜାତୀୟତାର ଯେଉଁ ଆଦିମ ପ୍ରଥମ ଯୁଗଟି ଚାଲିଛି, ତାହାର ଆଢୁଆଳରେ ସେଠି ରାଜନୀତିକ ଶାସନର ଗାଦୀଗୁଡ଼ିକୁ ମାଡ଼ିବସିଥିବା ଶାସକମାନେ ପରବର୍ତ୍ତୀ ଅନ୍ୟ ପରିବର୍ତ୍ତନମାନ ସତକୁ ସତ ହେଉ ବୋଲି କ୍ୱଚିତ୍ ଇଚ୍ଛା କରୁଛନ୍ତି । ଅର୍ଥାତ୍, ପ୍ରାୟ ବାଧ ନହେବା ପର୍ଯ୍ୟନ୍ତ ବାଟ ଛାଡ଼ୁନାହାନ୍ତି ।

ପୃଥିବୀସ୍ଥ ଅର୍ଥନୈତିକ ବଜାରର ଯାବତୀୟ ଲାଭ, ଋଣ ଓ ଅନୁଗ୍ରହ ନିୟମତଃ ଏହି ଶାସକମାନଙ୍କର ହାତକୁ ଆସୁଛି । ଏହି ଶାସକମାନେ ଦେଶ ନାମରେ ପ୍ରାୟ ସବୁଯାକ ଲାଭ ଓ ଅନୁଗ୍ରହକୁ ଆପେ ଖାଉଛନ୍ତି । ସାମରିକ ସାହାଯ୍ୟ ମାଗିଆଣି ନିଜ ନିଜ ଦେଶରେ ହିଁ ସତେଅବା ପୃଥିବୀର ବୃହତ୍ତମ ଶକ୍ତି ଭଳି ଦେଖାଇ ହେଉଛନ୍ତି ଓ ଜନଶକ୍ତିକୁ ଗଦ ସୁଙ୍ଘାଇ ଜଡ଼ ଓ ଶୀତଳ କରି ରଖିଛନ୍ତି । ଏମାନେ ଅସ୍ତ୍ର କିଣୁଛନ୍ତି, ଅସ୍ତ୍ର ବଳରେ ନିଜ ଦେଶରେ ଅର୍ଥାତ୍ ନିଜ ପ୍ରଜାଙ୍କ ଆଗରେ କେଡ଼େ ବଳୀୟାର ହୋଇ ଦେଖାଯାଉଛନ୍ତି । ଏମାନଙ୍କର ନଅରଗୁଡ଼ାକ ଦୁର୍ଯ୍ୟୋଧନ ଓ ଦୁଃଶାସନମାନଙ୍କୁ ମଧ୍ୟ ଟପି ଯାଉଛନ୍ତି । ମଣିଷମାନେ କାମ ପାଉ ନାହାନ୍ତି, ଦେଶର ସବୁ ପିଲାଙ୍କ ଲାଗି ଚାଟଶାଳୀ ତିଆରି ହୋଇ ପାରୁନାହିଁ, ଲୋକେ ରୋଗରେ ଭୋକରେ ଅତ୍ୟନ୍ତ ଅସହାୟ ହୋଇ ରହିଛନ୍ତି । ମାତ୍ର ସେମାନଙ୍କର ନୂଆ ରାଜାମାନେ ଫୁଲେଇ ହେବାରେ ଲାଗିଛନ୍ତି । ସେମାନଙ୍କର ଏବେ ପ୍ରାୟ କୌଣସି ରାଜନୀତି ନାହିଁ । ମୋଗଲ ବାଦଶାହର ରାଜନୀତି କାହିଁକି କେଉଁ କାମରେ ଆସିବ ?

ଏହି କ୍ଷୁଦ୍ର ଶାସକମାନେ ମିଳିତ ସଂଗ୍ରାମ କରି ପୃଥିବୀରେ ଆହୁରି ଅଧିକ ହୋଇ ଦିଶନ୍ତୁ ବୋଲି ଭାରତବର୍ଷର ପ୍ରଧାନମନ୍ତ୍ରୀ ସେମାନଙ୍କୁ ନିବେଦନ କରିଛନ୍ତି । ସତକୁ ସତ ଯଦି ସେମାନେ ସଂଗ୍ରାମରେ ଜୟଲାଭ କରିବେ, ମାତ୍ର ଏଣେ ସେମାନଙ୍କ ଦେଶର ଯାବତୀୟ ବ୍ୟବସ୍ଥା ଯେମିତି ଅଛି ସେମିତି ରହିଥିବ, ତେବେ ତଦ୍ୱାରା ସାଧାରଣ ଲୋକସମୂହର ଖୁବ୍ ବେଶୀ ଉପକାର ହେବନାହିଁ । ଅସୁରମାନେ ଯାହା ଅଧିକ ଆସୁରିକ ହେବାର ମଉକା ଲାଭ କରୁଥିବେ । ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ଉପେକ୍ଷିତ ଅଥଚ ଅତ୍ୟାବଶ୍ୟକ ବିପ୍ଳବଗୁଡ଼ିକ ହୋଇ ଏକ ଯଥାର୍ଥ ମୂଳଦୁଆ ତିଆରି ହୋଇ ପାରିଲେ ଯାଇ

ବିକାଶ ଦ୍ୱାରା ଯଥାର୍ଥ ଲୋକୋନ୍ନୟନ ମଧ୍ୟ ସମ୍ଭବ ହୋଇପାରିବ ଏବଂ ଆଧୁନିକ ସାମନ୍ତବାଦ ସତକୁ ସତ ଯିବ ବୋଲି ଲୋକମନରେ ପ୍ରତ୍ୟୟ ଆସିବ । ସାନ ରାଷ୍ଟ୍ରକୁ ଭୋଗ କରୁଥିବା ଉଚ୍ଚଆଖିଆ ନାୟକମାନେ କଦାପି ସେହି ମୂଳଦୁଆ ଗଢ଼ା ହେବାରେ ସାହାଯ୍ୟ କରି ପାରିବେ ନାହିଁ । ଅସଳ ନେତୃତ୍ୱ ଭୂଇଁରୁ ବାହାରିବ, ଆକାଶିଆମାନେ ଅଯୋଗ୍ୟ ବୋଲି ପ୍ରତିପାଦିତ ହୋଇଯିବେ ।

୨୮/୭/୯୦

# ଦୁଃଖୀନାଶନ ହେ

ସଂସାରଯାକର ଦୁଃଖକୁ ଆମେ ଭିଆଇବୁ ଏବଂ ଆମେ ଦୁଃଖଗୁଡ଼ିକର ନାଶ କରିବାକୁ ଭଗବାନ ନିକିମା ହୋଇ ଆମ ପାଖକୁ ଆସିବେ - ଇଏ ପୁଣି କେଉଁଭଳି କଥା ? ଆମର ଏହି ନିତିଦିନିଆ ସମ୍ବନ୍ଧ ଓ ଅସମ୍ବନ୍ଧର ପୃଥିବୀରେ ଆମର ଅଧିକାଂଶ ଦୁଃଖକୁ ଏହି ମଣିଷ ଭିଆଉଛି । ମଣିଷ ଯାହାକୁ ଭିଆଉଛି, ମଣିଷ ହିଁ ତାହାର ନିରାକରଣ କରିପାରିବ । ତେଣୁ, ଭଗବାନଙ୍କୁ ଡାକିଲେ, ଆର୍ତ୍ତି ଜଣାଇଲେ ମଣିଷର ଦୁଃଖ ଯିବ ବୋଲି ଆମର ଯେଉଁ ସିଆଣିଆ ସଂସ୍କାରଟି ପ୍ରାୟ କାଳ କାଳରୁ ଚଳି ଆସିଛି, ଅଧିକାଂଶ କ୍ଷେତ୍ରରେ ସିଆଣିଆ ମଣିଷମାନଙ୍କୁ ହିଁ ସେଥିପାଇଁ ବାହାଦୁରୀ ଦେବାକୁ ପଡ଼ିବ । ସିଆଣିଆ ଧର୍ମାତ୍ମାମାନେ ମଧ୍ୟ ଚିରଦିନ ସେହି ସିଆଣିଆ ମଣିଷମାନଙ୍କର ପଟରେ ରହି ଆସିଛନ୍ତି । ତୁମ ଆମ ଅନେକଙ୍କର ଦୁଃଖ ବଢ଼ାଇବାରେ ସାହାଯ୍ୟ କରୁଛନ୍ତି, ଏହି ପୃଥିବୀଟିକୁ ଭାରି ଦୁଃଖୀ କରି ରଖିଛନ୍ତି ।

ଥୋକେ ମଣିଷ ସୁଖ ପାଇବେ ବୋଲି ପୃଥିବୀରେ ଥାକ ଥାକ ମଣିଷଙ୍କୁ ଦୁଃଖ ଭୋଗିବାକୁ ହେଉଛି । ଥୋକେ ସାଆନ୍ତ ଏବଂ ସଭ୍ୟ ହୋଇ ରହିବେ ବୋଲି ଅଗଣିତ ମଣିଷ ଘୁଷୁରି ହୋଇ ରହିଛନ୍ତି । ଥୋକେ ମଣିଷ ବିଦ୍ୱାନ ହୋଇ ଦଶର ଓ ଦେଶର ମର୍ଯ୍ୟାଦା ବଢ଼ାଇବେ ବୋଲି ପୃଥିବୀରେ ବହୁକୋଟି ମଣିଷଙ୍କୁ ମୂର୍ଖ କରି ରଖାଯାଇଛି । ଥୋକେ ଅତ୍ୟୁତ୍ତମ ଦିଶିବେ ବୋଲି ମଣିଷମାନଙ୍କର କେତେ କେତେ ଥାଟକୁ ଏକ ଅଧମ ସ୍ତରରେ ହାତଛନ୍ଦ ଗୋଡ଼ଛନ୍ଦ ଦେଇ ବାନ୍ଧି ରଖାଯାଇଛି । ଯେଉଁ ଭଗବାନଙ୍କର ଅନୁଗ୍ରହରୁ ଭାଗ୍ୟବାନମାନେ ଯାବତୀୟ ଭାଗ୍ୟର ଅଧିକାରୀ ହୋଇ ରହିଛନ୍ତି, ଅଭାଗାମାନେ ଆମ ପୃଥିବୀର ଏକ ଅପଚକ୍ରାନ୍ତରେ ପଡ଼ି ସେହି ଭଗବାନଙ୍କୁ ହିଁ ଦୁଃଖନାଶନ ବୋଲି ଡାକୁଛନ୍ତି । ସେହି ଭଗବାନ ଭାଗ୍ୟବାନ ମଣିଷମାନଙ୍କର ପ୍ରସାଦରୁ ପାଟଲୁଗା ପିନ୍ଧି ଦେଉଳମାନଙ୍କରେ ବସିଛନ୍ତି, ଗଜପତିମାନଙ୍କ ପରି ଭୋଗ ଖାଉଛନ୍ତି, ରଥ ଉପରେ ବସି ଦାଣ୍ଡକୁ ବାହାରୁଛନ୍ତି

ଏବଂ ଭରା ଭୁଞ୍ଜୁଥିବା ପଣ୍ଡିତ ଓ ପ୍ରବରମାନେ କେଡ଼େ ଠାଣିରେ ତାଙ୍କର ଅନନ୍ତ ମହିମା ବିଷୟରେ ବକ୍ତୃତା ଦେଉଛନ୍ତି । ସେହି ଭଗବାନ ଦୁଃଖୀ ମଣିଷଙ୍କର ଦୁଃଖ ଦୂର କରିବା ପାଇଁ ଆଦୌ ଇଚ୍ଛା କରିବେ ବା କାହିଁକି ? ମଣିଷ ଯାହା ମିଛଟାରେ ଧନ୍ଦି ହୋଇ ମରୁଥିବ !

ପୃଥିବୀର ଜଡ଼ସ୍ତରୀୟ ଦୁଃଖଗୁଡ଼ାକୁ ଦୂର କରିବା ଲାଗି ଭଗବାନଙ୍କର ଯଦି ପ୍ରକୃତରେ କୌଣସି ବଳ ବା ସାମର୍ଥ୍ୟ ରହିଥାନ୍ତା, ତେବେ ସିଏ ତ କୋଉକାଳୁ ପୃଥିବୀକୁ ଦୁଃଖମୁକ୍ତ କରି ସାରନ୍ତେଣି । ପ୍ରକୃତ ଭଗବାନ ମଣିଷ ଲାଗି କାହିଁକି ଆଦୌ କୌଣସି ଦୁଃଖର କାରଣ ହେବେ ? ମଣିଷ ଭୋକ ଉପାସରେ ରହୁ, ବହୁବିଧ ଅନ୍ୟାୟର ଶିକାର ହେଉ, ନିତାନ୍ତ ଅକିଞ୍ଚନ ଭାବରେ ଭାଗ୍ୟକୁ ଆଦରି କର୍ମକଷଣକୁ ସହିବାରେ ଲାଗିଥାଉ, ସତ ଭଗବାନ ସତକୁ ସତ ଏସବୁ କଥା କାହିଁକି ଇଚ୍ଛା କରିବେ ? ମାତ୍ର, ମଣିଷ ଦ୍ୱାରା ତିଆହେଉଥିବା ଦୁଃଖଗୁଡ଼ାକୁ ଭଗବାନ କିପରି ଦୂର କରିପାରିବେ ? ଉଦଣ୍ଡ ମଣିଷମାନେ ଚିରକାଳ ଭଗବାନଙ୍କ ଉପରେ ହାକିମୀ କରି ଆସିଛନ୍ତି ଓ ଭଗବାନଙ୍କୁ ଖୁଣ୍ଟରେ ବାନ୍ଧି ରଖିଛନ୍ତି । ଉଦଣ୍ଡ ମଣିଷମାନେ ହିଁ ଚିରକାଳ ବହୁ ଅବ୍ୟବସ୍ଥାକୁ ବ୍ୟବସ୍ଥା ବୋଲି ଚଳାଇ ଆସିଛନ୍ତି ଓ ଭଗବାନଙ୍କୁ ଲାଙ୍ଗରା କରି ରଖିଛନ୍ତି ।

ଉଦଣ୍ଡ ମଣିଷମାନଙ୍କୁ ଭଗବାନ ନୁହନ୍ତି, ଆଖି ଥିବା, ସାହସ ଥିବା ଏବଂ ଏକ ଈଶ୍ୱରୀୟ କ୍ରୋଧ ଥିବା ଏକ ଅନ୍ୟ ଧାତୁର ମଣିଷମାନେ ହିଁ ସାଧ୍ୟ କରି ପାରିବେ । ପୃଥିବୀରୁ ଦୁଃଖ, ଅନ୍ୟାୟ ଓ ଅସୁନ୍ଦରତାଗୁଡ଼ିକୁ ଦୂର କରିବାକୁ ସେହି ଅନ୍ୟ ଧାତୁଗୁଡ଼ିକର ହିଁ ଅନୁଶୀଳନ ହେବା ଉଚିତ । ସେହି ଅନ୍ୟ ଧାତୁଗୁଡ଼ିକ ଆମ ଆକାଂକ୍ଷାକୁ ସ୍ପର୍ଶ କଲେ ତାହାରି ଦ୍ୱାରା ହିଁ ଆମ ଆଗରେ ଅନ୍ୟ ସମ୍ଭାବନାଗୁଡ଼ିକ ଦୃଷ୍ଟିଗୋଚର ହୋଇପାରିବ ।

ଯଦି ମଣିଷ ମୂଳରୁ ହିଁ ତା'ର ଦୁଃଖ ଦୂର କରିବାର ଯାବତୀୟ ଦାୟିତ୍ୱକୁ ଚଲାଖ ମଣିଷମାନଙ୍କ ଦ୍ୱାରା ଫନ୍ଦା ହୋଇଥିବା ଦୁଃଖନାଶନ ଭଗବାନଙ୍କ ଉପରେ ଛାଡ଼ି ଦେଇଥାନ୍ତା, ତେବେ ତା'ଲାଗି ଆଦୌ କୌଣସି ଅଗ୍ରଗତି ସମ୍ଭବ ହୋଇ ନଥାନ୍ତା । ଆଦୌ କୌଣସି ସଭ୍ୟତା ସମ୍ଭବ ହୋଇ ନଥାନ୍ତା, କୌଣସି ସଂସ୍କୃତି ସମ୍ଭବ ହେବା ତ ଆହୁରି ଅଧିକ ଦୂରର କଥା । ଅସଲ ସଂସ୍କୃତିର ପରିସର ଭିତରକୁ ଆସିଲେ ମଣିଷ କଦାପି ଆଉ କାହାକୁ ଗିଳି ପକାଇବାକୁ ଧାଏଁ ନାହିଁ, ନିଜେ ସବୁକିଛି ଭୋଗ କରିବ ବୋଲି ଆଉ ଦଶଜଣଙ୍କୁ କଦାପି ବଞ୍ଚିତ କରେ ନାହିଁ । ମଣିଷର ଅସଲ ସଂସ୍କୃତି ତାକୁ ତା' ନିଜ ଭିତରେ ହିଁ ଭଗବାନଙ୍କର ଦର୍ଶନ କରାଏ । ନିଜ ଭିତରେ ସେହି ଦର୍ଶନ ହୋଇଯିବା ମାତ୍ରକେ ମଣିଷ ତାକୁ ଘେରି ରହିଥିବା ଅନ୍ଧାରଗୁଡ଼ାକୁ ମୋଟେ ମାନି ନିଏ ନାହିଁ । ନିଜ ଭିତରେ

ଭଗବାନଙ୍କୁ ଅନୁଭବ କରୁଥିବା ମଣିଷ ସତେଅବା ଭଗବାନଙ୍କର ସବୁ ଆୟୁଧକୁ ନିଜ ହାତରେ ଧରିଥିବା ପରି ଅନୁଭବ କରେ । ସିଏ ଆପଣାକୁ ଆଦୌ କୌଣସି ପ୍ରକାରେ ଅସହାୟ ବୋଲି ଭାବେ ନାହିଁ । ସେଇ ପୃଥିବୀକୁ ବଦଳାଏ । ଏହିପରି ଲୋକମାନଙ୍କ ଦ୍ୱାରା ସବୁଦିନେ ପୃଥିବୀ ବଦଳିଛି, ଏବେ ମଧ୍ୟ ବଦଳୁଛି । ସେଇ ମଣିଷ ଯାବତୀୟ ପରିବର୍ତ୍ତନର ଅସଲ ଯନ୍ତ୍ର ହୋଇପାରୁଛି ।

ଭଗବାନଙ୍କୁ ଦୁଃଖମୋଚନ ବୋଲି କହି ଯୁଗ ଯୁଗ ଧରି ରୋଦନ କରୁଥିବା ମଣିଷମାନେ ଭଗବାନଙ୍କର ଯୋଗ୍ୟ ହୋଇ ପାରିବେ ନାହିଁ । ସେମାନେ ଆଦୌ କୌଣସି ପରିବର୍ତ୍ତନର ଯୋଗ୍ୟ ହୋଇ ପାରିବେ ନାହିଁ । ପୃଥିବୀର ଭାଗ୍ୟକୁ ସେମାନେ ସିଆଣିଆ ମଣିଷଙ୍କର ମର୍ଜି ଉପରେ ହିଁ ଛାଡ଼ି ଦେଇଥିବେ ।

୪/୮/୯୦

# ବିଚରା ଜିଲ୍ଲାପାଳମାନେ

ଗୋଟିଏ ଦେଶ କହିଲେ ଯେଉଁଠି ଏକ ବଡ଼ବପୁ ଓ ବହୁଓଜନ ଶାସନକଳକୁ ବୁଝାଏ, ରାଜ୍ୟ କହିଲେ ଯେଉଁଠି ରାଜାମାନଙ୍କର ଭଡ଼ା ପ୍ରେମଗୁଡ଼ାକୁ ବୁଝାଏ, ଜିଲ୍ଲା କହିଲେ ସେଠି ଅବଶ୍ୟ ଜିଲ୍ଲାପାଳମାନଙ୍କୁ ବୁଝାଇବ । ଜିଲ୍ଲାର ସର୍ବାଙ୍ଗୀନ ଶାସନ ନିମନ୍ତେ ମହାମାନ୍ୟ ସରକାର ଏହିମାନଙ୍କୁ ପାଳିଛନ୍ତି । ଜିଲ୍ଲାର ଶାସନ ହିଁ ଜିଲ୍ଲାର ସର୍ବାଙ୍ଗୀନ ଉନ୍ନୟନକୁ ବୁଝାଉଥାଏ । ଶାସକ ଧଳାହାତୀଟିଏ ନହେଲେ ପ୍ରଜାମାନେ ହୁଏତ ସେମାନଙ୍କୁ ଆଦୌ ଭୟ କରିବେ ନାହିଁ ଓ କାଳେ ସେମାନଙ୍କୁ ପ୍ରଜାଭାଗ୍ୟର ଭୃତ୍ୟ ବା ପରିକର ବୋଲି ଭାବିବେ, ସେଥିଲାଗି ନବ୍ୟ ସାମନ୍ତବାଦର ନୀତିଶାସ୍ତ୍ର ଅନୁସାରେ ସର୍ବୋଚ୍ଚମାନଙ୍କ ଲାଗି ବିଭିନ୍ନ ସ୍ତରରେ ଅନୁରୂପ ଛଇ ଓ ଛଟକମାନ ଖଞ୍ଜି ଦିଆଯାଇଥାଏ । ଏହିସବୁ ବ୍ୟବସ୍ଥାରେ ଶାସକମାନଙ୍କର ମୋଟେଇରୁ ହିଁ ପ୍ରଜାସୁଖର ଅନୁକଳନ କରାଯାଉଥାଏ । ପ୍ରଜାମାନେ ଆଁ କରି ଅନାଇଥାନ୍ତି ।

ଏହି ଜିଲ୍ଲାପାଳମାନଙ୍କର ଋତୁ ଅନୁସାରେ ସମ୍ମିଳନୀ ହୁଏ । ସମସ୍ତେ ରଥରେ ବସି ହସ୍ତିନାପୁର ଆସନ୍ତି । ପଦର କଦର ଅନୁସାରେ ଯାତାୟତ ଓ ଭୋଜନବିହାର ଖଞ୍ଜି ଦିଆଯାଇଥାଏ । ଖୋଦ୍ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଉଦ୍‌ବୋଧନ ଦିଅନ୍ତି । ସେମାନଙ୍କୁ ପ୍ରେରଣା ଯୋଗାଇ ଦେଲାଭଳି ବହୁକଥା କହନ୍ତି । ପ୍ରେରଣା ନେଇ ପାଳମାନେ ସେମାନଙ୍କ ଜଙ୍ଗଲକୁ ବାହୁଡ଼ି ଯାଆନ୍ତି । ଏବେ ସେହିଭଳି ଏକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଏହି ଧଳାହାତୀମାନଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ, ସବୁଥର ପରି ଏଥର ମଧ୍ୟ ତାହା

ଏଡ଼େ ଏଡ଼େ ଅକ୍ଷରରେ ଖବରକାଗଜରେ ବାହାରିଥିଲା । ଖବରକାଗଜର କଥା ଅନୁସାରେ, ଗ୍ରାମାଞ୍ଚଳର ଦରିଦ୍ର ଜନସାଧାରଣଙ୍କର ବିଭିନ୍ନ ସମସ୍ୟା ଓ ଦୁଃଖଦୁର୍ଦ୍ଦଶା ସହିତ ନିଜକୁ ସାମିଲ କରି ସେଗୁଡ଼ିକର ସମାଧାନ-ସୂତ୍ର ବାହାର କରିବାକୁ ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳମାନଙ୍କୁ ଆହ୍ୱାନ ଦେଇଥିଲେ ।

ସେହି ଖବରକାଗଜରେ ତା' ତଳକୁ ବାହାରିଛି ଯେ, ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଅର୍ଥକୁ ବାଟମାରଣା କରୁଥିବା ରାଜନୀତିକ ଦଲାଲ, କଳାବଜାରୀ, ଅତ୍ୟାବଶ୍ୟକ ସାମଗ୍ରୀର ମହଜୁଦକାରୀ ତଥା ସେମାନଙ୍କ ସହିତ ସଲାସୂତରାରେ ରହିଥିବା ସରକାରୀ ଅଫିସରମାନଙ୍କୁ ଚିହ୍ନଟ କରି ଦୃଢ଼ ପଦକ୍ଷେପ ନେବାକୁ ମଧ୍ୟ ମହାପାଳ ମୁଖ୍ୟମନ୍ତ୍ରୀ ମହୋଦୟ ଜିଲ୍ଲାସ୍ଥ କ୍ଷେତ୍ରପାଳମାନଙ୍କୁ ପରାମର୍ଶ ଦେଇଥିଲେ । ସବାଶେଷରେ, ସେମାନେ ନିଜକୁ ପ୍ରଭୁ ବୋଲି ନବିଚାରି ସେବକର ମନୋଭାବ ଗ୍ରହଣ କରନ୍ତୁ ବୋଲି ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଉପଦେଶ ପ୍ରଦାନ କରିଥିଲେ ।

ଏହି ଯାବତୀୟ କଥା ମୁଖ୍ୟମନ୍ତ୍ରୀ ଭାରି ଭାବପ୍ରବଣ ହୋଇ କହିଥିବେ । ଅତି ଭାବପ୍ରବଣ ହେବା ସମୟରେ ହୁଏତ ହୃଦୟ ଭିତରଟାକୁ କିଏ ବିଦାରି ଦେଉଥିବା ପରି ମନେହୁଏ ସତ, ମାତ୍ର ତେଣେ ମଣିଷର ମାମୁଲି ଅନେକ ଆଖି ମଧ୍ୟ ପ୍ରାୟ ଗୋଟାସୁଦ୍ଧା ବୁଜି ହୋଇଯାଏ । ଭାରତୀୟ ରାଜନୀତି ଓ ଶାସନନୀତିରେ ଏଭଳି ଭାବପ୍ରବଣତା ଓ ଏଭଳି ଆଖିବୁଜା ଆଦୌ ବିରଳ ନୁହେଁ । ଯିଏ ରାଜନୀତିରେ ନେତା ହୋଇଛି, ଭାବପ୍ରବଣ ହୋଇ ସାତଟା ଜଗନ୍ନାଥିଆ କଥା କହିବା ଆଗରୁ ସମ୍ଭବତଃ ତା'ରି ଚାରିପାଖର ଚଳନ୍ତି ରାଜନୀତିକୁ ସାଧାରଣ ବୁଦ୍ଧିସମ୍ପନ୍ନ ଚକ୍ଷୁ ଦେଇ ଦେଖିବାର ତା'ପାଇଁ ଅଧିକ ଆବଶ୍ୟକତା ରହିଛି । ଯିଏ ଶାସନ ଚଳାଉଛି, ଭାବପ୍ରବଣ ହେବା ପୂର୍ବରୁ ଶାସନଟା ସତକୁସତ ଚାଲୁଛି କି ନାହିଁ, ସେକଥା ଦେଖି ପାରିବାଲାଗି ଅଧିକ ଆବଶ୍ୟକତା ରହିଛି ।

ଜନସାଧାରଣଙ୍କ ଦୁଃଖଦୁର୍ଦ୍ଦଶା ସହିତ ମନ୍ତ୍ରୀ ଓ ଲୋକପ୍ରତିନିଧିମାନେ ଯଦି ଆପଣାକୁ ସାମିଲ କରି ପାରିଲେ ନାହିଁ, ଖାଲି ଜିଲ୍ଲାପାଳମାନଙ୍କୁ କାହିଁକି ଏହି ଅକାର୍ଯ୍ୟଟା ଭିତରେ ଯାଇ ପଶିବାକୁ ଓ କଳବଳ ହେବାକୁ ହସ୍ତିନାପୁରର ଖାସ୍ ମହଲରୁ ଉପଦେଶ ଦିଆଯିବ ? ସରପଞ୍ଚଠାରୁ ସବାବଡ଼ ଯାଏ ସମସ୍ତେ ଯଦି ଜନ-ଭାଗ୍ୟକୁ ନେଇ ବାଗୁଡ଼ି ଖେଳିଲେ, ତେବେ ଖାଲି ଜିଲ୍ଲାପାଳମାନେ କାହିଁକି ବୈଷ୍ଣବ ହେବେ ? ସେଦିନ ସେହି ଅଭାବମୟ ଭାବପ୍ରବଣତାଗୁଡ଼ାକୁ ଶୁଣି ହସ୍ତିନାପୁରର କାନୁମାନେ କିଭଳି ପ୍ରତିକ୍ରିୟା ପ୍ରକାଶ କରିଥିବେ କେଜାଣି ? ଅନ୍ତତଃ ଶରବ୍ୟ ଜିଲ୍ଲାପାଳମାନେ ଯାହା ପ୍ରତିକ୍ରିୟା ପ୍ରକାଶ କରିଥିବେ, ସେକଥା କାହାକୁ କଦାପି ଅଛପା ହୋଇ ରହିବା ଉଚିତ ନୁହେଁ ।

ସେମାନେ କହିଥିବେ, ରତୁଅନୁସାରେ ଆମେ ଏମିତି କେତେ କେତେ କଥା ତୁମଠାରୁ ଶୁଣିଛୁ । ପଇସା ଦେଇ ଆମକୁ ହସ୍ତିନାପୁରକୁ ଡକାରି ଆଣିଛ ଯେତେବେଳେ, ଆମେ ତୁମ କଥା ଅଲବତ ଶୁଣିବୁ । କିନ୍ତୁ, ଶୁଣା କଥା ଏକାନରେ ପଶି ସେକାନରେ ବାହାରିଯିବ । ଆମ ଜିଲ୍ଲା-ଉଆସର ଜଙ୍ଗଲକୁ ଫେରିଯିବା ପରେ ଆମର ଏଗୁଡ଼ାକ କିଛି ମନେ ରହିବନାହିଁ । ତୁମ କଳଟାକୁ, ତୁମ ବରାଦଗୁଡ଼ାକୁ ଆମେ ଯେପରି ଚିହ୍ନିବୁ, ଜିଲ୍ଲାଟାକୁ ଆମେ ତାହାରି ଅନୁସାରେ ଚଳାଇବୁ । ତଦ୍ଦ୍ୱାରା ତୁମ ଆମ ଉଭୟଙ୍କର ମଙ୍ଗଳ ହେବ । ସ୍ୱାଧୀନତାର ଚାଳିଶିବର୍ଷ ପରେ ଭାବପ୍ରବଣତାମାନଙ୍କର ଅବସର ଗ୍ରହଣ କରିବା ଉଚିତ । ଅନ୍ତତଃ ଶାସକମାନେ ଇସ୍କୁଲ ପିଲାଙ୍କ ପରି ମୋଟେ ଭାବପ୍ରବଣ ହେବା ଉଚିତ ନୁହେଁ । ଉପରେ ଯେଉଁସବୁ ଆଇନ ତିଆରି ହେଉଛି, ନିମ୍ନତମ ସ୍ତର ପର୍ଯ୍ୟନ୍ତ ସେଗୁଡ଼ିକ ଯେ ସତକୁ ସତ ଲାଗୁ ହେଉଛି, ସମସ୍ତଙ୍କ ପାଇଁ ଲାଗୁ ହେଉଛି, ଏତିକି କରିପାରିଲେ ମଧ୍ୟ ଆମ ସରକାରୀ ଖାମିନ୍ଦମାନେ ଆମର କେତେକ'ଣ ଉପକାର କରି ପାରିବେ । ଭଗବାନ କରନ୍ତୁ, ସେମାନେ ସବାଆଗ ଏତିକିର ଯୋଗ୍ୟ ହୁଅନ୍ତୁ ।

୧୧/୮/୯୦

# ଜାପାନରେ ଅଛି, ଆମେରିକାରେ ଅଛି

ସମାଜରେ ଅଧିକ ମଣିଷ ଯେତେବେଳେ ନୀତିରେ ଥାଆନ୍ତି, ସେତେବେଳେ ଦୁର୍ନୀତି କରିବା ଲୋକେ ଲୁଚାଇ କରି ଦୁର୍ନୀତି କରୁଥାନ୍ତି । ଦାଣ୍ଡରେ ଦୁର୍ନୀତି କରିବାକୁ ସେମାନଙ୍କୁ ଲାଜ ମାଡ଼େ, ତେଣୁ ସେମାନେ ଯଥାସମ୍ଭବ ଅନ୍ଧାର ଭିତରେ ରହି ଦୁର୍ନୀତି କରନ୍ତି । ସମ୍ଭବତଃ ସେହି କାରଣରୁ ଏକଦା ଦୁର୍ନୀତିକୁ ଆମ ଭାଷାରେ କଳାବଜାର ବୋଲି କହିବା ଆରମ୍ଭ ହୋଇଥିଲା । କ୍ରମେ କଳାବଜାର ଧଳାବଜାର ହେଲାଣି । ଏବେ ଅଧିକ ମଣିଷ ଯେ ସ୍ୱଭାବପ୍ରଣୋଦିତ ହୋଇ ଦୁର୍ନୀତିକୁ ମନ କଲେଣି, ସମ୍ଭବତଃ ସେକଥା ଆଦୌ ନୁହେଁ । ଏ ଦେଶରେ ଯେଉଁମାନେ ପାଠ ପଢ଼ିଛନ୍ତି, ପଦମାନଙ୍କରେ ଅଛନ୍ତି, ରାଜନୀତିରେ ଅଥବା ସରକାର ଭିତରେ ଅଛନ୍ତି, ଗୋଟିଏ କଥାରେ କହିଲେ ଯେଉଁମାନେ ଆମ ବଜାରଗୁଡ଼ାକୁ ଚଳାଉଛନ୍ତି, ସେହିମାନେ ହିଁ ଦୁର୍ନୀତିକୁ କ୍ରମଶଃ ନୀତି ବୋଲି ଗ୍ରହଣ କରିନେଲେଣି । ବଜାରର କଥାଗୁଡ଼ାକ ହିଁ ଖବରକାଗଜରେ ଅଧିକ ବାହାରୁଛି । ତେଣୁ ବଜାରନୀତିରେ କଥାମାନ କୁହାହେଲାଣି ।

ସେଦିନ ପଣ୍ଡିତସଭାରେ ପାଣ୍ଡିତ୍ୟବଜାରର ପ୍ରବୀଣମାନେ ଦେଶର କଥା ପକାଇଥିଲେ । ଓଡ଼ିଶାର ଅର୍ଥନୈତିକ ଓ ସାମାଜିକ ବିକାଶର କଥା ପଡ଼ିଥିଲା । କଥା

ପଡ୍ତୁ ପଡ୍ତୁ ଦୁର୍ନୀତିର କଥା ପଡ଼ିଲା । ଜଣେ ତରୁଣ ଅଧ୍ୟାପକ କହୁ କହୁ କହି ପକାଇଲେ ଯେ, ଆମ ଦେଶରେ ଦୁର୍ନୀତି ବନ୍ଦ ନହେବା ପର୍ଯ୍ୟନ୍ତ ଦେଶର ଆଦୌ କୌଣସି ବିକାଶ ହୋଇପାରିବ ନାହିଁ । ଆମେ ଦରିଦ୍ର ମଣିଷଙ୍କ ପାଇଁ କୋଟି କୋଟି ଟଙ୍କା ବରାଦ କରୁଥିବା, ମାତ୍ର ତାହା ବାଟରେ ଆଉ କାହାର ପକେଟକୁ ଚାଲି ଯାଉଥିବ । ଅପେକ୍ଷାକୃତ ଅଧିକ ପଣ୍ଡିତମାନଙ୍କର କାନକୁ ଏହି କଥାଟି ଆଦୌ ଭଲ ଲାଗିଲାନାହିଁ ।

ବକ୍ତାଙ୍କର ଭାବପ୍ରବଣତା ହୁଏତ ଏପର୍ଯ୍ୟନ୍ତ ତୁଟିଲା ନାହିଁ ବୋଲି ସେମାନେ ତାଙ୍କୁ ସତେଅବା ଦୟା କରୁଥିବା ପରି ମୁହଁ କରିବାକୁ ଲାଗିଲେ । ଜଣେ ତ ମନ୍ତବ୍ୟ ଦେଇ କହି ପକାଇଲେ ଯେ, ଏସବୁ ବୌଦ୍ଧିକ ଆଲୋଚନାରେ ଦୁର୍ନୀତିର କଥା ଉଠିବା କସ୍ମିନକାଳେ ଉଚିତ ନୁହେଁ । ସମସ୍ତେ ବିସ୍ମିତ ହୋଇ ତାଙ୍କ ମୁହଁକୁ ଅନାଇଥିଲେ ।

ସିଏ ଏଥର ପାଟିରେ ସତେଅବା ଏକ ନିର୍ମଳ ବିବେକର ସହିତ କହିବାରେ ଲାଗିଲେ ଯେ, ଦୁର୍ନୀତି ସମଗ୍ର ପୃଥିବୀରେ ରହିଛି; ଜାପାନରେ ଅଛି, ଆମେରିକାରେ ବି ରହିଛି । ତେଣୁ ଦୁର୍ନୀତି କଥା ପ୍ରସଙ୍ଗକୁ ଆସିବା ମୋଟେ ଉଚିତ ନୁହେଁ । ଚଲାଖ ମଣିଷ ସବୁ କଥାକୁ ଆଗ ଅଙ୍ଗେ ନିଭାଇଥାନ୍ତି, ତା'ପରେ ଯାଇ ପାଟିଖୋଲି କିଛି କହନ୍ତି । ଚାଲାଖ ମଣିଷ ଯେତିକି କହିବାର କଥା ସେତିକି କହନ୍ତି, ପଦୁଟିଏ ଅଧିକ କହନ୍ତି ନାହିଁ । ତେଣୁ, ଶ୍ରୋତାମାନଙ୍କୁ ବ୍ୟଞ୍ଜନାଗୁଡ଼ିକୁ ଆପେ ଆପେ ବୁଝିବାକୁ ହୋଇଥାଏ । ଦୁର୍ନୀତି ଜାପାନରେ ଅଛି, ଆମେରିକାରେ ଅଛି । ତେଣୁ ଭାରତବର୍ଷରେ ଅବଶ୍ୟ ରହିବ ବୋଲି ବକ୍ତା ମହୋଦୟ ଖୋଲିକରି ମୋଟେ କହିଲେ ନାହିଁ । ଦୁର୍ନୀତି ଚାଲିଥିବ, ଦିନ ଦିପହରରେ ମଧ୍ୟ ଚାଲିଥିବ, ତଥାପି ଟଙ୍କା ଖର୍ଚ୍ଚ ହେବ ଏବଂ ଦରିଦ୍ରଙ୍କର ବିକାଶ ଲାଗି କୋଟି କୋଟି ଟଙ୍କାର ବରାଦ ହେଉଥିବ, – ଏହି କଥାଟିକୁ ସିଏ ମୋଟେ କହିଲେ ନାହିଁ । ମର୍ମାର୍ଥଟିକୁ ବୁଝିବାଲାଗି ସେ ସୁଧୀମାନଙ୍କ ଉପରେ ପୂରା ଛାଡ଼ିଦେଇ ଥିଲେ । ସେତିକିବେଳେ ଚାହାବେଳ ଆସି ପହଞ୍ଚିଗଲା ।

ଚାଳିଶି ବର୍ଷର ମିଛ ସ୍ୱାଧୀନତା ଫଳରେ ଭାରତବର୍ଷରେ ଉଚ୍ଚ ଓ ଅତ୍ୟୁଚ୍ଚମାନଙ୍କର ଦମ୍ଭ କେତେ ପ୍ରଖର ମାତ୍ରାରେ ଯେ ବଢ଼ିଯାଇଛି, ଏଥିରୁ ହୁଏତ ତାହାରି କିଞ୍ଚିତ୍ ସୂଚନା ମିଳିବ । ପଣ୍ଡିତମାନେ ଖଣ୍ଡମାନଙ୍କ ସହିତ ସାଲିଶ କରି କୋଉଯାଏ ଗଲେଣି, ସେ କଥାଟିର ମଧ୍ୟ ସୂଚନା ମିଳିବ । ପଣ୍ଡିତ କ'ଣ ତୁଚ୍ଛାଟାରେ ଖଣ୍ଡ ସହିତ ସାଲିଶ୍ କରେ ? ପାଣ୍ଡିତ୍ୟରୁ ଆଖିଦୃଶିଆ ହୋଇ କିଛି ମିଳୁନାହିଁ ଓ ତେଣୁ ଦରବାରର ଖଣ୍ଡମାନଙ୍କ ସହିତ ସାଲିଶ୍ କଲେ ଯାଇ ଜୀବନରେ ଭୋଗିଲାଭଳି କିଛି ଭୋଗ କରାଯାଇ ପାରିବ ବୋଲି ପଣ୍ଡିତ ଭିତରେ ରହିଥିବା ଲୋଭୀ ଦୋସରଟା ଯେତେବେଳେ ଭିତରୁ ଖୋଞ୍ଚିବାକୁ ଆରମ୍ଭ କରେ ଓ ସେହି ଖୋଞ୍ଚାଟା ଯେତେବେଳେ ସତେଅବା କୋଉ ବିଟ ଭଗବାନଙ୍କର

କାମସ୍ପର୍ଶ ଲାଭ କରି ସୁଲୁସୁଲୁ ଲାଗେ, ସେତିକିବେଳେ ପଣ୍ଡିତ ସାଲିଶ କରିପକାଏ । କୋଉ ପଲଙ୍କରେ ଯାଇ ଶୋଇବାର ଲୋଭରେ ସିଏ ନିଜର ଓ ସମଗ୍ର ଜଗତର ସ୍ଥାୟୀ ଭୂମିଗୁଡ଼ାକୁ ବି ନିନ୍ଦାକରି ବାହାରେ ।

ସବୁ ମଣିଷଙ୍କୁ କାମ ଦିଅ, ସବୁ ମଣିଷଙ୍କୁ ନିଜର ଘର ଯୋଗାଇ ଦିଅ, ସବୁପିଲା ସ୍କୁଲରେ ଅଳବତ ପାଠ ପଢ଼ିବାକୁ ଆସନ୍ତୁ; ସବୁ ମଣିଷଙ୍କର ଆଖି ଖୋଲିବା ଲାଗି ସର୍ବନିମ୍ନ ଯାହା ସବାଆଗ ଦରକାର, ଭାରତବର୍ଷରେ ତାହା ସତକୁ ସତ ସମ୍ଭବ ହେଉ – ତା'ପରେ ତୁମେ ଦୁର୍ନୀତି କର, ପଲଙ୍କରେ ଶୁଅ, – ଆମେ ତୁମ କଥାର ଆଦୌ କୌଣସି ପ୍ରତିବାଦ କରିବୁ ନାହିଁ । ଏତେ ମଣିଷଙ୍କୁ ଲଙ୍ଗଳା ରଖି ତୁମେ ଏକୁଟିଆ ଲୁଗା ପିନ୍ଧିବ, ଏତେ ମଣିଷଙ୍କୁ ବୋକା ବନେଇ ତୁମେ ଏଠି ଇଂରାଜୀ ଭାଷାରେ ଅବାକ୍ୟମାନ ଉଚ୍ଚାରଣ କରୁଥିବ ଓ ଦୁର୍ନୀତି ଭୁବନଯାକ ଚାଲିଛି ବୋଲି ଫୁଲେଇ ହୋଇ କହୁଥିବ, ଏକଥା କଦାପି ହେବନାହିଁ । ଜାପାନରେ, ଆମେରିକାରେ, ତୁମ କଳ୍ପନାର ସବୁ ସ୍ୱର୍ଗରେ ପ୍ରତ୍ୟେକ ମଣିଷ ଲାଗି ସେହି ସର୍ବନିମ୍ନର ଯୋଗାଡ଼ ହୋଇସାରିଛି । ଖଣ୍ଡମାନଙ୍କୁ ସେଥିଲାଗି କେତେ ପଦାରେ ପକାଇବାକୁ ହୋଇଛି, ଧଡ଼ିବାଜମାନଙ୍କର ଗାଲରେ କେତେଥର ଚୂନକଳା ବୋଲି ସେମାନଙ୍କୁ ରାସ୍ତାରେ ବାହାର କରିବାକୁ ହୋଇଛି, ତେବେ ଯାଇ ସେମାନେ ସାଧୁ ହୋଇଛନ୍ତି । ଭାରତବର୍ଷରେ ମଧ୍ୟ ସେମାନେ ଅବଶ୍ୟ ସାଧ୍ୟ ହେବେ । ପଣ୍ଡିତମାନେ ବେଦୀରେ ବସି ସେମାନଙ୍କର ପକ୍ଷ ନେଇ ଶ୍ଳୋକ ବୋଲୁଥିଲେ ମଧ୍ୟ ସେମାନେ ସାଧୁ ହେବେ । ଆବଶ୍ୟକ ହେଲେ ପଣ୍ଡିତମାନଙ୍କ ସମେତ ସାଧୁ ହେବେ । ପଣ୍ଡିତ ଆଗ ମଣିଷ ହେଲେ ଯାଇ ହୁଏତ ସେହି ପ୍ରମାଦରୁ ରକ୍ଷା ପାଇପାରିବ ।

୧୮/୮/୯୦

# ସିଧା ତାଙ୍କରି ମୁହଁରୁ

ସିଏ ଆମ ଆଡ଼ର କୌଣସି ଏକ ହାଇସ୍କୁଲର ପ୍ରଧାନ ଶିକ୍ଷକ । ସେଦିନ ବଡ଼ି ସକାଳୁ ବସ୍‌ରେ କଟକରୁ ଗାଆଁକୁ ଯାଉଥିଲେ । ଦୈବାତ୍ ମୁଁ ମଧ୍ୟ ସେହି ବସ୍‌ରେ ଉଠିଲି । ସିଏ ମୋତେ ଦେଖି ଦୂରରୁ ଡାକିଲେ । ତାଙ୍କ ପାଖରେ ଜାଗା ଖାଲି ଥିଲା । ମୁଁ ଯାଇ ତାଙ୍କରି ପାଖରେ ବସିଲି । ଆମେ ଦୁଃଖସୁଖ ହେଲୁ ।

ସିଏ କଟକରୁ ସିଦ୍ଧିଲାଭ କରି ଫେରୁଥାନ୍ତି । ଏହି ସିଦ୍ଧିଲାଭ ନିମନ୍ତେ ଏକ ହାଇସ୍କୁଲର ପ୍ରଧାନ ଶିକ୍ଷକ ହିସାବରେ ତାଙ୍କୁ ପ୍ରାୟ ସାତ ଆଠଥର କଟକଯାଏ ଦଉଡ଼ିବାକୁ ପଡ଼ିଛି, ବନ୍ଧୁ କଥା ମଧ୍ୟରେ ସିଏ ପ୍ରସଙ୍ଗକ୍ରମେ ସେହି ପ୍ରସଙ୍ଗକୁ ଆସିଗଲେ । ମୁଁ ଉତ୍କଣ୍ଠାର

ସହିତ ଶୁଣୁଥାଏ ଓ ଜଣେ ଶିକ୍ଷକଙ୍କର ବିବେକକୁ ଛିନ୍ନଭିନ୍ନ କରି ଦେଇଥିବା କ୍ଷତଗୁଡ଼ାକୁ ତାଙ୍କରି ମୁହଁ ଉପରୁ ଲକ୍ଷ୍ୟ କରି ଦେଖୁଥାଏ । ମୁହଁଯାକ କ୍ଷତରେ ଖଣ୍ଡିଆ ଖାବରା ହୋଇ ରହିଥିଲେ ମଧ୍ୟ ସେ ତଥାପି ଯେ ସର୍ବଶେଷର କାର୍ଯ୍ୟ ହାସଲ କରିପାରିଛନ୍ତି, ସେଥିଲାଗି ଏକ ସନ୍ତୋଷିଆ ଭାବ ମଧ୍ୟ ତାଙ୍କ କଥାରୁ ଠଉରାଇ ନେଇ ପାରୁଥାଏ ।

ଦେଶର ସରକାର ବିଜ୍ଞାନର ପ୍ରସାର ପାଇଁ କେତେ କାମ କରୁଛନ୍ତି । ପାଠ ପଢୁଥିବା ପିଲାଙ୍କ ଭିତରେ ଯେପରି ସ୍କୁଲସ୍ତରରୁ ହିଁ ବିଜ୍ଞାନ ପ୍ରତି ଆଗ୍ରହ ସୃଷ୍ଟି ହେବ, ସେଥିଲାଗି ହିତୈଷୀମାନେ ଦିଲ୍ଲୀରେ ବସି ଯୋଜନା କରୁଛନ୍ତି ଓ ସେମାନଙ୍କର ପରାମର୍ଶ ଅନୁସାରେ ସରକାର ମୁଠାମୁଠା ଟଙ୍କା ଖର୍ଚ୍ଚ କରୁଛନ୍ତି । ଖାଲି ସହରରେ ଥିବା ସ୍କୁଲମାନଙ୍କ ପାଇଁ ନୁହେଁ, ଗ୍ରାମାଞ୍ଚଳର ହାଇସ୍କୁଲ ଗୁଡ଼ିକର କଥାକୁ ମଧ୍ୟ ଅତ୍ୟନ୍ତ ଗମ୍ଭୀର ଭାବରେ ଚିନ୍ତା କରାଗଲାଣି । ଗାଆଁରେ ଥିବା ହାଇସ୍କୁଲ ମାନଙ୍କରେ ବିଜ୍ଞାନବହିରୁ ହିଁ ବିଜ୍ଞାନ ପଢ଼ାଯାଏ । ଇସ୍କୁଲରେ କୌଣସି ପ୍ରୟୋଗଶାଳା ନଥାଏ । ବିଜ୍ଞାନ ପଢ଼ାଉଥିବା ଶିକ୍ଷକ ହାତରେ ପଢ଼ାବହି ଖଣ୍ଡିକ ଧରି ବିଜ୍ଞାନ ଗାଇଯାଆନ୍ତି । ବିଜ୍ଞାନ ଶିକ୍ଷା କହିଲେ ଗ୍ରାମାଞ୍ଚଳର ଅଧିକାଂଶ ପିଲାଙ୍କ ପାଇଁ କେବଳ ସେତିକି ବୁଝାଏ ।

ଏହି ଅସୁବିଧାଟିକୁ ହୃଦୟଙ୍ଗମ କରି କେନ୍ଦ୍ର ସରକାର ନିଜ ତରଫରୁ ଗ୍ରାମାଞ୍ଚଳର ହାଇସ୍କୁଲମାନଙ୍କୁ କିଛି ପ୍ରୟୋଗ - ସରଞ୍ଜାମ ଯୋଗାଇ ଦେବାକୁ ସ୍ଥିର କଲେ । ସବୁ ହାଇସ୍କୁଲକୁ ତ ଯୋଗାଇ ଦିଆଯିବା ଆର୍ଥିକ ଦୃଷ୍ଟିରୁ ସମ୍ଭବ ହୁଅନ୍ତା ନାହିଁ, ତେଣୁ ମାତ୍ର କେତୋଟି ସ୍କୁଲକୁ ଏଥିଲାଗି ସ୍ଥିର କରାଗଲା । କେନ୍ଦ୍ର ସରକାର ଦେଲେ, ରାଜ୍ୟ ସରକାର ତାହାକୁ ନିର୍ଦ୍ଧାରିତ ସ୍କୁଲମାନଙ୍କୁ କେବଳ ବାଣ୍ଟିଦେବା କଥା । ସରକାରଙ୍କ ସବୁ ମହକୁମା ପରି ଶିକ୍ଷା ମହକୁମା କହିଲେ ମଧ୍ୟ ତିନିଟା ବା ଛଅଟା ସେଣାକୁ ବୁଝାଏ । ତେଣୁ ତଳୁ ପାଣି ଉଠିଲା ବେଳକୁ ଯେତିକି କଷ୍ଟ, ଉପରୁ ପାଣି ତଳକୁ ଆସିବା ପାଇଁ ମଧ୍ୟ ସେତିକି କଷ୍ଟ । ସେଦିନ ବସ୍‌ରେ ଯେଉଁ ପ୍ରଧାନ ଶିକ୍ଷକଙ୍କ ସହିତ ସାକ୍ଷାତ ହେଲା, ତାଙ୍କ ସ୍କୁଲ ମଧ୍ୟ ବିଜ୍ଞାନର ଏହି ସରଞ୍ଜାମ ଗୁଡ଼ିକୁ ପାଇବାର ତାଲିକା ଭିତରେ ଅନ୍ତର୍ଭୁକ୍ତ ହୋଇଥିଲା । ସବୁ ଲେଖା-ପଢ଼ା ସିଆଡୁ ହୋଇସାରିଛି, ତୁମେ ଖାଲି ଯିବ ଏବଂ ଜିନିଷଗୁଡ଼ିକ ଆଣିବ । ଖଣ୍ଡେ କାଗଜରେ 'ପାଇଲି' ବୋଲି ଲେଖିଦେଇ ଆସିବ ।

ମଝିରେ ଅଫିସ୍‌ମାନ ରହିଛି । ସେଠି ଭଲ ଲୋକମାନେ ଅଛନ୍ତି । ସରକାରଙ୍କର ଚାକିରିଆ ହୋଇଥିଲେ ମଧ୍ୟ ସେମାନଙ୍କର ବି ତ ଲୋଭ ଅଛି ! ତେଣୁ ସେମାନେ ଖୁସି ନ ହୋଇ ପାରିବା ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ତାଙ୍କ ସ୍କୁଲପାଇଁ ଉଦ୍ଦିଷ୍ଟ ସରଞ୍ଜାମଗୁଡ଼ିକୁ ପାଉଛନ୍ତି କେତେବେ ? ତେଣୁ ସିଏ ଆଜି ଦଉଡ଼ିଲେ, କାଲି ଦଉଡ଼ିଲେ, ଆଜିକାଲି

ହୋଇ ହୁଏତ ସାତଥର ଦଉଡ଼ିଲେ । ତେଣୁ ତାଙ୍କୁ ମୁହଁ ଖୋଲି କହିବାକୁ ପଡ଼ିଲା । ଭଲ ଲୋକମାନେ କହିଲେ ଯେ, ବିଜ୍ଞାନର ଏହି ସରଞ୍ଜାମଗୁଡ଼ିକ ଯେତେବେଳେ ମଝିରେ ଥିବା କ୍ଷୁଦ୍ର ମହକୁମାଟି ଦେଇ ଯିବାକୁ ଆସିଛି, ସେତେବେଳେ ସେମାନଙ୍କର ବି ତ କିଛି ନା କିଛି ଆଶା ରହିବ ! ସେହି ଆଶାକୁ ଉପେକ୍ଷା କଲେ ଚଳିବ କେମିତି, ଜିନିଷଗୁଡ଼ାକୁ ମଧ୍ୟ ଦେଇହେବ କେମିତି ?

ଏକଥା ଶୁଣି ପ୍ରଧାନ ଶିକ୍ଷକ ଟିକିଏ ହତାଶ ହେଲେ, କିନ୍ତୁ ଅବାକ୍ ହେଲେ ନାହିଁ । ପ୍ରଧାନଶିକ୍ଷକ ମାତ୍ରେ ଯାହା ଜାଣନ୍ତି ଓ ଯାହା କରନ୍ତି, ସିଏ ସେହି କଥାଟିକୁ ଭଲ କରି ଜାଣିଥିଲେ । ଚାକିରିରେ ଘୁଷୁରି ଘୁଷୁରି ତାଙ୍କର ବାଳ ପାଚିଲାଣି । ସରକାରକୁ ଚଳାଉଥିବା ମଝିମଝିଆ ମାନଙ୍କର କାମନାଗୁଡ଼ିକୁ ସେ ନ ଜାଣିଥାନ୍ତେ କିପରି ? ତେଣୁ, ଉପରୁ ଆସିଥିବା ସାହାଯ୍ୟ ସାମଗ୍ରୀକୁ ଇସ୍କୁଲ ଯାଏ ନେଇପାରିବା ପାଇଁ ମଧ୍ୟ ଡ଼ାବୁ ଲାଗିବ । ତାଳଗଛର ଉପରେ ବସିଥିବା ହନୁମାନେ ଯଦି କଳାପଟା ଅଭିଯାନରେ ବହି ବାଛୁ ବାଛୁ ସିସ୍ଲୁ ନେଉଛନ୍ତି, ତାଳଗଛ ମୂଳରେ ଏସବୁ ସାନ ଗାତଗୁଡ଼ିକର ଏହି ହୀନିମାନିଆ ବେଙ୍ଗମାନେ ମଧ୍ୟ କାହିଁକି ତାହା ଆଶା ନ କରିବେ ? ଇସ୍କୁଲ ପରିଚାଳନା କମିଟିକୁ ରାଜି କରାଇ ସିଏ ପାଞ୍ଚଶହ ଟଙ୍କା ନେଇ ଠାକୁରମାନଙ୍କ ଅଫିସ୍‌ରେ ଦେଇ ଆସିବାକୁ ଯାଇଥିଲେ । ଏଥରକ କୁଆଡେ ସବୁ ଠିକ୍ ହୋଇଯିବ ।

ତୁମକୁ ଧନ୍ୟ କହିବା ସରକାର । ତୁମକୁ ମଧ୍ୟ ଧନ୍ୟ କହିବା ଆମର ପ୍ରିୟ ଓ ସାମରଥା ନେତାମାନେ । ସେବାଟେ ସେଇ ପୁରୁଣା ନେଣ୍ଟି ହଗୁଥିଲେ ମଧ୍ୟ ଏବାଟେ ତୁମ ମୁହଁରେ ତୁମେ କେଡ଼େ କେଡ଼େ ଆଣ୍ଟରେ କଥା କହିପାରୁଛ । କାଲି ହାଟରେ ସପେଇ ଦେଖାଉଥିଲ, ଆଜି ଏଡ଼େ ବଡ଼ ଚକ୍ର ମୁଣ୍ଡାଇ ମଧ୍ୟ ତାହାହିଁ କରୁଛ । ଦେଶବାସୀ ତୁମପାଇଁ ଗୁହାଳ ଖଣ୍ଡେ ଯୋଗାଇଦେଇ କି ଅପରାଧ କରିଛନ୍ତି କେଜାଣି, ତୁମେ ସେହି ଗୁହାଳଟାକୁ ଗୁହମୂତ କରି ରଖିଚ ! ସେଥିରେ ପୁଣି କେତେ ବାହାଦୁରୀ ନେଉଛ ! ଲାଞ୍ଚଦିଆ ବିଜ୍ଞାନ ସରଞ୍ଜାମରେ ଆମ ଗାଆଁମାନଙ୍କରେ ବିଜ୍ଞାନର କି ଉନ୍ନତି ହେବ, ସେଦିନ ମୁଁ ସେଇକଥା ଭାବୁଥିଲି ।

୮।୯।୯୦

# କାନୁରେ କୋଣାର୍କ

ବହୁବର୍ଷ ତଳେ ଗୋଟିଏ ବଙ୍ଗଳା ଫିଲ୍ମ ଦେଖିଥିଲି । ଧନୀଘରର ଜଣେ ଯୁବକ କୌଳିକ ପ୍ରବୃତ୍ତିରେ ପଡ଼ି ଯାହାକୁ ବାହା ହୋଇଥିଲେ, ସେହି ବାଳିକାଟିର

ବୈବାହିକ ଜୀବନ ସମ୍ବନ୍ଧରେ କୌଣସି ହେତୁ ହୋଇ ନଥିଲା । ଝିଅଟି ଶାଶୁଘରକୁ ଆସିବା ପରେ ମଧ୍ୟ ଅବିବାହିତା ସାନଝିଅଟି ପରି ଖେଳି ବୁଲୁଥିଲା, ଘରେ ବୋହୂ ହୋଇ ଶିଖି ନଥିଲା, କିମ୍ବା ରାତିରେ ସ୍ୱାମୀ ପାଖରେ ବନିତା ହୋଇ ଶିଖି ନ ଥିଲା । ସ୍ୱାମୀ ତାଙ୍କ ଗପ ପକାଇଲା ବେଳକୁ ସେ ଦିନଯାକ ଖେଳିଥିବା ଖେଳର ଗପ ପକାଉଥିଲା । ତା' ଦେହକୁ ତଥାପି ଶୃଙ୍ଗାର ଘାରି ନଥିଲା । ବିଚରା ସ୍ୱାମୀ ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଲେ ଓ ପ୍ରତିବିଧାନ ପାଞ୍ଚିବାକୁ ଲାଗିଲେ । କେତେ ଉପାୟ କଲେ, କୌଣସିଟି ଫଳ ଦେଲାନାହିଁ । କାହାକୁ କୁତୁକୁତୁ ଲାଗିଲେ ସିନା ତାକୁ କୁତୁକୁତୁ କଲେ କିଛି ଫଳ ଫଳିବ ! ସାତ ଆଠବର୍ଷର ଝିଅକୁ ନୃତ୍ୟଗୁରୁ ଲଗାଇ ଓଡ଼ିଶୀ ଶିଖାଇଲେ ଯେପରି ତଥାପି ଶୃଙ୍ଗାରର ଉଦ୍ରେକ ହୁଏନାହିଁ ଓ ବିଚରା ଝିଅଟିକୁ ବୋଲ ମାନି ଆକଟକୁ ଡ଼ରି ଶୃଙ୍ଗାରର ଭଙ୍ଗୀଗୁଡ଼ାକୁ ଆୟତ୍ତ କରିନେବାକୁ ହୋଇଥାଏ, ଇଏ ପ୍ରାୟ ସେହିପରି କଥା ।

ବନ୍ଧୁମାନଙ୍କର ପରାମର୍ଶରେ ସ୍ୱାମୀ ପତ୍ନୀକୁ ଓଡ଼ିଶା ବୁଲାଇନେଲେ । ସେମାନେ ଓଡ଼ିଶାରେ କୋଣାର୍କରେ ଆସି ପହଞ୍ଚିଲେ । କୋଣାର୍କର ମୂର୍ତ୍ତିଗୁଡ଼ିକୁ ଦେଖି ଝିଅଟି ଜ୍ଞାନ ପାଇଲା, ସ୍ମରଗଞ୍ଜଣାର ଭାଷା ବୁଝିପାରିଲା; ସ୍ୱାମୀ ତା'ଠାରୁ ଯାହା କେତେ ବ୍ୟଗ୍ରତାର ସହିତ ଆଶା କରୁଛନ୍ତି, ସିଏ ଓଲମୀ ତାଙ୍କୁ ତାହା କେବେ ଦେଇପାରିନାହିଁ ବୋଲି ଉପଲବ୍ଧି ମଧ୍ୟ କଲା । କୋଣାର୍କ ଭ୍ରମଣର ଉଦ୍ଦେଶ୍ୟ ସିଦ୍ଧ ହୋଇଗଲା । ଓଡ଼ିଆ ଜାତିର ଗର୍ବ ଓ ଗୌରବ କୋଣାର୍କ ଅନ୍ୟ ବହୁତ କିଛି ଆବଶ୍ୟକତା ପୂରଣ କରିବା ସହିତ ଏଭଳି ଏକ ବିଶେଷ ଆବଶ୍ୟକତାକୁ ମଧ୍ୟ ତାହା ପୂରଣ କରିପାରେ, ସେହି ବଙ୍ଗଳା ଚିତ୍ରଟି ସେଦିନ ମୋତେ ସେହି ଶିକ୍ଷା ଦେଇଥିଲା । ଏପରି ଏକ ଆବଶ୍ୟକତା ମେଣ୍ଟାହୋଇ ପାରିବ ବୋଲି ମନରେ ରଖି ସେକାଳେ ଶିଳ୍ପୀମାନେ ମୂର୍ତ୍ତିଗୁଡ଼ିକୁ ଗଢ଼ିଥିଲେ କି ? ଏହିପରି ଏକ ଆବଶ୍ୟକତାକୁ ହୃଦୟଙ୍ଗମ କରି ରାଜା ନରସିଂହ ଦେବ ଶିଳ୍ପୀମାନଙ୍କୁ ଲଗାଇ ମନ୍ଦିରଟିକୁ ତୋଳାଇଥିଲେ କି ? କେଜାଣି ?

ଏବେ ଏହି ବିଶେଷ ଦୁଃଖଟିର ନିବାରଣ ପାଇଁ ବାଳିକାବଧୂକୁ ନେଇ ବଙ୍ଗଳାର କୌଣସି ସ୍ୱାମୀକୁ ପଇସା ଖରଚ କରି ମୋଟେ କୋଣାର୍କ ଯାଏ ଆସିବାକୁ ପଡୁ ନଥିବ । ସିଏ ତ ସେଠି କାନ୍ଥବାଡ଼ରେ ମରା ହୋଇଥିବା ଏଡ଼େ ଏଡ଼େ ରଙ୍ଗୀନ୍ ବିଜ୍ଞାପନରୁ କୋଣାର୍କ ଦେଖିବାକୁ ପାଉଥିବ । କାଗଜ ଉପରେ ଉଜ୍ଜ୍ୱଳ ରଙ୍ଗରେ ଖୁଣହୀନ ସଙ୍କୋଚହୀନ ଭାବରେ ଛପା ହୋଇ କାନ୍ଥଯାକ, ବାଡ଼ଯାକ ମରାଯାଇଥିବା ରୂପଗୁଡ଼ିକ ନିଶ୍ଚୟ ତୁଚ୍ଛା ପଥରଗୁଡ଼ାକ ଅପେକ୍ଷା ପ୍ରତ୍ୟାଶିତ ସାନ୍ନିଧ୍ୟ ଓ ଆକାଂକ୍ଷିତ କୋପନଗୁଡ଼ିକୁ ଅଧିକ ପରିମାଣରେ ଯୋଗାଇ ଦେଇ ପାରୁଥିବେ । ଆମେ ଓଡ଼ିଶାବାସୀଏ ବି କାହିଁକି ଆଉ କୋଣାର୍କ ଯାଏ ଯିବା ?

ସିନେମାଘର ପାଖରେ ଊର୍ଦ୍ଧ୍ୱକୁ ଅନାଇଦେବା ମାତ୍ରକେ ତ ମଞ୍ଜୁଳ ମୂର୍ତ୍ତିଗୁଡ଼ିକ ଆମର ନୟନ ରଞ୍ଜନ କରିବାକୁ ମାଡ଼ି ଆସିବେ । ବିନା ପଇସାରେ, ହୁଏତ ବିନା ଚାହିଦାରେ ଆମର ସବୁଯାକ ଜାନ୍ତବ ଶୋଷର ନିବାକରଣ ହୋଇଯିବ । ଏକଥା କଟକରେ ହୋଇପାରିବ, ଭଦ୍ରକରେ ହୋଇପାରିବ, ଭୁବନେଶ୍ୱରରେ ମଧ୍ୟ ହୋଇପାରିବ । ଏକ ଏକ ଭଦ୍ର ସମାଜର କଟକଣା ଅନୁସାରେ ଏସବୁ ଅପରୂପ ଛବିଳତା କେବଳ ବୟସ୍କମାନଙ୍କ ସକାଶେ ଉଦ୍ଦିଷ୍ଟ ହୋଇ ରହିଥିବ ସତ, ମାତ୍ର ବୟସ ନିର୍ବିଶେଷରେ ସମସ୍ତେ ତଦ୍ଦ୍ୱାରା ଆପ୍ୟାୟିତ ହୋଇପାରିବେ ।

ଆଜିର ଶିଶୁ କାଲି ବୟସ୍କ ହେବ, ଆଜିର ଛୁଆ କାଲି ଗୃହସ୍ଥ ହେବ, ଗୃହକୁ ଗଢ଼ିବ, ଦେଶ ଗଢ଼ିବ, ଭବିଷ୍ୟତକୁ ଗଢ଼ିବ । ତେଣୁ ଜୀବନର ଦୁର୍ଲଭ ମଜାଗୁଡ଼ିକ ବିଷୟରେ ସେମାନଙ୍କ ମଧ୍ୟରେ ଏଇଦିନୁଁ ଅଙ୍କୁରୋଦ୍‌ଗମ କରାଇ ପ୍ରସ୍ତୁତ ଓ ପ୍ରଶିକ୍ଷିତ କରି ରଖିଲେ କ୍ଷତି କ'ଣ ? ସେଇଥିଲାଗି ଆମ ଗୁଣୀ ବେପାରୀମାନେ ସମ୍ପୃକ୍ତ ସମସ୍ତଙ୍କର ଆଶୀର୍ବାଦ ସହିତ ଏହି କାର୍ଯ୍ୟରେ ବ୍ରତୀ ହୋଇଛନ୍ତି । ବାହାରେ, ବିବୃତ୍ତି ମାନଙ୍କରେ ଏଇଟାକୁ ଅସାମାଜିକ ବୋଲି କୁହାଯାଉଛି ସତ, ମାତ୍ର ତଥାପି ଏହା ପୂର୍ଣ୍ଣ ମସ୍ତିରେ ଚାଲିଛି । କାନ୍ଥକୁ ଅନାଇ କୋଣାର୍କର ପ୍ରେରଣା ମିଳିଯାଉଛି ।

କୋଣାର୍କ ମନ୍ଦିର ଓଡ଼ିଶାରେ ତିଆରି ହୋଇଥିଲା । ଶୃଙ୍ଗାର-ସମୁଦ୍ର ଗୀତଗୋବିନ୍ଦ ମଧ୍ୟ ଓଡ଼ିଶାରେ ଲେଖା ହୋଇଥିଲା । ଯୋଉ ଶିଳ୍ପୀ ଅନିନ୍ଦ୍ୟ ସୂର୍ଯ୍ୟନାରାୟଣଙ୍କର ମୂର୍ତ୍ତି ତିଆରି କରିଥିଲା, ସେହି ଶିଳ୍ପୀ ବି କ'ଣ ଶୃଙ୍ଗାରର ଉଦ୍ରେକ କରୁଥିବା ମୂର୍ତ୍ତି ଓ ରୂପଗୁଡ଼ାକୁ ମଧ୍ୟ ତଆରି କରିଥିଲା ? ଦୁଇ ପ୍ରକାରର ମୂର୍ତ୍ତିରେ କ'ଣ ସିଏ ଯଥାଯୋଗ୍ୟ ଲାବଣ୍ୟଟିକୁ ଦେଇ ପାରୁଥିଲା ? ନା, ଦୁଇ ଭଳି ମୂର୍ତ୍ତି ତିଆରି କରିବାକୁ ଦୁଇକାଟର ଶିଳ୍ପୀଙ୍କୁ ବରାଦ କରାଯାଇଥିଲା ? ଯେଉଁ କବି ଗୀତଗୋବିନ୍ଦ ଲେଖିଥିଲେ, ସେଇ କଣ ଦଶାବତାର ସ୍ତୋତ୍ରକୁ ମଧ୍ୟ ଲେଖିଥିଲେ ? ତେବେ ସେ ଦଶାବତାର ମାଳିକା ଭିତରେ କୃଷ୍ଣଙ୍କୁ ଆଦୌ କୌଣସି ସ୍ଥାନ ବି ଦେଲେନାହିଁ କିପରି ? ଏ ଯୁଗରେ କାନ୍ଥବାଡ଼କୁ ଚାହିଁ କୋଣାର୍କର ଶୃଙ୍ଗାରିକତାକୁ ଅନାଇ ଦେଖିଲାବେଳେ ହୁଏତ ଅତୀତର ସେହି ପ୍ରହେଳିକାଗୁଡ଼ାକ ଆମକୁ ଆଦୌ ବ୍ୟସ୍ତ କରବାକୁ ଆସୁନଥିବ । ଏ ଯୁଗରେ ଶୃଙ୍ଗାର କାନ୍ଥବାଡ଼ଯାଏ ଆସିଲାଣି, ଆଗେ ତାହାକୁ ମନ୍ଦିର ମଧ୍ୟରେ ସୀମାବଦ୍ଧ କରି ରଖାଯାଇଥିଲା । ବିଜ୍ଞାପନରେ ଶୃଙ୍ଗାରିକତା ଏବେ ବହୁତ କାମ ଦେଲାଣି, ଆଗେ ତାହା କାବ୍ୟାମୋଦ ଅଥବା ସଭାବିନୋଦର ଉପଜୀବ୍ୟ ହୋଇ ରହିଥିଲା । ଏହାକୁ ଆମେ ସଂସ୍କୃତି କହିବା ନା ବିକୃତି ବୋଲି କହିବା ? ଆମେ ଯାହା, ହୁଏତ ଠିକ୍ ତାହାହିଁ କହିବା ।

୧୫/୯/୯୦.

# ଦେଶଟାଯାକ ତଲାସ କର

ଦେଶରେ ଚୋର ଅଛନ୍ତି, ଚୋର ଧରିବାକୁ ସରକାର ଅଛନ୍ତି । ଜନକଲ୍ୟାଣ କରିବା ନିମନ୍ତେ ସରକାର ରହିଛନ୍ତି । ଯିଏ ଜନକଲ୍ୟାଣ କରି ବାହାରିଥାଏ, ତା'ପାଖରେ ମାଲମତା ବହୁତ ଥାଏ । ଯେକୌଣସି ଦରିଦ୍ର ବା ବିକାଶଶୀଳ ଦେଶରେ ସରକାର ହେଉଛନ୍ତି ସବୁଠାରୁ ବଡ଼ ଲୋକ । ତାଙ୍କରି ନଅରରେ ସବୁଠାରୁ ବଡ଼ ବଡ଼ କୋଠା, ତାଙ୍କର ସବୁ କଥାରେ କୋଟି କୋଟି ହିସାବ । ତାଙ୍କ ଗୁହାଳରେ ଭଳି ଭଳି ହାତୀ । ଏହି ହାତୀମାନେ ସରକାରଙ୍କର ଘରକୁ ଚଳାନ୍ତି । ସବା ଉପରେ ରହିଥିବା ହାତୀମାନେ ଅସ୍ଥାୟୀ; ଏମାନେ ଭୋଟ ପାଇ ଆସନ୍ତି ଏବଂ ଭୋଟ ନ ପାଇଲେ ବାହାରି ଯାହାନ୍ତି । ତାଙ୍କରି ଭିତରୁ ଖାସା ଖାସା ଦେଖି ମନ୍ତ୍ରୀ ହୁଅନ୍ତି, ମାନ୍ୟବର ବୋଲାନ୍ତି । ଅନ୍ୟମାନେ ହେଉଛନ୍ତି ଅଫିସର । ସେମାନେ ବସିଥାନ୍ତି, ଆୟୁଷ ପୂରିଗଲେ ଯାଆନ୍ତି । ଆମ ଦେଶର ଆଇନ୍‌ଗୁଡ଼ାକ ଏପରି ହାଲୁକା ଭାବରେ ତିଆରି ହୋଇଛି ଯେ, ହାତୀମାନଙ୍କ ଭିତରୁ କୋଉ ଦଳ ଆରଦଳଟାକୁ ଚଳାନ୍ତି, ସେକଥା ଆଦୌ ବୁଝି ହୁଏନାହିଁ । ଏପରିକି ବେଳେବେଳେ ସତକୁ ସତ ଆଦୌ କିଛିହେଲେ ଚାଲୁ ନଥାଏ, ତଥାପି ସବୁ ଚାଲୁଛି ବୋଲି କହି ହେଉଥାଏ ।

ହାତୀମାନେ ସମ୍ପତ୍ତିର କାରବାର କରୁ କରୁ କିଛି ସମ୍ପତ୍ତି ସେମାନଙ୍କ ନିଜ ଘରେ ଆସି ପଶିଯାଏ । କିଏ କାହାଠାରୁ ଶିକ୍ଷା କରିଥାଏ କେଜାଣି, ଆମ ଦେଶରେ ଏମାନେ ଉଭୟେ ଧନସମ୍ପତ୍ତିରେ ବାଟ ଚାଲନ୍ତି । କ୍ଷମତା ଅଧିକ ସମ୍ପତ୍ତି ଆଣିଦିଏ, ସମ୍ପତ୍ତି ମଧ୍ୟ ଅଧିକ କ୍ଷମତା ଲାଗି ଭାଜନ କରାଏ । ଏମାନଙ୍କୁ ଦେଶାଚାରର ବ୍ୟାକରଣ ଅନୁସାରେ ଠିକ୍ ଚୋର ବୋଲି କହି ହେବନାହିଁ । ଚୋରମାନେ ରାତିରେ କର୍ମ କରନ୍ତି, ଦିନରେ ମୁହଁ ଲୁଚାଇଥାନ୍ତି । ଚୋର ହାତରେ ସମ୍ପତ୍ତି ଥାଏ ସିନା, କ୍ଷମତା ନଥାଏ ଏବଂ, ସରକାରଙ୍କୁ ଆତଯାତ କରାଉଥିବା ହାତୀମାନଙ୍କୁ ଚୋର ବୋଲି କହିବା ଆଇନ୍-ବିରୁଦ୍ଧ । ଯାହା ହାତରେ ସବୁଯାକ ଦଉଡ଼ି, ତାକୁ ପୁଣି ଦଉଡ଼ି ପକାଇ ବାନ୍ଧିବ କିଏ ? ଆଇନ୍‌ର ଦଉଡ଼ି ମଧ୍ୟ ସେମାନଙ୍କ ଯାଏ ପହଞ୍ଚି ପାରେନାହିଁ । ତଥାପି ଭଗବାନ କୂଟ କରନ୍ତି । ହାତୀମାନଙ୍କର ଘର ବି ତଲାସ ହୁଏ । ଯୋଉ ହାତୀମାନେ କ୍ଷମତାରେ ଥାଆନ୍ତି, ସେମାନେ କ୍ଷମତାରେ ନ ଥିବା ହାତୀମାନଙ୍କ ଘରକୁ ଘେରୋଉ କରି ତଲାସ କରନ୍ତି । ଯୋଉ ପୁରୁଣା ଅଫିସରମାନେ ଆର ସରକାରଙ୍କର ଚାଟ ହୋଇଥିଲେ, ଏ ସରକାର ଆସି ସେମାନଙ୍କ ଉପରେ ଦାଉ ସାଧିବା ପରି ତାଙ୍କ ଘର ତଲାସ କରନ୍ତି । ଗଡ଼ିଆ ଭିତରେ ଅରାକରେ ଜାଲ ପଡ଼ି ଚୋର ଧରାହୁଏ, ଆରପଟେ ନିର୍ମଳ ପାଣିରେ କ୍ଷମତାରେ ରହିଥିବା ମାଛମାନେ

ଖେଳିବାରେ ଲାଗିଥାନ୍ତି । ଖବରକାଗଜରେ ହୁଲୁସ୍ଥୁଲ ପଡ଼ିଯାଏ । ଏ ହାତୀଙ୍କ ଖବରକାଗଜ କହନ୍ତି ଭଲ ହୋଇଛି; ସେପଟମାନେ କହନ୍ତି ଏ ଅନ୍ୟାୟ ହୋଇଗଲା । ଯଦି ତଲାସ କରିବ, ତେବେ ସମସ୍ତଙ୍କ ଘର ତଲାସ କର । ଏଭଳି ପ୍ରତିଶୋଧମୂଳକ ଭାବରେ କିଛି କରନାହିଁ । ବିଚରା ଦରିଦ୍ର ପ୍ରଜାଗଣ କୁଣ୍ଢେ ଆନନ୍ଦରେ ଅଙ୍ଗ କୁଣ୍ଡାଇ ଦେଉଥାନ୍ତି । ଏତେଦିନକେ ସମ୍ଭବତଃ ଧର୍ମ ଆସିଲା ବୋଲି ଆନନ୍ଦରେ ଭ୍ରମ କରୁଥାନ୍ତି ।

ତଲାସ ଦ୍ୱାରା ଯାହାସବୁ ମିଳେ, ସତ୍ୟଯୁଗର ସମୁଦ୍ରମନ୍ଥନରୁ ମଧ୍ୟ ସମ୍ଭବତଃ ତାହା ମିଳି ନଥିବ । କାହାର ପାଞ୍ଚଟା ଘର ତ କାହାର ଛଅଟା; ନିଜ ନାଆଁରେ, ରାଣୀଙ୍କ ନାଆଁରେ, ଜ୍ୱାଇଁମାନଙ୍କ ନାଆଁରେ ଦି'ପୁଞ୍ଜା ସରିକି ବହି । ବହି ଦେଖାଇଲେ ତୁମକୁ ହଜାର ହଜାର ଟଙ୍କା ମିଳିବ । ଏହା ବ୍ୟତୀତ ଜମିବାଡ଼ି, ସୁନାରୂପା ଓ କେତେ କ'ଣ ରତ୍ନଖଚିତ ଆସବାବ ଓ ସରଞ୍ଜାମ ! ବାବୁ ଏସବୁକୁ ତୁମେ କେଉଁଠାରୁ ପାଇଲ ? ତୁମେ ଆମର ସେବା କରୁଥିଲ ନା ଆମ ନାଆଁରେ ସବୁଯାକ ମାଛ ନେଇ ଘରେ ପୂରାଉଥିଲ ? ତୁମ ଘରେ ବାହାଘର ହେଉଥିବାବେଳେ ଚମକ ଦେଖାଉଥିଲ ? କେବଳ ଭାରତବର୍ଷରେ ହିଁ ଏଭଳି ଭାଗ୍ୟ ସମ୍ଭବ ହୁଏ ।

ଯଦି ତଲାସ କରିବ, ତେବେ ଦେଶଟାଯାକ ତଲାସ କର । ତୁମ ପରିଚ୍ଛଦ ତଳେ ରହିଥିବା ବିବେକ ବା ଅବିବେକଟାର ତଲାସ ମଧ୍ୟ ହେଉ । ଗତ ଚାଳିଶି ବର୍ଷ ଭିତରେ ଯେଉଁମାନେ ଆସନରେ ବସି ଓ କ୍ଷମତାକୁ ଆସି ଏ ଦେଶର ଏକମାତ୍ର ବ୍ରାହ୍ମଣରୂପେ ବାନା ଉଡ଼ାଉଛନ୍ତି ଓ ଦେଶର ଯାବତୀୟ ବ୍ୟାପାରକୁ ଶୂଦ୍ରନ୍ୟାୟରେ ଚଳାଉଛନ୍ତି, ସେମାନଙ୍କର ଯାବତୀୟ ଆବରଣ ତଳେ ଘୋଡ଼ାଇ ହୋଇ ରହିଥିବା ଅଲାଜୁକତା ଗୁଡ଼ାକର ତଲାସ ହେଉ । କାହାକୁ ଫାଶୀ ଦିଆ ନ ଯାଉ, ମାତ୍ର ସମସ୍ତଙ୍କର ତଲାସ ହେଉ । ଇସ୍କୁଲରେ ଆଚାର୍ଯ୍ୟମାନଙ୍କର ତଲାସ ନିଆଯାଉ, ନ୍ୟାୟାଳୟରେ ନ୍ୟାୟମୂର୍ତ୍ତି ମାନଙ୍କର ତଲାସ ହେଉ, ନାଲିନେଳି ଆଲୁଅରେ ଆମର ଯାବତୀୟ ପରିମଳକୁ ଗିଳି ପକାଉଥିବା ବେପାରୀମାନଙ୍କର ତଲାସ ହେଉ । ଏହି ତଲାସ ଫଳରେ ଗୋଟାଏ ଯୁଗର କାହାଣୀ ପଦାକୁ ଆସୁ । ଗୋଟାଏ ଯୁଗକୁ ଛେଚରା କରିଦେବା ପଛରେ କୋଉ ଛତରାମାନଙ୍କର କରାମତି ରହିଛି, ସେକଥା ମଧ୍ୟ ପଦାକୁ ଆସୁ । ଏହି ଦେଶକୁ ଭଗବାନ ଚଳାଉଛନ୍ତି ବୋଲି କହି ସଭାରେ ସମିତିରେ ଯୋଉ ରାକ୍ଷସମାନେ ହେଣ୍ଡି ମାରୁଛନ୍ତି, ସେମାନଙ୍କର ମଧ୍ୟ ତଲାସି ନିଆଯାଉ । ତେବେ ଯାଇ ଆଦୌ କୌଣସି ଫଳ ଫଳିପାରିବ ।

ଏହି କାମ କୌଣସି ସରକାର ଦ୍ୱାରା ହେବନାହିଁ । ଭୀରୁମାନେ ଯେଡ଼େ ଉଚ୍ଚଥାନକୁ ଭୋଟ ପାଇ ଗଲେ ବା ଯେତେବଡ଼ ଚକକୁ ମୁଣ୍ଡ ଉପରେ ମୁଣ୍ଡାଇଲେ ମଧ୍ୟ

କଦାପି ଏହି କାର୍ଯ୍ୟ କରିପାରିବେ ନାହିଁ । କାରଣ, ତଦ୍ୱାରା ଏହି ଚକଗୁଡ଼ିକ ଉପରେ ତିଆରି ହୋଇଥିବା ଘରଟି ମଧ୍ୟ ଭୁଷୁଡ଼ି ପଡ଼ିବ । ଚକତଳେ ରହିଥିବା ହାଡଗୁଡ଼ାକ ପଦାକୁ ଦିଶିପଡ଼ିବ । ତେବେ ଅସଲ କାର୍ଯ୍ୟଟି କିଏ କରିପାରିବ ?

୨୭/୯/୯୦

# କ୍ରିୟାଶୀଳ ଲୋକଶକ୍ତି (୨)

ସରକାର କହୁ କହୁ କହିଦେଲେ ଯେ ଏଥର ରାଇଜଯାକ ସର୍ବନିମ୍ନ ମଜୁରୀ ଦିନକୁ ପଚିଶ ଟଙ୍କା ହୋଇଯିବ । ଆଗେ ଆମର ଏଠି ଯେଉଁ ରାଜାମାନେ ଥିଲେ, ସେମାନଙ୍କର ପାଟିରୁ ଯାହା ଅଚାନକ ବାହାରି ଯାଉଥିଲା, ତାହା ଦେଶର ଆଇନ ହୋଇଯାଉଥିଲା । ଫେରିବା ଲାଗି ଆଉ ବାଟ ନଥିଲା । ଅନେକ ସମୟରେ କାଳ ହିଁ ରାଜାମାନଙ୍କ ମୁହଁ ଦେଇ ନିଜ କଥାଟିକୁ କହିଦିଏ । ଏବେ ସରକାରଙ୍କ ମୁହଁ ଦେଇ କାଳ ଯେ ବେଳେବେଳେ ସେହିପରି ନିଜ କଥାଟିକୁ କହି ଦେଉଛି, ସେକଥାକୁ କିଏ ନାହିଁ ବୋଲି କହିପାରିବ ? ଅସମ୍ଭବଗୁଡ଼ାକ ହୁଏତ ଠିକ୍ ଏହିଭଳି ସମ୍ଭବ ହୁଏ ।

ସରକାର ସିନା କହୁ କହୁ କହିଦେଲେ, ମାତ୍ର ସେକଥା ଖବରକାଗଜରେ ବାହାରି ପଡ଼ିଲା । ତାହାରି ବେଉରା ପାଇ ରେଙ୍ଗା ଗାଁରେ ସତକୁ ସତ ଚହଳ ପଡ଼ିଗଲା । ରାତି ପାହିଗଲା ପରି ଲାଗିଲା । ତାଙ୍କରି ଗ୍ରାମରେ ତ ସରକାରଙ୍କର କେତେ କାମ ହେଉଛି । କାଶୀପୁରରୁ ବାବୁମାନେ ଆସି କାମ କରାଉଛନ୍ତି । ପ୍ରଥମେ କେତେ ବର୍ଷ ଫଳଗଛ ଲଗାହେଉଥିଲା । ମାତ୍ର, ବାବୁମାନଙ୍କର ଯୋଜନାରେ କୋଉଠି କି ଭୂତ ପଶିଛି କେଜାଣି, ଗଛ ମୁଥକୁ ମୁଥ ଲଗାହେଲା, ମୁଥକୁ ମୁଥ ମରିଗଲା । ଏସନ ଫଳ ଗଛ ନ ଲାଗି ବେଣା ଘାସ ଲଗାହେଉଛି । ହୁଏତ ବଞ୍ଚିଯିବ । ଗାଆଁଯାକର ତିର୍ଲା ଆଉ ମରଦ ଭେଣ୍ଡିଆ କାମରେ ଲାଗିଛନ୍ତି । ମାତ୍ର ମୂଲ ଜଣପିଛା ପଚିଶି ଟଙ୍କା ଦିଆଯିବ ନାହିଁ, ଏଗାର ଟଙ୍କା ଦିଆଯାଉଛି । ଗ୍ରାମବାସୀ ଯେଉଁଦିନ ଦିନକୁ ପଚିଶ ଟଙ୍କା ମୂଲ କଥା ଶୁଣିଲେ, ସେଦିନ ମୂଲ ଗଣିଦେଇ ଲେଖାଇ ନେଉଥିବା ବାବୁଙ୍କ ପାଖରେ ଆପତ୍ତି କଲେ ।

ବାବୁ କହିଲେ, ଏଗାର ଟଙ୍କାହିଁ ଦିଆଯିବ । ପଚିଶ ଟଙ୍କା ଦିଆଯିବ ବୋଲି ଉପରୁ କୌଣସି କାଗଜ ଆସିନାହିଁ । ଲୋକେ ଫେରି ଆସିଲେ ସିନା, ମାତ୍ର ରାତିରେ ଗାଆଁରେ କୁଟୁମ୍ବ ଡକାଇଲେ । ବାହାରୁ ଆସିଥିବା ଜଣେ କର୍ମୀ ଭାଇ ସେହି ସଭାରେ ବୁଝେଇ କହିଦେଲେ ଯେ, ସରକାରଙ୍କ ଘୋଷଣା ଅନୁସାରେ ଦିନକୁ ପଚିଶଟଙ୍କା ହିଁ

ମଜୁରି ମିଳିବ । ତହିଁ ଆରଦିନ ସକାଳୁ ଗାଆଁର ସ୍ତ୍ରୀ ପୁରୁଷ ପ୍ରାୟ ଦୁଇଶହ ସରିକି ଏକାଠି ହୋଇ ସିଧା କାଶୀପୁରରେ ଥିବା ସରକାରୀ ମହକୁମାରେ ଆସି ପହଞ୍ଚିଗଲେ ଏବଂ ଧାରଣା ଦେଇ ବସିରହିଲେ । ପଚିଶିଟଙ୍କା ମୂଲ ଗଣିନଦେଲେ ସେମାନେ ସେଠାରୁ ଉଠିବେ ନାହିଁ ବୋଲି କହିଲେ । ବାହାରେ ଏହି କାଣ୍ଡ ହେଉଥିବାର ଦେଖି ଅଫିସ୍‌ର ବାବୁମାନେ ଆଉ ପଦାକୁ ବାହାରିଲେ ନାହିଁ ଓ ଘର ଭିତରେ ଲୁଚିଲେ । ତା'ପରେ ଜଣେ ବାହାରକୁ ଆସି ସଫେଇ ଦେଇ କହିଲେ ଯେ, ଯେଉଁ ବାବୁ କାମ କରାଉଥିଲା ଓ ମୂଲ ଦେଉଥିଲା, ସେ ବାବୁ ନାହିଁ । ସିଏ ମଧ୍ୟ ସେଇ ଏଗାରଟଙ୍କା ହିଁ ମୂଲ ବୋଲି ଦୋହରାଇ କହିଦେଲେ ।

ମାତ୍ର କଥାଟି ସେତିକିରେ ମୋଟେ ଛିଣ୍ଡିଲା ନାହିଁ । ଦିନକପରେ ଗାଆଁର ପ୍ରାୟ ତିନିଶହ ଲୋକ କାଶୀପୁର ମହକୁମାକୁ ଆସି ଧାରଣା ଦେଇ ବସିଲେ । ରାତି ଦଶଟା ବାଜିଗଲା, ତଥାପି ଫଇସଲା ହୋଇପାରିଲା ନାହିଁ । ଯେଉଁମାନେ ନିତାନ୍ତ ଅଭାବୀ, ମଜୁରୀ ନେଲେ ଯାଇ ଘରେ ଚୂଲୀ ଜଳିବ, ସେହିପରି କେତେ ଜଣ ଅଗତ୍ୟା ଏଗାରଟଙ୍କା ହିସାବରେ ମୂଲ ନେଲେ ସିନା, ଅନ୍ୟମାନେ ନିଜ ଦାବିରେ ଅଟଳ ରହି ଘରକୁ ଫେରିଗଲେ । ତହିଁ ଆର ଦିନ ଉପରୁ ଆଉ ଜଣେ ବାବୁଙ୍କର ମହକୁମା ପରିଦର୍ଶନରେ ଆସିବାର ଥିଲା । ଗ୍ରାମବାସୀ ପୁନର୍ବାର ଆସିବେ ଓ ତାଙ୍କ ଆଗରେ ଦାବି ଜଣାଇବେ ବୋଲି ମନସ୍ଥ କରି ଘରକୁ ଗଲେ । ସେମାନଙ୍କୁ ସତେଅବା ଅସଲ ସୁରାଖଟି ମିଳିଗଲା ।

ତହିଁ ଆରଦିନ ବଡ଼ବାବୁଙ୍କ ସାମନାରେ ମଧ୍ୟ ସେହି ଦାବି ହେଲା । ପୁଣି ସେତିକି ଲୋକ ଦାବି କରିବାକୁ ଆସିଥିଲେ । ବଡ଼ବାବୁ ବୁଝିଲେ ଏବଂ ମାନିଗଲେ । ସ୍ଥାନୀୟ ଅଫିସରଙ୍କୁ ସେ ପରିବର୍ତ୍ତିତ ପଚିଶିଟଙ୍କା ହିସାବରେ ଲୋକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇ ଦେବାଲାଗି ନିର୍ଦ୍ଦେଶ ଦେଲେ । ଦିନଯାକ ପାଉଣା ଦିଆଯିବାରେ ଗଲା । ଯାହା କେବେ ଘଟିନଥିଲା, ତାହା ପ୍ରକୃତରେ ଘଟିଲା । ସତେଅବା ନୂଆ କରି ସିନ୍ଦୂରା ଫାଟିଲା । ଏମିତି ସିନ୍ଦୂରା ଫାଟିଲା ଯେ ଆଉ କେବେ ରାତିଟା ଭୂତ ହୋଇ ବାବୁ ହୋଇ ମାଡ଼ିବସିବ ବୋଲି ଆଦୌ ମନେ ହେଲାନାହିଁ । ଗାଆଁର ଗୁରୁଭାଇ ତହିଁ ଆରଦିନ ରାୟଗଡ଼ା ଗଲେ, ସେଠାରେ ଶ୍ରମ ଅଫିସରଙ୍କଠାରୁ ଚିଠି ଲେଖାଇ ଆଣିଲେ ଯେ ଗାଆଁରେ ଘାସଲଗା କାମ ଆରମ୍ଭ ହେଲା ଦିନଠାରୁ ଆଗର ବକେୟା ସମେତ ପ୍ରତ୍ୟେକ ବ୍ୟକ୍ତିକୁ ଦିନକୁ ପଚିଶି ଟଙ୍କା ହିସାବରେ ମଜୁରି ଦିଆଯିବ । ଏଥିରେ ହେରଫେର୍ ହେବନାହିଁ । ରେଙ୍ଗା ଗାଆଁର ଲୋକମାନେ ମଧ୍ୟ ହେରଫେର ନହେବା ଲାଗି ପ୍ରହରୀ ପରି କାମ କରିବେ ।

ଆଇନ ସବୁ ଦିଲ୍ଲୀରେ ବା ଭୁବନେଶ୍ୱରରେ ସିନା ହେବ, ମାତ୍ର ସେହି ଆଇନର ସତକୁ ସତ କୌଣସି ମେରୁଦଣ୍ଡ ଅଛିକି ନାହିଁ, ତାହାର ପରୀକ୍ଷା ଭାରତବର୍ଷର ଗାଆଁମାନରେ

ହେବ, ଲୋକଶକ୍ତି ଦ୍ୱାରା ହେବ । ଆଜି ମଧ୍ୟ ଆମ ଦେଶରେ ଏପରି ଅନେକ ଆଇନ୍ ଅଛି, ଅସଲ ଲୋକଶକ୍ତିର ଅଭାବରୁ ଯାହାକି କେବଳ ବାବୁମାନଙ୍କ କାଗଜପତ୍ରରେ ରହିଛି । ଲୋକଙ୍କ ଯାଏ ଯାଇ ପାରୁନାହିଁ । ଲୋକଙ୍କ ପାଖରେ କୁମ୍ଭଶକ୍ତି ନଥିଲେ ସେଗୁଡ଼ିକୁ ସେମାନଙ୍କ ଯାଏ ନେବାର ଅନ୍ୟ ଲୋକ ପୁଣି କେଉଁଠାରୁ ଆସିବେ ?

୬।୧୦।୯୦

# ଜର୍ଦ୍ଦାଜଗତରେ ଅତୁଳନୀୟ ଗୁଞ୍ଜରଣ

ବିଜ୍ଞାପନର ଜଗତ ହେଉଛି ଏକ ଅତୁଳନୀୟ ଜଗତ । ଆମ ପୃଥିବୀରେ ଯୋଉ ଦିନଠାରୁ ବେପାରୀମାନେ ବିଜ୍ଞାନକୁ କାନ ଧରାଇ ବସ୍‌ଉଠ୍ କରାଇଲେଣି, ସେହି ଦିନଠାରୁ ହିଁ ବିଜ୍ଞାପନଗୁଡ଼ାକ ଆମକୁ ଚକଚକ ବାଘ ହୋଇ ମାଡ଼ିବସିଛନ୍ତି । ଏହି ଯୁଗଟା ସତକୁ ସତ ବିଜ୍ଞାନର ଯୁଗ ଅଥବା ବିଜ୍ଞାପନର ଯୁଗ, ବେଳେବେଳେ ସେହି ପ୍ରଶ୍ନଟି ନିଜକୁ ପଚାରିଲେ ସହଜରେ କୌଣସି ଉତ୍ତର ପାଇ ହୁଏନାହିଁ ।

ସାବୁନ୍‌ର ବିଜ୍ଞାପନ, ଭଳିଭଳି ପୋଷାକର ବିଜ୍ଞାପନ । ଯୋଉମାନଙ୍କୁ କେବେହେଲେ ଭୋକ ଲାଗେ ନାହିଁ; ସେମାନଙ୍କ ଭିତରେ ଭୋକର କାମସ୍ପର୍ଶ ଆଣିଦେବା ଲାଗି ଭଳି ଭଳି ମନୋହର ଖାଦ୍ୟସାମଗ୍ରୀର ବିଜ୍ଞାପନ, ନାଣ୍ଡିମାନଙ୍କ ଲଣ୍ଡା ମନଟାର ଡ଼ାଳରେ ନୂତନ ପଲ୍ଲବର ଶିହରଣ ଆଣିଦେବାକୁ ଅମୁକ ତେଲ ବା ଅମୁକ ଫେଣର ବିଜ୍ଞାପନ । ସବା ପଛରେ ସମସ୍ତଙ୍କ ସମକକ୍ଷ ହେବା ଭଳି ପାନ ମସଲା, ଜର୍ଦ୍ଦା ଓ ଅନ୍ୟ ମୁଖରୋଚକଗୁଡ଼ିକର ବିଜ୍ଞାପନ । ଏହା ବ୍ୟତୀତ ତ ସାଇକେଲ, ମୋଟର ସାଇକେଲ, ସିଧା ମହୀରାବଣର ଜମିଦାରୀରୁ ତିଆରି ହୋଇ ଆସିଥିବା ମହାଶକ୍ତି ଟାୟାର ଓ ସେହିପରି ଆହୁରି କେତେ କ'ଣର ବିଜ୍ଞାପନ । ଲୋକମାନଙ୍କ ଆଖି ଲାଖି ରହିଲା ପରି ଓ ସେମାନଙ୍କ ବିବେକର ନୀବିବନ୍ଧଗୁଡ଼ିକୁ ଗୋଟାସୁଦ୍ଧା ଖୋଲି ଦେଲାପରି ମହାପାପଗୁଡ଼ିକ ବିଷୟରେ ଯଦି ବିଜ୍ଞାପନ ପ୍ରଚାର କରୁଥିବାର ଗୁଣବାନ୍‌ମାନେ ଚିନ୍ତା ନକରନ୍ତେ, ତେବେ ଲୋକମାନେ ପ୍ରକୃତ ସତ୍ୟଗୁଡ଼ିକ ବିଷୟରେ ଜାଣନ୍ତେ ଆଉ କିପରି ? ଏହି ବିଜ୍ଞାପନରେ ଭଡ଼ା ନେଇ ସହଯୋଗ କରିବାକୁ ଓ ଦର୍ପଣଟିଏ ହୋଇ ଜନମନକୁ ଉଲ୍ଲସାଇ ଦେବାକୁ ଆମ ଖେଳପଡ଼ିଆ ଓ ସିନେମା ପଡ଼ିଆମାନଙ୍କରେ କେବେହେଲେ ଚିକଣିଆ ହିରୋ ଓ ହିରୋଇନ୍‌ମାନଙ୍କର ଅଭାବ ହୁଏନାହିଁ ।

ଏହି ବିଜ୍ଞାପନଗୁଡ଼ାକର କୁତୁକୁତିଆ ବିମାନ ଉପରେ ବସି ସ୍ୱର୍ଗକୁ ଉଠିଯାଉଥିବା ସମୟରେ ମନେ ହୁଏ, କେବଳ ଫେଶନ୍ ଓ ପ୍ରସାଧନ ବ୍ୟତୀତ ସତେଯେପରି ପୃଥିବୀରେ

ଆଉ ଦ୍ୱିତୀୟ ଧର୍ମ ହିଁ ନାହିଁ । ମଣିଷ-ପେଟର ଭୋକ ଅପେକ୍ଷା ଜୀବନରେ ସତେଯେପରି ଏହି ମଣ୍ଡନ ଓ ପ୍ରସାଧନଗୁଡ଼ାକ ହିଁ ଅନେକ ଅଧିକ ମହତ୍ତ୍ୱପୂର୍ଣ୍ଣ, ଆମ ବେପାରୀମାନେ ଆମକୁ ହୁଏତ ସେହି କଥାଟିକୁ ଆମ ପାଟି ଭିତରେ ହାତ ପୂରାଇ ଦେଖାଇ ଦେବାକୁ ଚାହାନ୍ତି । ପେଟେ ଖାଇ, ଦୁଇପେଟ ସ୍ଥୁଳ ଓ ଧୂର୍ତ୍ତ ହୋଇ ଏବଂ ତିନିପେଟ ଗଭା ବାନ୍ଧି ଯଦି ତୁମେ ସଂସାରରେ ସମସ୍ତଙ୍କର ଆଖିକୁ ଝଲସାଇ ଦେଇପାରିଲ, ତେବେ ତୁମ ଜୀବନରେ ଆଉ ମୋଟେ କିଛି କରିବାର ନାହିଁ କି ହେବାର ମଧ୍ୟ ନାହିଁ । ତୁମେ ସତକୁ ସତ କ'ଣ, ମିତ୍ର ନା ବିଟ୍, ଚୋର ନା ସାଧୁ, ଆଧୁନିକ ସଂସାରର ପ୍ରଦର୍ଶନ-ମେଳାରେ ତୁମକୁ ସେକଥା କେହିହେଲେ ପଚାରିବେ ନାହିଁ । ମାତ୍ର ତୁମେ କ'ଣ ପିନ୍ଧି କେମିତି ଦିଶୁଚ, ଦେହରେ କ'ଣ ଲଗାଇ କେମିତି ବାସୁଛ, କୋଉ କମ୍ପାନୀର କଳା ଓ ଧଳା ପ୍ୟାଣ୍ଟ୍ ସାର୍ଟ ପିନ୍ଧି ସତେଅବା ଏକାବେଳେକେ କଳା ଘୋଡ଼ା ଏବଂ ଧଳା ଘୋଡ଼ାରେ ବସି ବାହାରିଯିବା ମାତ୍ରକେ କେତେ କେତେ ମାଣିକ ଗଉଡୁଣୀ ବେଶରେ ପୀରତିର ଦଧିଭାଣ୍ଡ ହାତରେ ଧରି ତୁମକୁ ଉତ୍‌ଫୁଲ୍ଲ ଓ ବିସ୍ମିତ ହୋଇ ଅନାଇ ରହୁଛନ୍ତି ଓ ତୁମକୁ ଫୁଲି ଉଠିବାରେ ସାହାଯ୍ୟ କରୁଛନ୍ତି, ସଂସାରଗୋଟାକୁ ବେପାରୀମାନେ ମାଡ଼ି ବସିଥିବାର ଏହି ଶିହରଣମୟ ଜଗତରେ ତାହାହିଁ କାମ୍ୟ, ଅସଲ କାମ୍ୟ, ସର୍ବାଗ୍ରେ କାମ୍ୟ ।

ବେପାରୀ ସଂସ୍କୃତିର ଭୂତ ଆମକୁ ଆସି ମାଡ଼ିବସିବା ଦିନଠାରୁ ଆମେ ସମସ୍ତେ ଯେପରି କୋଉ ବିନଷ୍ଟିବଜାରର ଗୋଟାଏ ଗୋଟାଏ ପଣ୍ୟରେ ହିଁ କ୍ରମେ ପରିଣତ ହୋଇ ଯାଉଛୁ । ଆମ ପିଲାଙ୍କର ପାଠ ଅପେକ୍ଷା ଆଗ ଜୋତାମୋଜା ଓ ବେକବନ୍ଧା ଦରକାର ହେଉଛି । ପଇସା ନାଆଁରେ ପୃଥିବୀଟା ଯାକ ହୁରି ପଡ଼ିଲାଣି । ଖାଲି ପଇସା କମାଅ, ପଇସା ଖର୍ଚ୍ଚ କର ଏବଂ ଅଧିକରୁ ଅଧିକ ସାମଗ୍ରୀର ଉପଭୋଗ କର, ଯେତେ ଅଦରକାରୀ ହେଲେ ମଧ୍ୟ ତୁମେ ସେଗୁଡ଼ିକୁ ହିଁ ଅବାଆଗ ଦରକାରୀ ବୋଲି ଅନୁଭବ କର, ସତେଅବା ଭଗବାନଙ୍କର କାନ୍ଧଉପରେ ଯାଇ ବସିଥିବା ବେପାରୀମାନେ ଅହର୍ନିଶ ଆମକୁ ସେହି ହିତବାଣୀ ଶୁଣାଇବାରେ ଲାଗିଛନ୍ତି । ଚୋର ହୁଅ, ଖଣ୍ଡ ହୁଅ, ଅସାଧୁଙ୍କର ବଡ଼ବାପା ହୁଅ; ସେଥିରେ ଶୋଚନା କରିବାର କିଛି ନାହିଁ । ତୁମ ପାଖରେ ପଇସା ଅଛି ? ତୁମେ ବଜାରକୁ ବାହାରିଲା ବେଳେ ରଜାରାଣୀ ଅଥବା ଗୋଟିପିଲା ପରି ଦିଶୁଚ ତ ? ତେବେ ସେଇଥିରେ ସମସ୍ତେ ମୁଗ୍‌ଧ ହୋଇଯିବେ ।

ଆମ କୃଷି ଓ ଦୃଷ୍ଟିକୁ ପଙ୍ଗପାଳ ପରି ଚରିଯିବାକୁ ଆସୁଥିବା ଏହି ବେପାରୀମାନଙ୍କୁ ରୋକିପାରିବ କିଏ ? ସରକାର କଦାପି ରୋକିବେ ନାହିଁ । ସରକାରଙ୍କର ତ ପଇସା ଦରକାର । ତେଣୁ ଦେଶରେ ମଣିଷମାନେ ଯେତେ ଅଧିକ ପରିମାଣରେ ମୁଗ୍‌ଧ ହୋଇ

ରହିବେ, ଯେତେ ଅଧିକ ନିଶା ଖାଇବେ ଓ ଯେତେ ଅଧିକ ଆପଣାର ଅସଲ ସମ୍ମାନ ଓ ପରିମଳଗୁଡ଼ିକୁ ଭୁଲି ରହିବେ, ସରକାରଙ୍କର ସେତେ ଆୟ ବଢ଼ିବ । ସେହି ଆୟ ପଇସାରୁ ସିଏ ଦେଶରେ ଦାରିଦ୍ର୍ୟ, ବେକାରି ଓ ଅଶିକ୍ଷା ବିରୋଧରେ ସଂଗ୍ରାମ କରିବାକୁ ସମର୍ଥ ହେବେ । ଆମ ଭିତରେ ଆମ ପ୍ରତ୍ୟେକଙ୍କ ଭିତରେ ଯେଉଁ ବେପାରୀଟି ରହିଛି, ତାକୁଇ ଆମେ ରୋକି ପାରିଲେ ଯାଇ ଏହି ସ୍ରୁଅର ମୋଡ଼ ବଦଳିବ । ଏକଥା ପ୍ରତ୍ୟେକ ବ୍ୟକ୍ତି କରିପାରିବେ । ଜୀବନର ଅନ୍ୟ ଅସଲ ଧନଗୁଡ଼ିକୁ ଅନୁଭବ କରି ଶିଖିଲେ ମିଛଧନ ଓ ମିଛ ଉଚ୍ଚାଟନ ଗୁଡ଼ାକରେ ମୁଗ୍ଧ ହୋଇ ରହିବାକୁ ଆଉ ମୋଟେ ମନ ବଳିବ ନାହିଁ । ମଣିଷ ତା' ଘରକୁ ଫେରି ଆସିବ, ଦେଶ ବି ।

୧୩/୧୦/୯୦

# ସାମାଜିକ ଅସାମାଜିକ

ଆମ ସମାଜରେ ଅଶୋଭନୀୟ ଏବଂ ଗର୍ହଣୀୟ ଯାହାସବୁ ଘଟୁଛି, ତାହାକୁ କେବଳ ଅସାମାଜିକ ଲୋକମାନେ କରୁଛନ୍ତି ବୋଲି ନିତି ଖବରକାଗଜମାନଙ୍କରେ ବାହାରୁଛି । ନେତାମାନେ ବି ସେଇ କଥା କହି କେଡ଼େ ବାଗରେ ବୁଦା ଭିତରେ ମୁଣ୍ଡ ଲୁଚାଇ ରହି ଯାଉଛନ୍ତି । ଏହି ସମାଜ ଭିତରେ ହିଁ ସାମାଜିକ ଅସାମାଜିକ ଉଭୟେ ଅଛନ୍ତି । ତଥାକଥିତ ସାମାଜିକମାନେ ତଥାକଥିତ ଅସାମାଜିକମାନଙ୍କୁ ନିମ୍ନ ଦୃଷ୍ଟିରେ ଦେଖନ୍ତି ଓ ସେହିମାନଙ୍କ ଉପରେ ସବୁ ଅପବାଦ ଢ଼ାଳି ଦେଇ କେଡ଼େ ସୁନ୍ଦର ଲୁଚି ରହିଯାଆନ୍ତି । ତଥାକଥିତ ଅସାମାଜିକମାନେ ତଥାକଥିତ ସାମାଜିକମାନଙ୍କୁ କି ଦୃଷ୍ଟିରେ ଦେଖୁଥିବେ କେଜାଣି ?

ଯେଉଁମାନେ କଲେଜମାନଙ୍କୁ ପାଠ ପଢ଼ି ଯାଉଛନ୍ତି, ଭଲ ଘରୁ ଆସିଥିବା ପିଲାଙ୍କ ପରି ପୋଷାକ ପିନ୍ଧିଛନ୍ତି, ନିଜର ଦାବି ପୂରଣ ଲାଗି ହୁଏତ ଶୋଭାଯାତ୍ରା କରି ସ୍ଲୋଗାନ ଦେଇ ବାହାରୁଛନ୍ତି, ସେତେବେଳେ ସାମାଜିକମାନେ ଏ ସବୁ କରୁଛନ୍ତି ବୋଲି ଆମ ମଥାନ ଡ଼ାଳମାନଙ୍କରେ ବସିଥିବା ଚିଲ ଓ ଶିଆଳମାନେ କହୁଛନ୍ତି । ଶୋଭାଯାତ୍ରାରେ ସାମାଜିକମାନେ ଯାଉ ଯାଉ ହଠାତ୍ କୋଉ ଶନି ଆସି ପଶିଗଲା ପରି ତା'ରି ଭିତରୁ ଢ଼େଲା ପଥର ବାହାରି ଯୁଦ୍ଧ ଆରମ୍ଭ ହୋଇ ଯାଉଛି, ଯାନବାହନମାନଙ୍କରେ ନିଆଁ ଲାଗି ଯାଉଛି ଏବଂ ଆହୁରି କୌଣସି ବଢ଼ିଆ ଜିନିଷ ଢ଼ାଳି ଦେଇ ମଣିଷକୁ ପୋଡ଼ି ମାରି ଦିଆଯାଉଛି । ଏବଂ, ଏହି ଦ୍ୱିତୀୟ କିସମର କାର୍ଯ୍ୟଗୁଡ଼ିକ ଅସାମାଜିକ ଲୋକେ କଲେ ବୋଲି କୁହାଯାଉଛି । ସତେଅବା ଆଗରୁ ସବୁ ଜାଣିଥିଲା ପରି ସମସ୍ତେ ସେକଥାକୁ ବୁଝି ଯାଉଛନ୍ତି ।

ଆମ ମନ୍ତ୍ରୀ ସଭାକୁ ସଭା ବୁଲି ବକ୍ତୃତା ଦେଉଛନ୍ତି । ସିଏ ସଂସ୍କୃତି ବିଷୟରେ କହୁଛନ୍ତି, ସଂହତି ବିଷୟରେ କହୁଛନ୍ତି, ଏହି ଦେଶ ଅତୀତରେ କେତେ କ'ଣ ଥିଲା ବୋଲି ବହି ଘୋଷି ଆସିଥିଲା ପରି କେତେ କ'ଣ ଉଦ୍‌ଗାରି ପକାଉଛନ୍ତି, ଦେଶ କିପରି ତା'ର ପୂଜ୍ୟ ଓ ପ୍ରତିଭାଧର ମାନଙ୍କୁ ଚିହ୍ନୁ, ଜାଣୁ ଓ ପୂଜା କରୁ ବୋଲି ସିଏ କେତେ ଭାବପ୍ରବଣତା ସହିତ ଉଜ୍ଜ୍ୱଳ କଥାମାନ କହୁଛନ୍ତି; ସେତେବେଳେ ସିଏ ଯେ ଏକାନ୍ତ ସାମାଜିକ, ସେଥିରେ କୌଣସି ସନ୍ଦେହ ନାହିଁ । ମାତ୍ର ସେଇ ମନ୍ତ୍ରୀ ଯେତେବେଳେ ଲାଞ୍ଚ ମାଗୁଛନ୍ତି, ଟେଲିଫୋନ ଉଠାଇ ଅମୁକ ବ୍ୟକ୍ତିକୁ ତୁମ କଲେଜରେ ଚପରାସୀ ରଖ ବୋଲି କୌଣସି କଲେଜର ଅଧ୍ୟକ୍ଷଙ୍କୁ ନିର୍ଦ୍ଦେଶ ଦେଉଛନ୍ତି, ତାଙ୍କ ନିର୍ଦ୍ଦେଶ ଅନୁସାରେ କାମ ନହେଲେ ବହୁ କୂଟନୀତିକ ଉପାୟରେ ତାଙ୍କୁ ବାର ହରକତ କରାଯାଉଛି, ସେତେବେଳେ ଆମେ ମନ୍ତ୍ରୀଙ୍କୁ ସାମାଜିକ କହିବା ନା ଅସାମାଜିକ କହିବା ? ଆଜି ରାତିରେ ମାରୁତି ମଣ୍ଡପରେ ରାମାୟଣ ଓ ରାମଚନ୍ଦ୍ରଙ୍କ ବିଷୟରେ ରତ୍ନଖଚିତ ଏକ ଭାଷଣ ଦେଇ କାଲି ଯିଏ ତରୁଣମାନଙ୍କୁ, ଉଚ୍ଚାଭିଳାଷୀ ବୋକାମାନଙ୍କୁ ହାତରେ ହାତ ମୋଜା ପିନ୍ଧି କୋଉ ଗଡ଼ଗୁଡ଼ାକରେ ଯାଇ ନିଆଁ ଲଗାଇ ଦେବାକୁ ଓ ଅମୁକ ବ୍ୟକ୍ତିକୁ ବା ବ୍ୟକ୍ତିମାନଙ୍କୁ ବାଡ଼େଇ ସେମାନଙ୍କର ଗୋଡ଼ହାତ ଭାଙ୍ଗି ଦେବାଲାଗି ସଲା ଦେଉଛି, ମଦଖିଆ ପଇସା ଯୋଗାଇ ଦେଉଛି, ସେମାନଙ୍କୁ ଆମେ ସାମାଜିକ କହିବା ନା ଅସାମାଜିକ କହିବା ? ସେମାନଙ୍କୁ ଆମେ କେଉଁ ଗାଡ଼ରେ ଯାଇ ଠାବ କରିବା ?

ପୁନଶ୍ଚ, ଯେଉଁ ଶିକ୍ଷକ ବା ଅଧ୍ୟାପକ ତା' ଛାତ୍ରମାନଙ୍କୁ ପାଠ ନପଢ଼ାଇ ସମପ୍ରକୃତିମାନଙ୍କୁ ଉସୁକାଉଛି, ଦରମାଗୁଡ଼ାକୁ ଆହୁରିରୁ ଆହୁରିକୁ ବଢୁ ବୋଲି ଚତୁର୍ମାସ୍ୟା ଧର୍ମଘଟ ଅନଶନ ଓ ଆହୁରି କେତେ କ'ଣ କରାଇ ବୁଲୁଛି, ସିଏ ଧର୍ମତଃ ସାମାଜିକ ନା ଅସାମାଜିକ ? ସରକାର ସହିତ ଗଣତାନ୍ତ୍ରିକ ଉପାୟରେ ଯୁଝିବା ନାଆଁରେ ସିଏ ଆମ ଦେଶର ପାଠ ପଢୁଥିବା ପିଲାମାନଙ୍କୁ ପଢ଼ାଇବାର କର୍ତ୍ତବ୍ୟଟିରୁ ସବାଆଗ ହୁଡ଼ିଯିବାକୁ ମନ କରୁଛି, ଗୁରୁ ଦିବସରେ ଆମଠାରୁ ସମ୍ମାନ ପାଉଥିବା ସେହି ଗୁରୁ ପ୍ରକୃତରେ ସାମାଜିକ ନା ଅସାମାଜିକ ? ଏହାର ଫଇସଲା କିଏ କରିପାରିବ ?

ସାମାଜିକମାନେ କୋଉ ଦଳରେ ଅଛନ୍ତି ଓ ଅସାମାଜିକମାନେ ମଧ୍ୟ କୋଉ ଦଳରେ ଅଛନ୍ତି ? ସେଇ ଏକା ଲୋକେ କ୍ଷମତାରେ ଥିବାବେଳେ କେଡ଼େ ସାମାଜିକ ହୋଇ ରହିଛନ୍ତି ଏବଂ କ୍ଷମତାରୁ ଖସିଯିବା ମାତ୍ରକେ ସତେଅବା ବର୍ଗୀମାନଙ୍କ ପରି ଆଚରଣ କରୁଛନ୍ତି । ଆଜି ଆସନରେ ଥିବାବେଳେ ଯଦୁକୁଳ ବା ରଘୁକୁଳର ଶିରୋମଣି ପରି ଦିଶୁଛନ୍ତି, ହାତରେ ଶଙ୍ଖା ପିନ୍ଧି ମୁଣ୍ଡରେ ସିନ୍ଦୂର ନାଇ କେଉଁ ସମ୍ଭ୍ରାନ୍ତକୁଳର ସଧବା ପରି

ଦିଶୁଛନ୍ତି ଓ କାଲି ଆସନଗୁଡ଼ିକ ଚାଲିଯିବା ପରେ ଅଲକ୍ଷଣା ଓ ଅଲକ୍ଷଣାର ଅବତାର ଧାରଣ କରି ଆମ ଘରଗୁଡ଼ାକରେ ନିଆଁ ଲଗାଇ ଦେବାକୁ ବାହାରିଛନ୍ତି । କେଉଁ ବେଦ ବା ଉପନିଷଦ ଅନୁସାରେ ଆମେ ସେମାନଙ୍କର ସାମାଜିକତା ଏବଂ ଅସାମାଜିକତାକୁ ମାପିଚୁପି ପାରିବା ଓ ସେମାନଙ୍କୁ ଗୋଟାଏ ନିର୍ଦ୍ଦିଷ୍ଟ ମୁଖା ଦେଇ ଚିହ୍ନିପାରିବା ?

ଭାରତବର୍ଷକୁ ବର୍ତ୍ତମାନ ଏପରି ଏକ ସଂକଟ ଆସି ଘୋଟିଛି, ଯେତେବେଳେ କି ଏହି ଚିହ୍ନା ବ୍ରାହ୍ମଣମାନଙ୍କ ଉପରେ ଆଉ ମୋଟେ ଭରସା କରି ହେଉନାହିଁ । ଏହି ଚଣ୍ଡ ଓ ମୁଣ୍ଡମାନେ ଏହିପରି କରି ଦେଶଟା ସମେତ ଆମ ସମସ୍ତଙ୍କୁ ଭୋଗିବେ ବୋଲି ସତେଅବା ସ୍ୱର୍ଗରୁ ପରମିଟ ନେଇ ଭାରତବର୍ଷକୁ ଆସିଛନ୍ତି । ଭାରତବର୍ଷକୁ ଗତ ଚାଳିଶିବର୍ଷ ହେଲା ସତେ ଯେପରି ସେହି ପରମିଟ ବଳରେ ନଚା ହେଉଛି, ଧର୍ଷିତ କରା ହେଉଛି । ସାମାଜିକ ଅସାମାଜିକ ମୋଟେ ବାରି ହେଉନାହିଁ । ଏହି ଦୁଇଟାଯାକର ସଂହାର ଗାର କାଟି ଆଉ କିଏ ଆମ ଭିତରୁ ବାହାରି ଆମକୁ ଆସି ଉଦ୍ଧାର କରିବ କେଜାଣି ?

# ମଣ୍ଡଳ ମହାଧନ୍ଦୋଳ

ଶ୍ରୀଯୁକ୍ତ ବିନ୍ଧେଶ୍ୱରୀ ପ୍ରସାଦ ମଣ୍ଡଳ ସ୍ୱର୍ଗରେ ଦୀର୍ଘଜୀବୀ ହୁଅନ୍ତୁ । କାରଣ ଏଠାରେ ସିଏ ଇହଧାମରେ ନଥାଇ ମଧ୍ୟ ଗୋଟିଏ ସପ୍ତାହବ୍ୟାପୀ ଗୋଳ ଲଗେଇଦେଇ ପାରିଲେ । ଏହିସବୁ ଗୋଳ ଲାଗିଥିବା ସମୟରେ ମୁଁ ଭାବୁଥିଲି, ଯଦି ମଣ୍ଡଳ ଏତେବେଳେ ଜୀବିତରେ ଥାନ୍ତେ, ତେବେ ତାଙ୍କର ଦଶା କ'ଣ ହୋଇଥାନ୍ତା । ତାଙ୍କର କୁଶପିତୁଳା ଦାହ କରାଯାଇଥାନ୍ତା, ଏହି ଦେଶରେ ଥୋକେ ଉତ୍ତେଜିତ ମଣିଷ ମଉକା ପାଇଥିଲେ ତାଙ୍କ ଘରେ ନିଆଁ ଲଗାଇ ଦେଇଥାନ୍ତେ ଏବଂ କିଏ ଜାଣେ, ତାଙ୍କୁ ସେମାନେ ହୁଏତ ଶହୀଦ୍ ବି କରି ପକାଇଥାନ୍ତେ ।

କ୍ରମେ ସବୁ ତୁନିତାନି ପଡ଼ି ଆସିବା ପରେ ମନେହେଉଛି, ସବୁ ଭାରତବାସୀଙ୍କୁ ପରସ୍ପର ସହିତ ଏକ ସମାନ ଓ ସମ୍ମାନାସ୍ପଦ ସ୍ତରକୁ ଆଣିବାଲାଗି ମାତ୍ର ଏତେଟିକିଏ ଟିହାଇ ଦିଆ ହୋଇଥିବା ମଣ୍ଡଳ କମିଶନର ବିବରଣୀରେ ତ ସାମନ୍ତ ଶ୍ରେଣୀର ଲୋକେ ଏତେ ଦୂର ଚିହିଙ୍କି ଉଠିଲେ; ଏବଂ ଏହି ଦେଶରେ ସତକୁ ସତ କୌଣସି ସାମାଜିକ ବିପ୍ଳବ ଦିଗରେ ଯେତେବେଳେ ପ୍ରକୃତରେ କିଛି କରାଯିବ, ସେତେବେଳେ ପରିବର୍ତ୍ତନ-ବିରୋଧୀ ପ୍ରତିବିପ୍ଳବୀମାନେ ପ୍ରକୃତରେ ଆହୁରି କେତେ କ'ଣ ତୋଡ଼ ନ ଦେଖେଇବେ

ଓ ଗର୍ଜନ ନ କରିବେ । ଭାରତବର୍ଷ ରାଜନୈତିକ ସ୍ୱାଧୀନତା ହାସଲ କରିବାର ଅବ୍ୟବହିତ ପରବର୍ତ୍ତୀ କେତେ ବର୍ଷ ସମ୍ଭବତଃ ଏହି ଦେଶର ବାତାବରଣ ଅତ୍ୟାବଶ୍ୟକ ପରବର୍ତ୍ତୀ ପରିବର୍ତ୍ତନଗୁଡ଼ିକ ଲାଗି ଅନୁକୂଳ ହୋଇ ରହିଥିଲା । ସେତେବେଳେ କିଛି ହେଲାନାହିଁ । ନେତାମାନେ ଜାଣି ଜାଣି ମୁହୂର୍ତ୍ତଗୁଡ଼ିକୁ ଗଡ଼ାଇଦେଲେ । ତାପରେ କଳା ହାକିମମାନଙ୍କୁ ନେଇ କଥାର ବାଣ ମରାମରି ହୋଇ ଚଲାଖମାନଙ୍କର ରାଜତ୍ୱ ଚାଲିଲା । ରାଜନୀତିକ ଦଳମାନେ ରାଜନୀତିକୁ ଭୁଲି ଗୋଟଏ ଗୋଟାଏ ହୁଣ୍ଡା ଦଳରେ ପରିଣତ ହେଲେ । ହୁଣ୍ଡାମି ଗୁଣ୍ଡାମି ଭିତରେ ସିଂହାସନ ନେଇ ଟଣାଓଟରା ଚାଲିଲା ଏବଂ ତାହାକୁ ହିଁ ରାଜନୀତି ବୋଲି କୁହାଗଲା । ପଇସାରେ ମଣିଷମାନେ ବିକାକିଣା ହେଲେ । ପଇସା ଦ୍ୱାରା ସବୁକିଛି ସମ୍ଭବ ହୋଇ ପାରିବ ବୋଲି ଗୋଟିଏ ବର୍ବର ବିଶ୍ୱାସ ଆମ ସାମୂହିକ ଜୀବନରେ ସତେଅବା ଆମ ସମସ୍ତଙ୍କୁ ଆସି ଗିଳି ପକାଇଲା ।

ଭୋଗୀମାନେ, ବାବୁମାନେ ଧରିନେଲେ ଯେ କୋଉଠି ଆଉକିଛି କଦାପି ବଦଳିବ ନାହିଁ । ଯିଏ ତଥାପି ଅଲକ୍ଷଣାପଣ ଦେଖାଇ ବଦଳାଇବାର କଥା କହିବ, ପଇସା ଦେଇ ତା ମୁହଁକୁ ବନ୍ଦ କରାଯିବ ଅଥବା ଗୁଣ୍ଡା ଲଗାଇ ତା ଗୋଡ଼କୁ ଛୋଟା କରି ଦିଆଯିବ । ଦମ୍ଭରେ, ଉପେକ୍ଷାରେ ଏବଂ ଉଗ୍ରତାରେ ଆମେ ଯେ କ୍ରମେ କେଡ଼େ ପ୍ରଚଣ୍ଡ ହେବାର ପ୍ରଶ୍ରୟ ପାଇଲୁ, ମଣ୍ଡଳ ରିପୋର୍ଟର ବିରୋଧରେ ପ୍ରଦର୍ଶିତ ହୋଇଥିବା ପ୍ରତିକ୍ରିୟା ଅନ୍ତତଃ ଆମକୁ ସେହି କଥାକୁ ଦେଖାଇ ଦେଇଗଲା । ଅର୍ଥାତ୍ ଭାରତବର୍ଷ ଏପରି ଏକ ସ୍ଥିତିରେ ଆସି ପହଞ୍ଚିଲାଣି, ଯେଉଁଠି ଆମ ବାବୁମାନେ ଯମକ ଦେଲାପରି କହୁଛନ୍ତି ଯେ, ଯିଏ ଯେତେ ପାରୁଛ ପରିବର୍ତ୍ତନକୁ କଥାରେ କୁହ, ମାତ୍ର ଯଦି କାର୍ଯ୍ୟରେ କିଏ ସତକୁ ସତ କୌଣସି ପରିବର୍ତ୍ତନ ଆସୁ ବୋଲି ପ୍ରସ୍ତାବ ଦେବ ଓ ଆଗକୁ ପାଦଟିଏ ପକାଇବ, ତାକୁ ସେମାନେ କଦାପି ସହ୍ୟ କରି ପାରିବେନାହିଁ । ସେମାନେ ଘରମାନଙ୍କରେ ନିଆଁ ଲଗାଇଦେବେ, ବାଟ ବନ୍ଦ କରିଦେବେ, ତୁମକୁ ନାକରେ କନ୍ଦାଇଦେବେ ।

ତଥାପି ଯେଉଁସବୁ ପରିବର୍ତ୍ତନ ସମଗ୍ର ପୃଥିବୀରେ ହୋଇଛି ଓ ହେଉଛି, ତାହା ଏହି କଠିନ ଭୂମି ଭାରତବର୍ଷରେ ମଧ୍ୟ ହେବ । ସାମାଜିକ ନ୍ୟାୟର ପ୍ରତିଷ୍ଠା ହେବ, ସରକାରୀ ବିଧାନ ଦ୍ୱାରା ନହେଲେ ତଳୁ ବିପ୍ଲବ ଦ୍ୱାରା ହେବ । ସେହି ବିପ୍ଲବ ଲାଗି ଉପଯୁକ୍ତ ନେତୃତ୍ୱ ତିଆରି ହୋଇଗଲା ମାତ୍ରକେ ପରିବର୍ତ୍ତନ ହେବ ହିଁ ହେବ । ବାବୁମାନେ ତାହାକୁ କଦାପି ଅଟକାଇ ରଖିପାରିବେ ନାହିଁ । ପରବର୍ତ୍ତୀ ସେହି ବିପ୍ଲବଟିକୁ ନ୍ୟସ୍ତସ୍ୱାର୍ଥମାନଙ୍କର ଶିବିରରୁ କେତେ ପ୍ରକାରର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିବ, କିଛି ନ ବଦଳୁ ବୋଲି ଆଣ୍ଠ ଧରି ବସିଥିବା ବାବୁମାନେ ଯେ ସେମାନଙ୍କର କୌଶଳରେ

କେତେ ନିମ୍ନକୁ ଯାଇପାରିବେ, ଗୋଟାଏ ସପ୍ତାହର ମିଛରଣ ଗୁଡ଼ିକ ଆମକୁ ଅନ୍ତତଃ ସେତିକି ବିଷୟରେ ସାବଧାନ କରିଦେଇ ପାରିବ । ଭାରତବର୍ଷର ଦୁର୍ଭାଗ୍ୟ ଯେ, ଆମ ସାମୂହିକ ବ୍ୟବସ୍ଥାରେ ଯେଉଁମାନେ ଉପରିଭାଗରେ ଅଛନ୍ତି, ସେମାନେ ନିମ୍ନରେ ରହିଥିବା ମଣିଷମାନଙ୍କୁ ଯୁଗେ ଯୁଗେ ଭୂତାଇ ଆସିଛନ୍ତି । କେବଳ ଉପରର ମଣିଷର ଅନୁଗ୍ରହ ଦ୍ୱାରା ଯେ ତଳ ମଣିଷର ଭାଗ୍ୟ ବଦଳିବ, ନହେଲେ ତଳଟାକୁ ଯେ ଏକଲବ୍ୟର ଦୁର୍ଦ୍ଦଶା ଭୋଗିବାକୁ ପଡ଼ିବ, ଆମର ଏଠି ସାମାଜିକ ନ୍ୟାୟର ଦରବାରମାନେ କାଳେ କାଳେ ଏହିପରି ଏକ ମିଥ୍ୟା ଦ୍ୱାରା ତଳକୁ ମୁଗ୍ଧପ୍ରାୟ କରି ରଖିଛନ୍ତି । ସେହି ମୋହ ଭାଙ୍ଗିଗଲେ ଦେଶରେ ଅସଲ ପରିବର୍ତ୍ତନର ପ୍ରକ୍ରିୟା ଆରମ୍ଭ ହେବ ।

ଆମେ ଉପରବାଲାଏ ତଳେ ମଣିଷମାନଙ୍କୁ କେତେ ପ୍ରେମ ଦେଖାଇ ଅମୃତର ସନ୍ତାନ ବୋଲି କହୁଛୁ ଓ ତେଣେ ପ୍ରକୃତ ସମ୍ବନ୍ଧଗୁଡ଼ିକର କ୍ଷେତ୍ରରେ ପଚିଶି ପ୍ରକାରର ଫନ୍ଦିରେ ସେମାନଙ୍କୁ ଶୋଷଣ କରିଛୁ ଓ ଭୁଲାଇ କରି ରଖିଛୁ । ଆମେ ସେମାନଙ୍କୁ ଏ ଦେଶରେ ପୂର୍ଣ୍ଣଯୋଗ୍ୟ ନାଗରିକ ହେବାର କୌଣସି ସୁଯୋଗକୁ ବାଟ ଛାଡ଼ି ଦେଇନାହୁଁ । ମଣିଷମାତ୍ରକେ ଯେ ଅମୃତର ସନ୍ତାନ, ତଳର ମଣିଷ ବି ଦିନେ ସେକଥା ଅନୁଭବ କରିବ ଓ ଆମ ଉପେକ୍ଷାର ଜବାବ ଦେବ । ଅସଲ ପରିବର୍ତ୍ତନର ସେହି ପ୍ରକ୍ରିୟାଟି ଆଦୌ ସହଜ ହେବନାହିଁ । ମଣ୍ଡଳ କମିଶନର ରିପୋର୍ଟ ବିରୋଧରେ ବାବୁମାନେ ଯେଉଁ ବିକ୍ଷୋଭର ପରିଚୟ ଦେଲେ, ତାହା ମୂଳତଃ ଦେଶର ପରବର୍ତ୍ତୀ ନେତୃତ୍ୱ ଲାଗି ସେହି ସତର୍କବାଣୀଟିକୁ ଶୁଣାଇ ଦେଇଗଲା । ଅନ୍ତତଃ ଏହି ଗୋଟିଏ କାରଣ ସକାଶେ ଆମେ ଶ୍ରୀଯୁକ୍ତ ମଣ୍ଡଳ ଓ ତାଙ୍କ କମିଶନର ରିପୋର୍ଟଟି ପାଖରେ କୃତଜ୍ଞ ହୋଇ ରହିବା । ମଣ୍ଡଳ ରିପୋର୍ଟ ପଛରେ ପଡ଼ିରହିବ, ଆମେ ଆଗକୁ ବାହାରିଯିବା ।

୧୦/୧୧/୯୦

# ଯାହାର ଯାହା ମନରେ ଥାଏ

ମଣ୍ଡଳ ଓ ତାଙ୍କ କମିଶନକୁ ଆମେ ଧନ୍ୟବୋଲି କହିବା, କାରଣ ଆମ ମନ ଭିତରେ ଯାହା କିଛି ରହିଥିଲା, କମିଶନର ରିପୋର୍ଟ ବିରୋଧରେ ଗାଆଁ ଦାଣ୍ଡରେ ଜଳାପୋଡ଼ା କରି ବାହାରିବା ସମୟରେ ସେଗୁଡ଼ିକ ସବୁ ଭରଭର ହୋଇ ପଦାକୁ ବାହାରି ପଡ଼ିଲା । ଏହି ଦୃଷ୍ଟିରୁ ଏକ ଅସ୍ୱାଭାବିକ ସ୍ଥିତିର କିଞ୍ଚିତ୍ ଉପଯୋଗିତା ମଧ୍ୟ ରହିଛି । ଯୁଦ୍ଧ ଏକ ଅସ୍ୱାଭାବିକ ସ୍ଥିତି, ପ୍ରାକୃତିକ ଦୁର୍ବିପାକ ଏକ ଅସ୍ୱାଭାବିକ ସ୍ଥିତି, ରେଳମଟର ଦୁର୍ଘଟଣା ମଧ୍ୟ ସେହିପରି ଏକ ଅସ୍ୱାଭାବିକ ସ୍ଥିତି । ଦେଶରେ ମରୁଡ଼ି ପଡ଼ିଲେ ବନ୍ୟା ପ୍ରପୀଡ଼ିତ

ଅଞ୍ଚଳରେ ସରକାର ରିଲିଫ୍ ବାଣ୍ଟି ବାହାରିଲେ, ସହରର ଗୁଣୀ ବ୍ୟବସାୟୀମାନଙ୍କଠାରୁ ଆରମ୍ଭ କରି ଗାଆଁର ଟାଉଟରମାନଙ୍କ ପର୍ଯ୍ୟନ୍ତ ସମସ୍ତେ କେତେ ପ୍ରକାରର ଲାଭ ଉଠାଇବାକୁ ତତ୍ପର ହୋଇ ଉଠନ୍ତି, ସେମାନେ ମଉକାଗୁଡ଼ିକର ପୂର୍ଣ୍ଣ ସୁଯୋଗ ନିଅନ୍ତି । ଗାଆଁରେ ବିଲୁଆ ପଛରେ ଫଂଟାଏ ତଡ଼ାବାଡ଼ି ନେଇ ଦଉଡ଼ିଥିଲା ବେଳେ ଆଉ ଫଂଟାଏ ବାଡ଼ିରେ ପଶି କାକୁଡ଼ି କାଟି ନେବାରେ ବ୍ୟସ୍ତ ହୋଇ ରହିଥାନ୍ତି ।

ଏଥର ପ୍ରାୟ ସେହିପରି କଥା ଓ ଅକଥାମାନ ଘଟିଲା । ମଣ୍ଡଳ କମିଶନର ରିପୋର୍ଟକୁ ବିରୋଧ କରି ପ୍ରତିବାଦ ଆରମ୍ଭ ହେଲା । ଏହିପରି ଏକ ପ୍ରତିବାଦକୁ ଏକ ଅମୃତଯୋଗ ଭଳି ବ୍ୟବହାର କରିବାକୁ ସତେଅବା ଅନାଗତର ଆଘ୍ରାଣ କରି ପାରୁଥିବା କାମୁକମାନେ ଚାକି ବସିଥିଲେ । ଦେଶରେ କେତେ କ'ଣ ଘଟିଲା । ଖାଲି ସହରମାନଙ୍କରେ ନୁହେଁ, ନିପଟ ମଫସଲରେ ମଧ୍ୟ ଘଟଣାମାନ ଘଟିଲା ଓ ଖବରକାଗଜକୁ ଆସିଲା । କଣାସ, ଅଡ଼ଶପୁର, ବ୍ରହ୍ମଗିରି, ମଦ୍ଧି ଓ ମାନଗୋବିନ୍ଦପୁର ଯାଏ ରାଜନୀତି ମାଡ଼ି ଆସିଲା । ରାଜନୀତି ଯେ ଆଉ ସହର ଭିତରେ ସୀମାବଦ୍ଧ ହୋଇ ରହିନାହିଁ, ସେଥିପାଇଁ ବେଳେବେଳେ କିଛିତ୍ ଉଷ୍ମତ ମଧ୍ୟ ଲାଗୁଥିଲା । ଗଣ୍ଡିଆ ରାଜନୀତି, ଘଣ୍ଟବାଡ଼ିଆ ରାଜନୀତି ଆସୁ ଆସୁ ହୁଏତ ଏମିତି ଦିନେ ଅସଲ ରାଜନୀତିକ ଚେତନା ମଧ୍ୟ ଗ୍ରାମାଞ୍ଚଳକୁ ଆସିବ ବୋଲି ଆଶା ମଧ୍ୟ କରି ହେଉଥିଲା ।

ମଣ୍ଡଳ କମିଶନର ଫଟୁଆ ବିରୋଧରେ ଏହି ବହୁମୁଖୀ ନେତୃତ୍ୱକୁ ମଧ୍ୟ ଆମେ ଧନ୍ୟ ବୋଲି କହିବା । ନେତାମାନେ କେଡ଼େ କୌଶଳପୂର୍ଣ୍ଣ ଭାବରେ ଏହି ବିକ୍ଷୋଭ ମଧ୍ୟରେ ରେଳଗାଡ଼ି ପୋଡ଼ିବା, କଲେଜ ଗ୍ରନ୍ଥାଗାରରେ ନିଆଁ ଲଗାଇଦେବା, ସରକାରୀ ଗାଡ଼ିଗୁଡ଼ାକର ପିଠିରେ ଗଡ଼ିଆ ଖୋଳିବା, ଏହିପରି କେତେ କାର୍ଯ୍ୟ ଓ ଅକାର୍ଯ୍ୟକୁ ଆଣି ଅନ୍ତର୍ଗତ କରି ପାରିଲେ, ବିକ୍ଷୋଭଟିକୁ ବହୁବର୍ଣ୍ଣ କରିଦେଇ ପାରିଲେ । ସେଦିନ ସଭାଘରେ ଜଣେ ପ୍ରବର ବକ୍ତା କହୁଥିଲେ ଯେ ବିକ୍ଷୋଭ ସମୟରେ ଯାହାସବୁ ହେଲା ସେସବୁ ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଭାବରେ ହେଲା । ଏକଥା ଶୁଣିବାମାତ୍ରକେ ଶ୍ରୋତାମାନଙ୍କର ଧାଡ଼ିରୁ ଉଚ୍ଚ କରତାଳି ବଜାଗଲା । ସତେଅବା କେତେ କିଏ ଡରି ଯାଉଥିବା ପରି ମନେହେଲା । ଜଳାପୋଡ଼ାରେ ଏକ ପ୍ରଶଂସାଭାଜନ ଅଂଶ ଗ୍ରହଣ କରିଥିବା ଅନ୍ତତଃ କେତେକ ବୀର ଓ ଉପବୀରମାନେ ଯେ ସେହି ସଭାରେ ଉପସ୍ଥିତ ନଥିଲେ, ସେକଥା କିଏ ଦୃଢ଼ ଭାବରେ ଜିଦ୍ ମାରି କହିପାରିବ ?

ରାଜନୀତିବାଲାଏ ଏହି ସ୍ଥିତିରୁ ସମ୍ଭବତଃ ସବୁଠାରୁ ଅଧିକ ପୋଷଣ ପାଇଲେ । ଗତ କୋଡ଼ିଏ ତିରିଶ ବର୍ଷ ହେଲା ବାମ ଓ ଡାହାଣ ଉଭୟ ରାଜନୀତି ଏଭଳି ଏକ

ସ୍ଥିତିରେ ଆସି ପହଞ୍ଚିଗଲାଣି ଯେ, ରାଜନୀତି କହିଲେ ଏବେ ବଳଦିଆ ହିସାବରେ ଦୁଇଟି ସାହୀକୁ ବୁଝାଉଛି । ଯୋଉମାନେ କ୍ଷମତାରେ ଅଛନ୍ତି ସେମାନେ ଏବଂ ଯୋଉମାନେ କ୍ଷମତାରେ ନାହାନ୍ତି । ଯୋଉମାନେ କ୍ଷମତାରେ ନ ଥାନ୍ତି, ସେମାନେ ବିଚରା କେଉଁଠାରେ ହେଲେ ନଥାନ୍ତି । ସେମାନଙ୍କୁ କେହି ମନେ ପକାନ୍ତି ନାହିଁ, କେହି ସଭାକୁ ଡାକନ୍ତି ନାହିଁ, ସାହିତ୍ୟ ବା ସଂସ୍କୃତିକୁ ଡାକିବା ତ ଦୂରର କଥା, ହୋଟେଲ ଉଦ୍‌ଘାଟନକୁ ଡାକନ୍ତି ନାହିଁ କିମ୍ବା ମାରୁତିମଣ୍ଡପକୁ ବି ଡାକନ୍ତିନାହିଁ । ବଡ଼ କଲବଲ ଭାବରେ ସମୟ କଟାଇବାକୁ ହେଉଥାଏ । ପାଞ୍ଚବର୍ଷ ଅପେକ୍ଷା କରିବା ଲାଗି ତର ସହେନାହିଁ । କ'ଣ ଗୋଟାଏ କରି ବା ଭିଆଇ କ୍ଷମତାରେ ରହିଥିବା ଅନ୍ୟମାନଙ୍କର ସ୍ୱୟମ୍ବରସଭା ପରି ଦିଶୁଥିବା ଆଖଡ଼ାଗୁଡ଼ାକୁ ଓଲାରି ତଳକୁ ଟାଣି ଆଣିବା ନିମନ୍ତେ ସେମାନେ ଛକପକ ହେଉଥାନ୍ତି ।

ଏହିସବୁ ବିକ୍ଷୋଭ ସମୟରେ ସେହିମାନେ ନେତୃତ୍ୱ ନିଅନ୍ତି, ଆପଣାର ଭାଗ୍ୟପରୀକ୍ଷା କରନ୍ତି । ଭଗବାନଙ୍କ କୃପାରୁ ଅର୍ଥର କୌଣସି ଅଭାବ ନଥାଏ । କ୍ଷମତାରେ ଥିବାବେଳେ ସେମାନେ ଭବିଷ୍ୟତର ଦୁର୍ଦ୍ଦିନଲାଗି ମଧ୍ୟ ଅମାରେ ବା ଦି'ଅମାର ସାଇତି ରଖି ପାରିଥାନ୍ତି । ସନ୍ତୋଷ-ସମୟଗୁଡ଼ାକ ଅସନ୍ତୋଷ ସମୟର ଆବଶ୍ୟକତା ସମ୍ବନ୍ଧରେ ପୂର୍ଣ୍ଣ ବିବେକ ସହିତ ସଚେତନ ହୋଇ ରହିଥାଆନ୍ତି । ଦାଣ୍ଡରେ କୌଣସି କ୍ଷୋଭର ସୂତ୍ରପାତ ହେବାମାତ୍ରକେ ସେମାନେ ତାହାକୁ ବିକ୍ଷୋଭରେ ପରିଣତ କରିବା ମତଲବରେ ଅନ୍ଧାରକୁ ବାହାରି ଆସନ୍ତି ! ହରିବୋଲ ଦେବାଲାଗି ଗାଡ଼ି ଗାଡ଼ି ଟେକାପଥର ମହଜୁଦ ହୋଇ ରହିଥାଏ । ତେଣୁ ବହୁବର୍ଣ୍ଣ ହୋଇ ବିକ୍ଷୋଭ ଚାଲେ । ବିବୃତ୍ତି ଦିଆଯାଏ । ମଣ୍ଡଳ ଓ ତାଙ୍କ ରିପୋର୍ଟ କୁଆଡ଼େ ପାସୋର ଯାଏ । ଏହି ମଉକାରେ ଯଦି ପୂରା ଭାଡ଼ିଟା ଭାଙ୍ଗି ଦିଆଯାଇ ପାରନ୍ତା ତେବେ ଖଣ୍ଡମଣ୍ଡଳ ଜୟକରି ହୁଅନ୍ତା ଓ ପୁଣି ଉଆସରେ ରହିହୁଅନ୍ତା ବୋଲି ବାବୁମାନେ ହାତରେ ହାତମୋଜା ପିନ୍ଧି ମୁହଁରେ କଳାକନା ଗୁଡ଼ାଇ କୁରୁକ୍ଷେତ୍ରକୁ ବାହାରି ପଡ଼ନ୍ତି ।

୧୭/୧୧/୯୦

# ଆଗ ଭଙ୍ଗାରୁଜା, ତା'ପରେ ଚିନ୍ତା

ମଣ୍ଡଳ କମିଶନର ରିପୋର୍ଟ ବିରୋଧରେ ପ୍ରତିବାଦର ଘନଘଟା ଲାଗିଥିବା ସମୟରେ କେତେ ଭଙ୍ଗାରୁଜା ହେଲା, ପୋଡ଼ାଜଳା ହେଲା, ମଣିଷମାନେ ନିତାନ୍ତ ବର୍ବର ହେବା ଲାଗି ସାହାଣ ମେଲା କରିଦେଲେ । ଆଇନ ଓ ବେଆଇନ ଉଭୟେ ପ୍ରବଳ ହେଲେ, ଉଭୟେ ବାଘମୁହାଁ ହେଲେ । ରାସ୍ତାଘାଟ ସବୁ ବନ୍ଦ ହୋଇଗଲା, ବିଲୁଆଙ୍କ

ପଛରେ ବିଲୁଆ ଗୋଡ଼େଇଲେ । ଏମିତି ଦିନାକେତେ ଚାଲିବା ପରେ କ୍ରମେ ସବୁ ଶୀତଳ ହୋଇ ଆସିଲା । ପୋଲିସ ଶୀତଳ ହେଲା, ଲୁଣି କରି ପୃଥିବୀଟା ଯାକ ନିକ୍ଷତ୍ରି କରିବାକୁ ବାହାରିଥିବା ଫାର୍ଶାଧାରୀମାନେ ବି ଶୀତଳ ହୋଇଗଲେ ।

ତାପରେ ସଭାସମିତି ହେଲା । ମଣ୍ଡଳ କମିଶନର ସଦର ଓ ମଫସଲ ବିଷୟରେ ଗମ୍ଭୀର ଆଲୋଚନାମାନ ହେଲା । ବିଜ୍ଞମାନେ ବକ୍ତୃତା ଦେଲେ, ବିଜ୍ଞମାନେ ଶୁଣିଲେ । ଚିନ୍ତା କଲେ, ବିଚାର କଲେ । ବିଚାର ଦ୍ୱାରା ହିଁ ଗଣତନ୍ତ୍ରରେ ସବୁକିଛି କରାଯିବା ଉଚିତ ବୋଲି ପବନକୁ ପରାମର୍ଶ ଦିଆଗଲା । ଦଶହରାରେ ଆଗ ଦେବୀପୂଜା ହୁଏ. ତାପରେ ଦେବୀମାନଙ୍କୁ ବିସର୍ଜନ ଦିଆଯାଏ । ମୋତେ ଲାଗିଲା, ମଣ୍ଡଳ କମିଶନର ରିପୋର୍ଟ ବିଷୟରେ ପ୍ରତିବାଦ କରିବାର କ୍ଷେତ୍ରରେ ସତେପେଯରି ଆଗ ବିସର୍ଜନ ହେଲା, ତା'ପରେ ସମସ୍ତେ ପର୍ବ ପାଳିବାକୁ ଓ ପୂଜା କରିବାକୁ କକ୍ଷ ମଧ୍ୟରେ ସମବେତ ହେବାକୁ ଆସିଲେ । ଏମାନେ ଆଗ ପରସ୍ପରର ହାତଗୋଡ଼ ଚୂନା କଲେ, ପରସ୍ପରର ଘରେ ନିଆଁ ଲଗାଇଦେଲେ, କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ କଲେ, ପୂର୍ଣ୍ଣ ଉତ୍ତେଜିତମାନଙ୍କର ନିର୍ମମତା ସହିତ ନଷ୍ଟ କଲେ । ପରସ୍ପରର ମାଡ଼ରେ ସମସ୍ତେ ଶବ ହେଲେ ଏବଂ ତା'ପରେ ଶବ ହୋଇ ସଭାଘରକୁ ଚିନ୍ତା କରିବାକୁ ଆସିଲେ । ଏମାନେ ଭଙ୍ଗାରୁଜା, ଜଳାପୋଡ଼ା ବା ପରସ୍ପରର ପଥର ପକାଇବା ବିଷୟରେ ଆଦୌ କୌଣସି ଆଲୋଚନା କଲେନାହିଁ । ସେମାନେ ମଣ୍ଡଳ କମିଶନ ରିପୋର୍ଟର ସୁପାରିଶଗୁଡ଼ିକ ବିଷୟରେ ଗମ୍ଭୀର ଭାବରେ ଆଲୋଚନା କଲେ, ଚିନ୍ତା କଲେ ।

ବିଜ୍ଞ ବକ୍ତାମାନେ ମଧ୍ୟ ସତେଅବା ମଲ୍ଲମାନଙ୍କ ମୁତାବକ ତିଆରି ହୋଇ ଆସିଥିଲେ । ବିଜ୍ଞ ଓ ସଜ୍ଜନମାନେ ସଚରାଚର ଯାହା କରନ୍ତି, ଆମ ତିହର ଏମାନେ ମଧ୍ୟ ଠିକ୍ ତାହାହିଁ କଲେ । ଆମେ ଆଗ ଚିନ୍ତା କରିଥାନ୍ତେ । ଆଲୋଚନା କରିଥାନ୍ତେ, ହୁଏତ ତା'ପରେ ଆଉ ଦଙ୍ଗାହାଙ୍ଗାମା କରିବାର ଆଦୌ କୌଣସି ପ୍ରୟୋଜନ ହିଁ ହୋଇନଥାନ୍ତା ବୋଲି ବକ୍ତାମାନେ କେହିହେଲେ କହିଲେ ନାହିଁ । ଦଙ୍ଗାବେଳେ, ପୋଡ଼ାଜଳା ବେଳେ, ମୁଖାଲଗା ପାପିଷ୍ଠମାନେ ଏ ମୁହଁରେ ବିବୃତି ଦେଇ ସେ ମୁହଁରେ ଭଙ୍ଗାରୁଜାଗୁଡ଼ିକର ପରିଚାଳନା କରୁଥିବା ସମୟରେ ଆମ ଦେଶର ବିଜ୍ଞ ଓ ସଜ୍ଜନମାନେ କେଉଁଠାରେ ଥାଆନ୍ତି କିଏ ଜାଣେ ? ସେମାନେ ଚୁପ୍ ହୋଇ ଘରେ ବସିଥାନ୍ତି, ଦେଶରେ ଘୋର ଦୁର୍ଦ୍ଦିନ ପଡ଼ିଛି ବୋଲି ବଡ଼ ଦୁଃଖରେ କୃଷ୍ଣଙ୍କୁ ଡାକୁଥାନ୍ତି, ମାତ୍ର ଆଖି ଆଗରେ ଦୁର୍ବୃତ୍ତି ଓ ଦୁର୍ବୃତ୍ତମାନଙ୍କୁ ଦେଖି ମଧ୍ୟ ପାଟି ଫିଟାଇବାକୁ ସାହସ କରନ୍ତି

ନାହିଁ । ଏଣୁ ବାଉଁଶ ଓ ତେଣୁ ବାଉଁଶ ଦେଖାଇ ନିଶା ଖାଇ ମହଜ୍ଜନମାନଙ୍କଠାରୁ ବଳ ପାଇ ପରସ୍ପରର ସମ୍ମୁଖୀନ ହୋଇ ଯାବତୀୟ ନାଗରିକବୃତ୍ତିକୁ ଗିଳି ପକାଇବାରେ ଲାଗିଥିବା ମଣିଷମାନଙ୍କ ମଝିରେ ସେମାନେ ଯାଇ ଠିଆ ହେବାର କୌଣସି ପ୍ରଶ୍ନ ହିଁ ଉଠୁନାହିଁ । ଦେଶରେ ବହୁ ସମସ୍ୟା ସମାଧାନ ହୁଏତ ସେହିଭଳି ଏକ ସାହସିକ ପଦକ୍ଷେପ ଲାଗି ଅପେକ୍ଷା କରି ରହିଛି ।

ଆଗ ଭଙ୍ଗାରୁଜା ହେଉଛି, ତା'ପରେ ସମସ୍ତେ ଯୋଡ଼ ପିନ୍ଧି ସଭାଘରେ ଚିନ୍ତା ଓ ଆଲୋଚନା କରିବାକୁ ଆସୁଛନ୍ତି । ଏଇଟା ସତକୁ ସତ ଭାରି ଅସ୍ୱାଭାବିକ ବୋଲି ମନେ ହେଉଛି । ମନେ ହେଉଛି, ଚିନ୍ତା ଓ ଆଲୋଚନାରେ ଅସଲ ବିଶ୍ୱାସ କାହାରି ନାହିଁ । ମଣିଷର ଭିତରେ ମଧ୍ୟ ଆଗ ବିଚାର କରି ତା'ପରେ ଯାଇ ଯାହାକିଛି କରିବାର ଯେଉଁ ସ୍ୱାଭାବିକ ବୃତ୍ତିଟି ରହିବା ଉଚିତ, ଆମ ଦେଶର ସାଧାରଣ ଜୀବନରୁ ସେଇଟିକୁ ଯେପରି କ୍ରମଶଃ ବହିଷ୍କୃତ କରି ଦିଆଗଲାଣି । ଆମ ଭିତରେ ଗୁଣ୍ଡାଟା ଏତେ ପ୍ରବଳ ହେଲାଣି ଯେ ବିବେକ ଓ ବିଚାର ତା'ଡ଼ରରେ ତା' ଆଖିକୁ ଏଡ଼ାଇ କବାଟ କିଳି ବସିଛି; ଛାତ୍ର, ଶିକ୍ଷକ, ବଡ଼ନେତା, ସାନ ନେତା, ଚୋର, ପୋଲିସ୍, ଭୀମ, ଅର୍ଜୁନ, ଦୁର୍ଯ୍ୟୋଧନ, ଦୁଃଶାସନ ସମସ୍ତେ ସତେଅବା ଆପଣା ଭିତରର ଗୁଣ୍ଡାଟାର କବଳରେ ପଡ଼ିଯାଇ ଉପାୟାନ୍ତର ନଦେଖି ସେହି ଗୁଣ୍ଡାଟା ପାଖରୁ ଯାଇ ଅଭୟ ମାଗିଲେଣି । ସମ୍ଭବତଃ ସେଇଥିଲାଗି ଦେଶରେ ଯାହା ସବୁ କାଣ୍ଡ ଘଟିବାର ଘଟୁଛି । ଅସଲ ଭରସା ସେହି ଗୁଣ୍ଡାଟା ଉପରେ, ଝିକି ପକାଇବା ଉପରେ । କେବଳ ନିୟମରକ୍ଷା ନିମନ୍ତେ ଚିନ୍ତା ଓ ଆଲୋଚନା ।

ଏହାର ସମାଧାନ କେବେ କେଉଁଭଳି ହୋଇ ପାରିବ ? ଭିତରେ ଗୁଣ୍ଡାଟା ଉପରେ ବିଶ୍ୱାସ ରଖି ଉପରେ ଶିକ୍ଷାରେ, ଶାସନରେ ଓ ରାଜନୀତିରେ ଅନୁରୂପ ପୋଷାକ ପିନ୍ଧି ବାହାରିଥିବା ଦୁର୍ବଳମାନଙ୍କ ଦ୍ୱାରା କୌଣସି ସମାଧାନ ହେବ ନାହିଁ । ଆମ ଭିତରୁ ଯେଉଁମାନେ ଗୁଣ୍ଡାମାନଙ୍କୁ ଡ଼ରୁ ନଥିବେ, ନିଜ ଭିତରେ ଓ ନିଜର ବାହାରେ କେଉଁଠିହେଲେ ଡ଼ରୁ ନଥିବେ, ଯୋଉମାନେ ପଇସା ପାଖରେ, କ୍ଷମତା ପାଖରେ ଏବଂ ସୁବିଧାବାଦ ପାଖରେ ମୁଣ୍ଡ ବିକି ଦେଉନଥିବେ, ସେହିଭଳି ଲୋକମାନେ ଏକାଠି ହେଲେ ହୁଏତ ଏକ ସମାଧାନ ସମ୍ଭବ କରି ପାରିବେ । ସେମାନେ କେବଳ ତଥାକଥିତ ଅଶାନ୍ତି ସମୟରେ ଶାନ୍ତି କମିଟି ଗଢ଼ି ଯଜମାନୀ କରିବାକୁ ମନ କରୁନଥିବେ । ସେମାନେ ଅଶାନ୍ତିର ବିଶ୍ଳେଷଣ କରି, ଅଶାନ୍ତିର ସମ୍ମୁଖୀନ ହୋଇ ତାହାରି ଭିତରୁ ଅପେକ୍ଷମାଣ ଶାନ୍ତିର ଉପାଦାନଗୁଡ଼ିକୁ ସନ୍ଧାନ କରି ପାରୁଥିବେ । ସ୍ୱାଧୀନ ଭାରତକୁ ଭୋଗ କରିବେ ବୋଲି ଯେଉଁମାନେ ଭୀରୁ

ହୋଇ ବସିଛନ୍ତି, ସେମାନେ ତାହା କରି ପାରିବେ ନାହିଁ । ଆଦୌ କୌଣସି ରାଜନୀତିକ ମୂଳ ଅଥବା ଭବିଷ୍ୟଚିତ୍ର ନଥାଇ ମଧ୍ୟ ଯୋଉମାନେ ରାଜନୀତି ଭିତରେ ବୋଇତ ନେଇ ବଣିଜ କରୁଛନ୍ତି, ସେମାନେ ବି କୌଣସି ବାଟ ଦେଖାଇ ପାରିବେ ନାହିଁ ।

୨୪/୧୧/୯୦

# ଯନ୍ତ୍ର କିଏ ଯନ୍ତ୍ରୀ କିଏ ?

ସଭାଟିଏ କର, ମନ୍ତ୍ରୀ ଗୋଟିଏ ଦିଓଟି ନିଶ୍ଚୟ ଆସିବେ । ଯେତେ ମନରେ ପାଞ୍ଚୁଥିବ ଯେ ସାହିତ୍ୟସଭାକୁ ଯିବି, କେବଳ ସାହିତ୍ୟ ବିଷୟରେ ପାଞ୍ଚପଦ ଶୁଣିବି, ସେଠାରେ କୃତ୍ରିମତା ନଥିବ, ଅର୍ଥାତ୍ ଅସାହିତ୍ୟକତା ନଥିବ, କୌଣସି ମିଛ ଫେରଗୁଡ଼ାକ ଲମ୍ବି ନଥିବ କିମ୍ବା ଅବର୍ଜିଆ ଭାବରେ କୌଣସି ଫେରକୁ ଟେକି ଧରାହେଉ ନଥିବ । ମାତ୍ର ସଭାକୁ ଗଲେ ଦେଖିବ ଦୁଇଜଣ ଜଣେ ନିଶ୍ଚୟ ଆସିଥିବେ ଓ ଠାକୁରଙ୍କ ପରି ବିଜେ ହୋଇଥିବେ ଓ ଠାକୁରଙ୍କ ପରି ଆଦୌ କିଛି ଜାଣି ନଥିଲେ ମଧ୍ୟ ବନାଇ ଯୋଖି ରାଇଜଯାକର କଥା ଓ ଅକଥା କହୁଥିବେ । ଶୁଣି ମନେ ହେଉଥିବ, ସେମାନେ ଯେପରି ପଞ୍ଚମଶ୍ରେଣୀ ବା ସପ୍ତମଶ୍ରେଣୀ ପରେ ନିଜର ବହିଗୁଡ଼ାକୁ ମୋଟେ ଖୋଲିନାହାନ୍ତି । ତେଣୁ, ଖଲେଇ ଖଲେଇ ଯାହା ଆସୁଛି କହିବାରେ ଲାଗିଛନ୍ତି ଏବଂ ସିଧା ଯେତେବେଳେ ସିଂହାସନରୁ ସଭାଗୃହକୁ ଆସିଛନ୍ତି, ତୁମେ ତାଙ୍କର କଥାଗୁଡ଼ିକୁ ଅଲବତ ଶୁଣିବ । ନଶୁଣି ଗତି ନାହିଁ ।

ଏହି ରଜାମାନଙ୍କୁ ଡାକିବା ଲାଗି କିଏ କାହିଁକି ମନ କରନ୍ତି କେଜାଣି ? ଯେତେ ଗଉରବ ସହକାରେ ଏମାନେ ଆସି ସଭାରେ ବସିଥିଲେ ମଧ୍ୟ ଏମାନଙ୍କୁ ଭିତରୁ ଅନାଇ ଦେଖି ପାରିଲେ ଏମାନେ ସତେଅବା ବାପା-ମାଆ-ଛେଉଣ୍ଡ ପରି ଦେଖା ଯାଉଥାନ୍ତି । ବେଳେବେଳେ ଭାରି ନିରୀହ ଦିଶନ୍ତି; ଯୋଉ ଅବସରରେ ସେମାନଙ୍କୁ ଡକାଯାଇଛି, ସେମାନେ ସେହି ଅବସରରେ ଆଦୌ କୌଣସି ଧାର ଧରନ୍ତିନାହିଁ, ତଥାପି – ଯେ ସେମାନଙ୍କୁ କାହିଁକି ଏତେଗୁଡ଼ାଏ ସମ୍ମାନ ଦେଖାହୋଇ ଡକାଯାଇଛି, ସେକଥା ସେମାନେ ସତେଯେପରି ନିଜେ ମଧ୍ୟ ବୁଝି ପାରୁନାହାନ୍ତି । ତେଣୁ କେବଳ ବକା ବକା ହୋଇ ବହେ ନିଜ ଆଡ଼କୁ ଅନାଉ ଥାଆନ୍ତି ତ ଆଉ ବହେ ସଭାର ଦେଖଣାହାରିମାନଙ୍କ ଆଡ଼କୁ ଅନାଉଥାନ୍ତି । ତାଙ୍କ ବିବେକ ନାମକ ମାହୁନ୍ତ ଯେତେବେଳେ ଥାଇ ଥାଇ ଅଙ୍କୁଶ ମାରି ଦେଉଥାଏ, ସେମାନେ ସେତେବେଳେ ଚାଉଁକିନା ବୁଝିପାରନ୍ତି ଯେ ଲୋକେ ପ୍ରକୃତରେ ସେମାନଙ୍କୁ ଡାକିନାହାନ୍ତି, ସେମାନଙ୍କର ଚଉକିଟାକୁ ଡାକିଛନ୍ତି; ସେମାନଙ୍କର ଚଉକିଟା

ସକାଶେ ଯାହା ସେମାନଙ୍କୁ ଲୋଡ଼ା ପଡ଼ିଛି । ଏକଥା ବୁଝି ସେମାନେ ଭାରି ଦୁଃଖ ପାଆନ୍ତି ।

ଡାକିବାବାଲାମାନେ କ'ଣ ବିଚାରି ସେମାନଙ୍କୁ ଅମୁକ ବା ସମୁକ କରି ସଭାକୁ ଡାକି ଆଣିଥାନ୍ତି ? ସେମାନେ ସତକୁ ସତ ସାହିତ୍ୟ ଚାହୁଁଥାନ୍ତି ନା ଆଉ କିଛି ଚାହୁଁଥାଆନ୍ତି ? ଏକଥା ସତ ଯେ ସରକାରଙ୍କର ସିରସ୍ତାରେ ସଂସ୍କୃତି ଓ ସାହିତ୍ୟ ଲାଗି ଗୋଟିଏ ଗୋଟିଏ ଅଧବଖରି ରହିଛି । ସେଠି ଟଙ୍କା ଅଛି । ଢାକଢ଼ମକ ନହେଲେ ସାହିତ୍ୟ ହୁଏନାହିଁ ବୋଲି ଯେଉଁମାନଙ୍କର ଏକ ରକ୍ତଗତ ବା ଅଭ୍ୟାସଗତ ଅନ୍ଧବିଶ୍ୱାସ ରହିଛି, ସେମାନଙ୍କର ସବାଆଗ ଟଙ୍କା ଦରକାର ହୁଏ । ଟଙ୍କା ଦରକାର ହୁଏ ବୋଲି ସେମାନେ ସଙ୍ଗଠନଟିଏ ଗଢ଼ିଥାନ୍ତି । ବା ଖଟୁଲିଟିଏ ଥାପିଥାନ୍ତି । ସେଇମାନେ ମଉକା ବାହାର କରି ମାଲିକମାନଙ୍କ ପାଖକୁ ଯାଆନ୍ତି । ବନ୍ଧୁ ମଣ୍ଡନରେ ସେମାନଙ୍କୁ ଆଣି ସଭାରେ ଭର୍ତ୍ତା ଓ କର୍ତ୍ତା କରି ବସାନ୍ତି । ସେମାନେ ଯାହା କହିଲେ ବି ଭଲ ଲାଗେ, ସେମାନଙ୍କର ଉପସ୍ଥିତି ହିଁ କୃପାକଟାକ୍ଷ ଲାଭ କରିବା ଲାଗି ଯଥେଷ୍ଟ ହୁଏ ।

ସାହିତ୍ୟ ଓ ସଂସ୍କୃତି ଭିତରକୁ, ଏହିସବୁ ନାମରେ ଡ଼କା ଯାଉଥିବା ସଭାମାନଙ୍କୁ ରଜା ଓ ମନ୍ତ୍ରୀମାନେ ନଆସନ୍ତୁ ବୋଲି ଏଠାରେ ଆଦୌ କୁହାଯାଉ ନାହିଁ । ସେମାନେ ଆସନ୍ତୁ, ଅଲବତ ଆସନ୍ତୁ, ମାତ୍ର ଗୁଣଗ୍ରାହୀ ବ୍ୟକ୍ତି ହିସାବରେ ଆସନ୍ତୁ, ଶ୍ରୋତା ହୋଇ ଆସନ୍ତୁ । ସେମାନେ ଶ୍ରୋତାଙ୍କ ଭିତରେ ବସନ୍ତୁ, ଶୁଣନ୍ତୁ । ସେମାନଙ୍କ ଚଉକୀ ବ୍ୟତୀତ ସେମାନଙ୍କର ଯେ ଅନ୍ୟ ଏକ ପରିଚୟ ରହିଛି, ଏକ ଚଉକୀ ଅପେକ୍ଷା ଜଣେ ଜଣେ ବ୍ୟକ୍ତି ହିସାବରେ ସେମାନଙ୍କର ମହତ୍ତ୍ୱ ଓ ଅଧିକାର ଯେ ଅନେକ ଅଧିକ, ସେମାନେ ସେକଥା ହୃଦୟଙ୍ଗମ କରନ୍ତୁ, ସମସ୍ତଙ୍କର ଯଥାର୍ଥ ସମ୍ମାନଭାଜନ ହୁଅନ୍ତୁ । ତେବେ ସେମାନଙ୍କର ସମ୍ମାନ ପ୍ରକୃତରେ ବଢ଼ିବ, ମୁଣ୍ଡରେ ପରଗୁଡ଼ାକ ଖୋସିନଥିବା ସମୟରେ ମଧ୍ୟ ଲୋକେ ତାଙ୍କୁ ତଥାପି ଲୋଡ଼ିବେ, ପାଖରେ ବସାଇବେ, ତାମ୍ବୁଲ ଯାଚିବେ ।

ସାମୟିକ ଦୁର୍ବିପାକରେ ପଡ଼ି ସେମାନେ ଆସନରୁ ଅପସରି ଯିବା ମାତ୍ରକେ ଦାଣ୍ଡଯାକ ସମସ୍ତେ ବର୍ତ୍ତମାନ ସେମାନଙ୍କୁ ଯେପରି ନରଖର ଭାବରେ ଫୋପାଡ଼ି ଦେଉଛନ୍ତି, ଆପଣାର ଅସଲ କେନ୍ଦ୍ରଟିରୁ ଜୀବନ ବଞ୍ଚି ଶିଖିଲେ ଏବଂ ଚଉକୀଟାକୁ ଗୌଣ କରି ନିଜର ମେରୁଦଣ୍ଡଟିକୁ ମୁଖ୍ୟ ଓ ମୀମାଂସକ କରି ଚିହ୍ନିଲେ, ସେମାନଙ୍କୁ ଆଉ ମୋଟେ ସେହି ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ନ୍ତାନାହିଁ । ଅଭିନୟରେ ଚାଟୁକାରମାନଙ୍କର ସଭାରେ ଅସାଧାରଣ ହୋଇ ବସି ନିଜର ସ୍ୱାଭାବିକ ସୀମାଗୁଡ଼ିକୁ ଭୁଲି ଲୋକହସା ହେବା ଅପେକ୍ଷା ଏକାନ୍ତ ସାଧାରଣ ମଣିଷଟିଏ ପରି ନିଜ ଗୁଣରେ ନିଜେ ପରିଚିତ ହେବା ଓ ଆପଣାର

ଦୁଇଗୋଡ଼ ଉପରେ ଅଧିକ ନିର୍ଭର କରି ବାଟ ଚାଲିବା ଯେ ଅନେକ ଅଧିକ ସମ୍ମାନଜନକ, ସେମାନେ ସେକଥାଟିକୁ ସେତେବେଳେ ଅବଶ୍ୟ ଉପଲବ୍ଧ କରନ୍ତେ । ଉପଲବ୍ଧି କରି ପ୍ରକୃତରେ ସୁଖୀ ହୁଅନ୍ତେ । ଏବଂ, ସାହିତ୍ୟ, ସଂସ୍କୃତି ଓ ଆହୁରି କେତେସବୁର ନାମରେ ସଙ୍ଗଠନସବୁ ଗଢ଼ି ହେଉଥିବା ତାମସାଗୁଡ଼ାକରୁ ମଧ୍ୟ ବିଚରା କାଳ ରକ୍ଷା ପାଇଯାଆନ୍ତା । ସାହିତ୍ୟର ଲାଜ ରହନ୍ତା, ଅସଲ ପରିମଳମାନେ ଏହି ସାମନ୍ତବାଦୀ ପ୍ରଦୂଷଣ ଓ ପ୍ରକୁପନର କବଳରୁ ଉଧୁରିଆସି ପାରନ୍ତେ । ଭୀରୁମାନଙ୍କର ଦୌରାତ୍ମ୍ୟ ଦୂର ହୁଅନ୍ତା । ତୋଷମଦକାରୀମାନେ ଆଉ କରିତ୍‌କର୍ମୀ ହୋଇ ମୁଦୁସୁଳୀର ବେଶ ପିନ୍ଧି ବାହାରନ୍ତେ ନାହିଁ । ବାହାରିବା ମାତ୍ରକେ ଲୋକହସା ହୁଅନ୍ତେ, ଧରାପଡ଼ି ଯାଆନ୍ତେ । ନାକୋଇ ହୋଇ ଲୁଚି ରହନ୍ତେ । ସଭାଘର ମଧ୍ୟ ତାହାର ସମ୍ମାନ ଫେରିପାଆନ୍ତା । କାନ୍ଥଗୁଡ଼ାକ ଆଉ ମୋଟେ ତୋଷାମଦ ଶୁଣିବାକୁ ବାଧ ହୁଅନ୍ତେ ନାହିଁ । ଆମେ ବାରନାରୀ ହେବାକୁ ମନ ନକଲେ ଏସବୁ ହୋଇପାରନ୍ତା ।

୧/୧୨/୯୦

# ସରକାରୀ ପଣ୍ଡାତନ୍ତ୍ର

ଠାକୁରଙ୍କର ହାତଗୋଡ଼ ନ ଥାଏ, ମାତ୍ର ପଣ୍ଡାମାନେ ଥାଆନ୍ତି । ପଣ୍ଡାମାନେ ସଚଳ, ଠାକୁର ସବୁବେଳେ ଅଚଳ । ଠିକ୍ ସେହିପରି ସରକାର ମୋଟେ ଚାଲୁନଥାଉ ପଛକେ, ଅମଲାମାନେ, ସାନରୁ ଆରମ୍ଭ କରି ବଡ଼ ଯାଏ ହାକିମମାନେ ସବୁବେଳେ ସଚଳ । ସରକାର ନାମକ ଘର ଭିତରେ ପଶିଗଲେ ସରକାର ବୋଲି ହୁଏତ ଆଦୌ କିଛି ଦୃଷ୍ଟିଗୋଚର ନହେବ ପଛକେ, ମାତ୍ର ପଣ୍ଡାମାନଙ୍କୁ ଦେଖି ତୁମର ଆଖି ଖୋସି ହୋଇ ଯିବ । ତୁମେ ଏହିଭଳି ବିଶ୍ୱାସ କରିବା ଲାଗି ନିଜ ଆଡୁ ନିଜକୁ ପ୍ରବର୍ତ୍ତାଇବାକୁ ଆରମ୍ଭ କରିବ ଯେ ସରକାର ବୋଲି କିଛି ଦିଶୁ ନଥିଲେ ଅଥବା ଅନୁଭବ କରିହେଉ ନଥିଲେ ମଧ୍ୟ ସରକାର ଅବଶ୍ୟ ଅଛି ଓ ପୃଥିବୀକୁ ଆତଯାତ କରୁଛି । ନହେଲେ ଏହି ପଣ୍ଡାମାନେ କ'ଣ ମିଛଟାରେ ରହିଥାନ୍ତେ । ଯଥାସାଧ ଚେଷ୍ଟା କରି ଆପଣାକୁ ସରଳବିଶ୍ୱାସୀ କରିବାକୁ ପଡ଼ିବ । ସରକାରଙ୍କ ଘରେ କେତେ ବିଭାଗ, କେତେ ଉପବିଭାଗ, ନୂଆ ନାଆଁରେ କେତେ ପୁରୁଣା ଗୁହାଳ ଓ ପୁରୁଣା ନାମରେ କେତେ ନୂଆ ଗୁହାଳ । ପଣ୍ଡା ମାଳ ମାଳ, ବିଭାଗ ଅନୁସାରେ ପଣ୍ଡାମାନଙ୍କର ଧାଡ଼ି ଲାଗିଛି । ସରକାରୀ ଦପ୍ତରଗୁଡାକ ସତେଅବା ଆଗ କାଳର ରଜାନଅର ପରି ଦିଶୁଛି । ପୁରୁଷୋତ୍ତମ କ୍ଷେତ୍ରରେ ଯେପରି ଠାକୁରଙ୍କ ଦର୍ଶନ ହେବା ପୂର୍ବରୁ ପଣ୍ଡାମାନଙ୍କର ମେଳିଟାହିଁ ଆଗ ଆଖିରେ ପଡ଼ିଯାଏ,

ସରକାରୀ ଶ୍ରୀକ୍ଷେତ୍ରରେ ମଧ୍ୟ ଠିକ୍ ସେହିପରି କାମ ହେଉଥାଉ ବା ନହେଉଥାଉ, ପଣ୍ଡାମାନଙ୍କର ରାଜସିକ ଆର୍ଦ୍ଦୋଳିଗୁଡ଼ାକ ନିରନ୍ତର ଲାଗିରହିଥାଏ । କୋଡ଼ିଏ ବର୍ଷ ତଳେ ସରକାରଙ୍କର ଖବର ବୁଝିବା ଲାଗି ଯେତିକି ପଣ୍ଡା ରହିଥିଲେ, ଏବେ ହୁଏତ ତାହାର ଦଶଗୁଣ ଅଧିକ ପଣ୍ଡା ରହିଛନ୍ତି । ସେତେବେଳେ ଯେତିକି କାର୍ଯ୍ୟ ହେଉଥିଲା, ସତରେ କ'ଣ ବର୍ତ୍ତମାନ ତାହାର ଦଶଗୁଣ କାର୍ଯ୍ୟ ହେଉଛି ? ମାତ୍ର, ସେତେବେଳେ ପଣ୍ଡାଙ୍କ ଦରମା ବର୍ତ୍ତମାନ ଦଶଗୁଣ କି କୋଡ଼ିଏ ଗୁଣରେ ଆସି ପହଞ୍ଚିଲାଣି । ଦୃଶ୍ୟ ଅଦୃଶ୍ୟ ଉଭୟକୁ ମିଶାଇଲେ ପ୍ରକୃତ ସୁମାରିରେ ତାହା କେତେ ହେବ କେଜାଣି ?

କଳିଯୁଗ ପରି ସରକାରରେ ମଧ୍ୟ ସରକାର କହିଲେ ଶତକଡ଼ା ଶହେ ଅଂଶରେ ଏହି ପଣ୍ଡାମାନଙ୍କୁ ହିଁ ବୁଝାଉଛି । ଦରିଦ୍ର ଦେଶର ଶାସନ-ବିଧାତାଙ୍କର ଆପାର କୃପା ବଳରେ ଏହି ପଣ୍ଡାମାନଙ୍କର ହାତରେ ରହିଛି । କଲମ ଅଗରେ ଯେତେ ରହି ନାହିଁ, ଖିଆଲ ଅଗରେ ହୁଏତ ତା'ଠାରୁ ଅଧିକ ପରିମାଣରେ ରହିଛି । ପଣ୍ଡାମାନଙ୍କର ଭୋଗ-ଅଂଶଗୁଡ଼ାକ ଯେତିକି ପରିମାଣରେ ବଢୁଛି, କାହିଁ ଦେଶର ଦୁରବସ୍ଥା ତାହାର ଦଶ ଭାଗରୁ ଭାଗେ ଅନୁପାତରେ ମଧ୍ୟ ଦୂର ହେଉ ନାହିଁ ତ ! ମଣିଷର ଏମାନଙ୍କ ଉପରେ ଭରସା ଅତ୍ୟନ୍ତ ଶୋଚନୀୟ ଭାବରେ କମି କମି ଯାଉଛି । ପଣ୍ଡାମାନଙ୍କର ସଂଖ୍ୟା ଓ ପଗାର ଯେତିକି ବୃଦ୍ଧି ପାଉଛି, ଏ ଦେଶରେ ପ୍ରକୃତରେ ଏତେ ଅଧିକସଂଖ୍ୟକ ପଣ୍ଡାଙ୍କର ଆବଶ୍ୟକତା ଅଛି କି ନାହିଁ ବୋଲି ନିଜକୁ ପଚାରିବାକୁ ମନ ହେଉଛି । ବାବୁମାନଙ୍କୁ ଅନାଇଦେବା ମାତ୍ରକେ ସବୁ ଯେପରି କୁହୁଡ଼ି କୁହୁଡ଼ି ଦେଖା ଯାଉଛି । ଏମାନେ ଆମକୁ ନେଇ କୋଉଠି ପହଞ୍ଚାଇବେ କେଜାଣି, ଆଦୌ କୌଣସି ଥାନରେ ନେଇ ପହଞ୍ଚାଇ ପାରିବେ କି ନାହିଁ କେଜାଣି ?

ପଣ୍ଡାମାନେ ସରକାରକୁ ସେହି ଚୋଳ ଅମଳରୁ ଭୋଗ କରି ଆସୁଛନ୍ତି । ଇଂରେଜମାନେ ସେକାଳରୁ ଏଦେଶ ଛାଡ଼ି ଚାଲି ଯାଇଥିଲେ ମଧ୍ୟ ପଣ୍ଡାମାନେ ଏବେ ମଧ୍ୟ ସେହି ପ୍ରାଚୀନ ଠାଣିଗୁଡ଼ାକରେ ନିଜକୁ କାବା କରି ସାଉଁଳେଇ ରଖିଛନ୍ତି । ସେଗୁଡ଼ାକରୁ ବାହାରି ଆସିବା ଲାଗି ଏମାନଙ୍କ ଅଣ୍ଟାରେ ତାକତ ନାହିଁ, ତାକତ ଥିଲେ ଇଚ୍ଛା ନାହିଁ । ଏମାନଙ୍କ ଲାଗି ଦେଶ ସତେଅବା ସ୍ୱାଧୀନ ହିଁ ହୋଇ ନାହିଁ । ଆପଣାର ଧୂର୍ତ୍ତ ପରିପାଟୀଗୁଡ଼ାକର ମାଧ୍ୟମରେ ଦେଶର ସାଧାରଣ ମଣିଷର ଭାଗ୍ୟକୁ ସେମାନେ କେଡ଼େ ଅନମନୀୟ ଭାବରେ ପରାଧୀନ କରି ରଖିଛନ୍ତି ! ପ୍ରଜାଙ୍କ ଲାଗି ସେମାନଙ୍କୁ ମୁତୟନ କରାଯାଇଛି ସିନା, ମାତ୍ର ସେମାନେ ପ୍ରଜାମାନଙ୍କର ଛାତି ଉପରେ ହାତୀ ଉପରେ ବସି ବାଟ ଚାଲୁଛନ୍ତି । ଉପରୁ ତଳଯାଏ ଦରବାର ମଣ୍ଡାଇ ବସିଛନ୍ତି । ଠାକୁରଙ୍କୁ ଉଦ୍ଧୁଆଳ କରି ରଖିଛନ୍ତି ।

ପଣ୍ଡାମାନେ ଧରି ନେଇଛନ୍ତି ଯେ, ଏହି ତନ୍ତ୍ର ସେମାନଙ୍କ ଲାଗି ଅନନ୍ତକାଳ ଲାଗି ରହିବ । ଭାରତବର୍ଷ ସ୍ୱାଧୀନ ହେବା ପରେ ପଣ୍ଡାତନ୍ତ୍ରରେ ଯେହେତୁ ସତକୁ ସତ ସେପରି କୌଣସି ପରିବର୍ତ୍ତନ ହୋଇନାହିଁ, ତାହାହିଁ ସେମାନଙ୍କୁ ଆହୁରି ଅଧିକରୁ ଅଧିକ ଜବର ହୋଇ ବସିବାଲାଗି ପ୍ରୋତ୍ସାହନ ଦେଇ ଆସିଛି । ଏହି ପଣ୍ଡାମାନଙ୍କର ଠାଣି ଦେଖି ହିଁ ଦେଶର ତରୁଣମାନେ ନିଷ୍ଠା ଓ ଉଦ୍ୟମଯୁକ୍ତ ମଣିଷଟିଏ ହେବା ଅପେକ୍ଷା ବଡ଼ ହୋଇ ପଣ୍ଡାଫଳରେ ମିଶିଯିବା ଲାଗି ଆପଣାର ସର୍ବୋଚ୍ଚ ଅଭିଳାଷ ରୂପେ ବାଛି ନେଉଛନ୍ତି । ଆମ ଦେଶର ନିର୍ବାଚିତ ରାଜାମାନେ ମଧ୍ୟ ଏହି ଅମଲାମାନଙ୍କୁ ଗୁରୁ ବୋଲି ମାନି ଗଲେଣି କି କ'ଣ କେଜାଣି, ଆସନରେ ବସିବାର ପ୍ରଥମ କେତେ ବର୍ଷ ଥୋରପାହାର ଟେକି ବହୁ ଗର୍ଜନତର୍ଜନ କରୁଥିଲେ ମଧ୍ୟ ସତେଅବା ପଣ୍ଡାମାନଙ୍କ ହାତରେ ଥିବା କୋଉ ଫୁଲଟିଏ ଶୁଂଘି ଭାରି ଚମତ୍କାର ପ୍ରକାରେ ବଶ ହୋଇଯାଉଛନ୍ତି । ତା'ପରେ ପଣ୍ଡାଙ୍କ ହାତରେ ଷାଠିଏ ପଉଟିର ରକ୍ଷଣାବେକ୍ଷଣକୁ ଛାଡ଼ି ଦେଉଛନ୍ତି । ଦେଶଟା ଯାକ ହରିଲୁଟ ଲଗାଇ ରଖିବାରେ ନିମିତ୍ତରୂପେ ସାହାଯ୍ୟ କରୁଛନ୍ତି । ଦେଶର ଭାଗ୍ୟ ବୋକାଙ୍କ ପରି ଅନାଇ ରହିଛି ।

ଏହି ତନ୍ତ୍ର କିଏ ଭାଙ୍ଗି ପାରିବ ? ଭକ୍ତ ହିଁ ଆଗ ଭଗବାନଙ୍କୁ ଦେଖେ, ତେଣୁ ପଣ୍ଡାମାନଙ୍କୁ ଦେଖି ତା'ର ଆଖି କଦାପି ଝଲସି ଯାଏନାହିଁ । ଯିଏ ଦେଶଟାକୁ ଆଗ ଦେଖିବ, ଦେଶଟାକୁ ନିଜ ଭିତରେ ଦେଖିବ, ଆଗ ନିଜ ଦରମାକୁ ନଦେଖି ନିଜର ଜୀବନରେ ଅନ୍ୟ ସଂକଳ୍ପଟିଏ କରି ପାରିବ, ସେଇ ଏ ତନ୍ତ୍ରକୁ ଭାଙ୍ଗି ଦେଇ ପାରିବ ।

୮/୧୨/୯୦

# ଦୋଷୀକୁ କୋଉଠି ଧରିବା ?

ରିଜର୍ଭେସନର ଝରକା ଖୋଲିବା ଆଗରୁ ଭିଡ଼ ଲାଗି ଯାଇଛି । ସବୁ ଝରକା ତୁଳନାରେ ଆମ ଝରକାର ଧାଡ଼ି ସବୁଠାରୁ ଅଧିକ ଲମ୍ବ । ବାବୁ ଆସି ଖିଡ଼ିକି ଖୋଲିବା ବେଳକୁ ପ୍ରାୟ ତିରିଶି ଯାଏ ମଣିଷ ଧାଡ଼ିରେ ଠିଆ ହୋଇଛନ୍ତି । ବାବୁ ପାଞ୍ଚଛଅ ଜଣଙ୍କୁ ଟିକେଟ ଦେଇ ସାରିବା ପରେ ଜଣେ ଭଦ୍ରଲୋକ ଆସି ପହଞ୍ଚିଲେ । ସିଏ ଧାଡ଼ିରେ ଛିଡ଼ା ହେଲେନାହିଁ । ସିଧା ଆଗକୁ ଚାଲିଗଲେ । ସବାଆଗ ଟିକେଟ ନେବା ଲାଗି ହାତଟାକୁ ଝରକା ଭିତରକୁ ବଢ଼ାଇ ଦେବାକୁ ଉଦ୍ୟମ କଲେ । ସେତେବେଳକୁ ଜଣେ ଭଦ୍ରଲୋକ ଟିକେଟ କାଟୁଥାନ୍ତି । ଧାଡ଼ିରେ ଥିବା ଅନ୍ୟମାନେ ଆପତ୍ତି କଲେ । ପଛରୁ ଜଣେ ଦୁଇଜଣ ବାହାରି ଆସି ଆଗ ଆବୋରି ଠିଆ ହୋଇଥିବା ବାବୁଙ୍କୁ ଅନ୍ୟମାନଙ୍କ ପରି

ଧାଡ଼ିରେ ଠିଆ ହେବାକୁ କହିଲେ । ମାତ୍ର ବାବୁ କ'ଣ କଥା ମାନିବାକୁ ଆସିଥିଲେ ? ସିଏ ତ ଏକାବେଳେକେ ଘରେ ପଶିଯିବାକୁ ଆସିଥିଲେ । ପାଟିରୁ ଭଣ ଭଣ ବାସନା ବାହାରୁ ଥାଏ, ଆଖି ଦୁଇଟା ନାଲି ଦିଶୁଥାଏ । ସକାଳ ପହରଟାରେ ଭାରି ଅବର୍ଜିଆ ଲାଗୁଥାଏ ।

ମଦୁଆ ବାବୁ କହିଲେ, ମୁଁ ପ୍ରଥମରୁ ଏଠାରେ ଛିଡ଼ା ହୋଇଥିଲି । ମଝିରେ ପାନ ଖାଇ ଚାଲିଯାଇଥିଲି । ତେଣୁ ମୁଁ ସବାଆଗ ଟିକେଟ ନେବି । ପଚାରୁନା, ଏଇ ବାବୁଙ୍କୁ ପଚାର, ମୁଁ କହିକରି ଯାଇଥିଲି କି ନାହିଁ, –ଟିକେଟ କିଣୁଥିବା ବାବୁଜଣଙ୍କୁ ହାତ ଦେଖାଇ ସିଏ ବାରବାର କହୁଥାଆନ୍ତି । ମାତ୍ର ଏ ବାବୁଜଣକ କିଛି କହୁନଥାନ୍ତି । ସେତେବେଳକୁ ବାହାରେ ବେଶ୍ ପାଟିଗୋଳ ଆରମ୍ଭ ହୋଇ ଯିବାରୁ ଝରକା ଭିତରୁ ଥିବା ସରକାରୀ ବାବୁ ମୁଣ୍ଡ ଟେକି ବାହାରକୁ ଅନାଇଲେ ଓ ଗୋଳ ଭିଆଇଥିବା ଲୋକଟିକୁ ଧାଡ଼ିରେ ଯାଇ ଛିଡ଼ା ହେବାକୁ କହିଲେ । ସିଏ ଯେ ଏହି ବ୍ୟକ୍ତିଟିକୁ ଭଲ କରି ଚିହ୍ନିଛନ୍ତି, ତାଙ୍କର ତାକୁ 'ତୁ' ସମ୍ବୋଧନରୁ ସେକଥା ସଂପୂର୍ଣ୍ଣ ସ୍ପଷ୍ଟ ହୋଇଯାଉଥିଲା । ଚିହ୍ନା ଚିହ୍ନାଙ୍କ ଭିତରେ ଆଖି ମିଳାମିଳି ହୋଇଗଲା । ରେଳବାବୁ କହିଲେ "ସବୁଦିନ କଥା ଅଲଗା, ଆଜି କିନ୍ତୁ ତୋତେ ମୁଁ ଆଦୌ ଟିକେଟ ଦେବିନାହିଁ । ଆଜି ଉପରିସ୍ଥ ଆହୁରି ବଡ଼ ବଡ଼ ବାବୁ ଷ୍ଟେସନ ପରିଦର୍ଶନରେ ଆସିଛନ୍ତି । ସେମାନେ ବର୍ତ୍ତମାନ ଷ୍ଟେସନ ଭିତରେ ଅଛନ୍ତି । ତେଣୁ ଆଜି ବେନିୟମ କାମ ମୁଁ କଦାପି କରିବିନାହିଁ । ତୋତେ ଧାଡ଼ିରେ ଠିଆ ହେବାକୁ ପଡ଼ିବ ।''

ଏଇଥିରୁ ଜଣାପଡ଼ିଗଲା ଯେ ଲୋକଟି ନିଜ ପାଇଁ ଟିକେଟ କରୁନାହିଁ । ସେ ସ୍ୱୟଂ ମାନ୍ଦ୍ରାଜ କି କଲିକତା ଆଦୌ କେଉଁଠିକି ଯିବନାହିଁ । ସିଏ କେଉଁଦିନ ହେଲେ କେଉଁଠିକୁ ଯାଏ ନାହିଁ । ମାତ୍ର ପ୍ରତ୍ୟେକ ଦିନ ପ୍ଲାଏ ଟିକେଟ କିଣେ । ବଣିଜ କରେ । ବିଚରା ତାହାରିଦ୍ୱାରା ଚଳେ । ଚିହ୍ନା ରେଳବାବୁଙ୍କ ମୁହଁରୁ ଏପରି କଥା ଶୁଣି ସିଏ ଆଉଥରେ ଭାଗ୍ୟ ପରୀକ୍ଷାକରି ପୁନର୍ବାର ଟିକେଟ କରୁଥିବା ବାବୁଙ୍କୁ ପଚାରିଲା ।

"ବାବୁ କହିଲ, ମୁଁ ପାନ ଖାଇବି ବୋଲି ତୁମକୁ କହି କରି ଯାଇ ନଥିଲି ?'' ଉତ୍ତର ଆସିଲା, "ମୋର ସେକଥା ମନେ ନାହିଁ । ମୁଁ କହି ପାରିବି ନାହିଁ ।'' ଏତିକିରେ ଆମ ନାଲିଆ ବାବୁଙ୍କର ମିଜାଜ ଗରମ ହୋଇ ଏକାବେଳେକେ ମଥାକୁ ଚଢ଼ିଗଲା । ତାପରେ ପାଟିକୁ ଯାହା ଆସିଲା, ଦେଶ କାଳ ଓ ପାତ୍ର ଭୁଲି ସେ ନିର୍ମଳ ଆର୍ଷ ପ୍ରୟୋଗ କରି କହିବାକୁ ଲାଗିଲେ । ଦୁଇ,ତିନି ଓ ଚାରିଅକ୍ଷରରେ ବିଶେଷ୍ୟ, ବିଶେଷଣ ଅଥବା କ୍ରିୟାପଦ ହୋଇ ବ୍ୟବହୃତ ହେଉଥିବା ଆମ ଛୋକାର

ଘରର ସିନ୍ଦୂକ ଭିତରେ ଯେତେ ଯାହା ଶବ୍ଦ ରହିଛି, ସବୁଗୁଡ଼ିକୁ ପଭଟି ରଖିଥିବା ପରି ସେ ଏକାବେଳେକେ ଗାଳି ପକାଇବାକୁ ଆରମ୍ଭ କଲେ । ତୂ' ତା ସମ୍ବୋଧନ କରି କହିଲେ ଯେ, ସିଏ ଆଗ ବାହାରକୁ ଆସନ୍ତୁ, ତାଙ୍କୁ ଦେଖି ନିଆଯିବ । ଏହି କଥାଟିକୁ ମଧ୍ୟ ସେ ଅଭିଧାନ-ବହିର୍ଭୂତ ଓ ତଥାପି ଅତ୍ୟନ୍ତ ସହଜବୋଧ କେତୋଟି ଶବ୍ଦରେ କହିଥିଲେ । ଅବଶ୍ୟ କଥାଟି ସେତେଯାଏ ଗଲାନାହିଁ । ଜଣେ ପୋଲିସ ସିପାହୀ ଆସି ପହଞ୍ଚି ଗଲେ ଓ ପୂରା ଗରମ ହୋଇଥିବା ବାବୁଙ୍କୁ କଅଁଳେଇ ସଅଁଳେଇ ଚିହ୍ନାଲୋକପରି ଅନ୍ୟତ୍ର ନେଇ ଚାଲିଗଲେ । ଧାଡ଼ିର କାର୍ଯ୍ୟ ପୁଣି ସ୍ୱାଭାବିକ ଅବସ୍ଥାକୁ ଚାଲିଆସିଲା । ମୁଁ ସେହି ଧାଡ଼ିରେ ଠିଆ ହୋଇ ଭାବୁଥିଲି, କୋଉ ଦୋଷୀକୁ ଆମେ କେଉଁଠି ଯାଇ ଧରିବା ? ଆଜି ସିନା ଉଚ୍ଚ ହାକିମମାନେ ପରିଦର୍ଶନରେ ଆସିଥିଲେ ବୋଲି ଏପରି ହେଲା, ଆସନ୍ତା କାଲି କ'ଣ ହେବ, ଗତକାଲି ବି କ'ଣ ହୋଇଥିବ ?

ଅସଲ ସମସ୍ୟାଟି ଆଦୌ ମଦ୍ୟପାନର ସମସ୍ୟା ନୁହେଁ, ଅସାମାଜିକତାର ବା ଆଇନ ଭାଙ୍ଗିବାର ସମସ୍ୟା ନୁହେଁ । ଅସଲ ସମସ୍ୟାଟି ହେଉଛି ଦାରିଦ୍ର୍ୟର ସମସ୍ୟା । ସମାଜର ପ୍ରାୟ ସବୁଠାରେ ଭୂତମାନେ ଆସି ପଶିଗଲେ ମଣିଷକୁ କାବୁ କରି ଯେଉଁ ହୀନତା ଓ ଦାରିଦ୍ର୍ୟ ଆସି ପଶିଯାଏ, ଏହା ହେଉଛି ତାହାରି ସମସ୍ୟା । ଏଥିରେ ମୁଁ ଜର୍ଜ ଫର୍ଣ୍ଣାଣ୍ଡିଜଙ୍କ ଠାରୁ ଜଗବନ୍ଧୁ ଦାସଙ୍କ ପର୍ଯ୍ୟନ୍ତ ଏକା କାହାକୁ ଦୋଷୀ କରି ପାରିବି ? ହୁଏତ ଆମେ ସମସ୍ତେ ଦୋଷୀ, କାରଣ ଆମେ ସମସ୍ତେ ଯେଝା ଯେଝା ସତର୍କତା ଭିତରେ ଏହି ଭୂତଗୁଡ଼ାକୁ ଆଣି କାନିରେ ବାନ୍ଧିଛୁ । ଏହି ଭୂତମାନଙ୍କ ଦ୍ୱାରା ଉପକୃତ ହେଉଛୁ ଏବଂ ବେଳେବେଳେ ଅସତର୍କ ହୋଇଗଲେ ଧରା ମଧ୍ୟ ପଡ଼ିଯାଉଛୁ । ଏହି ମଦ୍ୟପତା, ଏହି ଅସାମାଜିକତା, ଏହି ଦାରିଦ୍ର୍ୟକୁ ଦୂର କରିବା ପାଇଁ ଆମେ କ'ଣ ମଦର୍ ଟେରେସାମାନଙ୍କର ବଦାନ୍ୟତା ଲାଗି କାଳ କାଳ ଅପେକ୍ଷା କରିଥିବା ? ଏପରି ଏକ ସମାଜର ଜବର ହୋଇ ରହିବାରେ ସାହାଯ୍ୟ କରୁଥିବା, ଯେଉଁଥିରେ ଦାରିଦ୍ର୍ୟ, ଅସାମାଜିକତା, ମଦ୍ୟପତା ଓ ଉପେକ୍ଷା ଚିରସ୍ଥାୟୀ ହୋଇ ରହିଥିବେ ଓ ତେଣେ ଆମେ ଦୟାର୍ଦ୍ରହୃଦୟା ମଦର୍ ଟେରେସାମାନଙ୍କୁ ପୁରସ୍କାର ଦେଇ ସମ୍ମାନିତ କରୁଥିବା ? ଏହି ସମଗ୍ର ବ୍ୟାପାରଟିରେ ଏକ ବିଡ଼ମ୍ବନା କେଉଁଠି ନା କେଉଁଠି ଅବଶ୍ୟ ରହିଛି । ସେହି ବିଡ଼ମ୍ବନାଟି ପ୍ରକୃତରେ କ'ଣ ? ମୋ ନିଜ ଭିତରୁ ଓ ପରସ୍ପର ଭିତରୁ ସେହି ବିଡ଼ମ୍ବନାକୁ ଉପାଡ଼ି ବାହାର କରିଦେବାର ଉପାୟ କ'ଣ ସତକୁ ସତ କେଉଁଠି ହେଲେ ନାହିଁ ?

୧୫/୧୨/୯୦

# ଦୁର୍ବଳକୁ ସବଳ ରକ୍ଷା କରେ

ରଜାମାନଙ୍କ ଅମଳରେ ଯେଉଁସବୁ ଶାସ୍ତ୍ର ଲେଖା ଯାଇଥିଲା, ସେଥିରେ ରାଜା ହିଁ ପ୍ରଜାକୁ ରକ୍ଷା କରିବ ବୋଲି ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ସୂଚିତ କରି ଦିଆଯାଇ ଥିଲା। ପ୍ରଜା କଦାପି ନିଜକୁ ନିଜେ ରକ୍ଷା କରି ପାରିବ ନାହିଁ ବୋଲି ସେତେବେଳେ ହୁଏତ ପ୍ରଜାମାନେ ମଧ୍ୟ ସଚରାଚର ବିଶ୍ୱାସ କରୁଥିଲେ। ତେଣୁ ରାଜା ଅବଶ୍ୟମ୍ଭାବୀ ଏବଂ ଅପରିହାର୍ଯ୍ୟ ହୋଇ ରହିଥିଲେ। ଦୁର୍ବଳ ଯେପର୍ଯ୍ୟନ୍ତ ସବଳକୁ ହିଁ ତା'ର ରକ୍ଷାକର୍ତ୍ତା ବୋଲି ସ୍ୱୀକାର କରୁଥିବ, ସେପର୍ଯ୍ୟନ୍ତ ସବଳମାନେ ଅବଶ୍ୟ ଦୁର୍ବଳ ଉପରେ ଅତ୍ୟନ୍ତ ଦୁର୍ଦ୍ଦଣ୍ଡ ଭାବରେ ସବାର ହୋଇ ରହିଥିବେ।

ମଣିଷର ସବୁଯାକ ବଳ ମଣିଷର ବାହାରେ, ଏହି କ୍ଷୟକାରୀ ଅବିଶ୍ୱାସଟା ଅତୀତରେ ଅନେକ ସମୟରେ ଶାସ୍ତ୍ରବାକ୍ୟ ରୂପେ ମଣିଷକୁ ବହୁ ଉତ୍ପୀଡ଼ନ ଓ ବହୁ ଅନାବଶ୍ୟକ ଅଧସ୍ତନତା ସହ୍ୟ କରିବା ଲାଗି ଯୁଗେ ଯୁଗେ ଭାରି ବାଧ୍ୟ କରି ଆସିଛି। ଧର୍ମମାନଙ୍କରେ ଭଗବାନଙ୍କୁ ଦୁର୍ବଳର ବଳ ବୋଲି କୁହାଯାଇଛି, ବଳରାମ ବୋଲି ମଧ୍ୟ କୁହାଯାଇଛି। ମଣିଷର ଭିତରେ ଭଗବତ୍‌ଶକ୍ତି ରହିଛି ବୋଲି ଅନ୍ୟ ସତ୍ୟଟିକୁ ଅନୁଭବ କଲା ମାତ୍ରକେ ମଣିଷ ଆଉ ଦୁର୍ବଳ ହୋଇ ରହେନାହିଁ। ରାଜ୍ୟର, ସମାଜର ଶକ୍ତି ସବୁ ମଣିଷଙ୍କ ଭିତରେ; ମାତ୍ର କେତେଜଣ ଅଥବା କେତେଟା ଶ୍ରେଣୀଙ୍କ ଭିତରେ ନୁହେଁ, ଇତିହାସର ବହୁ ସନ୍ତାପ ଏବଂ ପ୍ରପୀଡ଼ନର ମଧ୍ୟ ଦେଇ ମଣିଷ ଯେଉଁ ଦିନଠାରୁ ତାହା ଉପଲବ୍ଧି କରିବାକୁ ଆରମ୍ଭ କରିଛି, ଗଣତନ୍ତ୍ରର ଜନ୍ମ ସେହି ଦିନଠାରୁ ହୋଇଛି। ଆଧୁନିକ ଇତିହାସ ହେଉଛି ମୁଖ୍ୟତଃ ଏହି ଗଣତନ୍ତ୍ରର ଇତିହାସ, ସବଳର ସକଳ ଦୁର୍ଦ୍ଦଣ୍ଡତାକୁ ଅତିକ୍ରମ କରି ଅସଲ ବଳଗୁଡ଼ିକୁ ନିଜ ଭିତରେ ତଥା ସଂଘଶକ୍ତି ଭିତରେ ଆବିଷ୍କାର କରିବାର ଇତିହାସ।

ତେଣୁ, 'ଦୁର୍ବଳକୁ ସବଳ ରକ୍ଷା କରେ' – ଏଇଟି ହେଉଛି ଏକ ଅପସାଂସ୍କୃତିକ କଥା। ସାନ ମାଛକୁ ବଡ଼ମାଛମାନେ ରକ୍ଷା କରନ୍ତିନାହିଁ, ସାନ ମାଛକୁ ବଡ଼ ମାଛମାନେ ଖାଇ ଯାଆନ୍ତି। ସବଳମାନେ ଦୁର୍ବଳକୁ ରକ୍ଷା କରିବେ ବୋଲି ଅପବିଶ୍ୱାସଟା ହିଁ ପୃଥିବୀରେ ଯାବତୀୟ ପ୍ରକାରର ସାମନ୍ତବାଦ ଏବଂ ରାଜତନ୍ତ୍ରକୁ ଭାରି ପ୍ରୋତ୍ସାହନ ଦେଇ ଆସିଛି। ସବଳ ଉପରେ ଭରସା ରଖି ହିଁ ବିଚରା ଅଳ୍ପବଳ ମଣିଷ ଆପଣା ଭାଗ୍ୟ ବୋଲି ଅସରଣ କ'ଣଟିଏ ଆଦରି ପଡ଼ି ରହିବାର ଭାରି କୁମନ୍ତ୍ରଣା ପାଇ ଆସିଛି। ଦୁର୍ବଳକୁ ରକ୍ଷା କରିବା ଯଦି ପ୍ରକୃତରେ ସବଳର ଧର୍ମ ହୁଏ, ତେବେ ହୁଏତ ଚିରନ୍ତନ କାଳ ନିମନ୍ତେ ଜଗତରେ

ଦୁର୍ବଳମାନେ ଦୁର୍ବଳ ହୋଇ ରହିଥିବେ ଏବଂ ସବଳମାନେ ସେମାନଙ୍କୁ ଅନୁଗ୍ରହ ଦେଖାଇବାରେ ଲାଗିଥିବେ । ମନୁଷ୍ୟକୃତ ଭେଦ ଓ ବ୍ୟବଧାନଗୁଡ଼ିକକୁ ହିଁ ଧର୍ମ ବୋଲି କୁହାଯାଉଥିବ । ପାର୍ଥିବ ସୁଖ, ପାର୍ଥିବ ସ୍ୱାଧୀନତା, ସାହିତ୍ୟ, ବିଚାର ଓ ବିବେକ ସବୁକିଛି ମୁଖ୍ୟତଃ ସବଳ ଓ ବିଶିଷ୍ଟମାନଙ୍କ ଉପରେ ନିର୍ଭର କରି ରହିଥିବ ।

ଗଣତନ୍ତ୍ର ହେଉଛି ଏକ ଅନ୍ୟ ଧର୍ମ, ତେଣୁ ଏକ ଅନ୍ୟ ରାଜନୀତି । ଭାରତବର୍ଷରେ ଗତ ଚାଳିଶି ବର୍ଷ ହେଲା ଦୁର୍ବଳମାନେ ସତେ ଯେପରି ସବଳମାନଙ୍କର ଦୟା ଓ ବଦାନ୍ୟତା ଉପରେ ନିର୍ଭର କରି ରହିଛନ୍ତି । ସୁସ୍ଥମାନେ ଦୁଃସ୍ଥମାନଙ୍କୁ ସାହାଯ୍ୟ କରିବାରେ ଲାଗିଛନ୍ତି । ପ୍ରଧାନତଃ ସବଳମାନେ ହିଁ ରାଷ୍ଟ୍ରକୁ ଚଳାଉଛନ୍ତି, ଆମ ଗାଆଁ ଓ ସହରଗୁଡ଼ିକୁ ଚଳାଉଛନ୍ତି, ଆମ ସାହିତ୍ୟ ଓ ସମ୍ଭ୍ରମଗୁଡ଼ିକ ଉପରେ ମାମଲତକାର ହୋଇ ବସିଛନ୍ତି, ଆମ ଶିକ୍ଷାଳୟଗୁଡ଼ାକ ସେହିମାନଙ୍କ ବରାଦରେ ସେହିମାନଙ୍କର ଉଆସରୁ ଆସୁଥିବା ନିର୍ଦ୍ଦେଶ ଅନୁସାରେ ଚଳୁଛି । ଅନୁଗ୍ରହ କରି ପଛୁଆମାନଙ୍କୁ ମେଞ୍ଚାଏ ଲେଖାଏଁ ଅନୁଗ୍ରହ ଫିଙ୍ଗାଯାଉଛି ଓ ଏଣେ ସେମାନେ ଯେପରି ସବୁଦିନେ ପଛୁଆ ହୋଇ ରହିଥିବେ ଏବଂ ଅନୁଗ୍ରହ ଉପରେ ନିର୍ଭର କରି କାକୁସ୍ଥ କରରେ ପ୍ରାର୍ଥନା କରୁଥିବେ, ତାହାର ସୁବ୍ୟବସ୍ଥା ବି କରାଯାଉଛି ।

ଏପରି ଏକ ସମାଜ ଲାଗି ମୂଳଦୁଆ ପକାଯାଉ, ଯେଉଁଥିରେ ମଣିଷ ମାତ୍ରକେ କେହି ଦୁର୍ବଳ ଓ ଦୁଃସ୍ଥ ହୋଇ ରହିବେ ନାହିଁ । ତେଣୁ ଉପରେ ଦୟାବାନ ଦୁର୍ଦ୍ଦଣ୍ଡମାନଙ୍କର ବି ଆଉ କୌଣସି ଆବଶ୍ୟକତା ରହିବ ନାହିଁ । ଶାସନ ତଳୁ ଚାଲିବ, ତଳୁ ପରାମର୍ଶ ଓ ନେତୃତ୍ୱ ଅନୁସାରେ ଉପରେ ରାଷ୍ଟ୍ର ଚାଲିବ । ସବୁ ପିଲା ଏକ ପ୍ରକାରର ପାଠ ପଢ଼ିବେ । ପୁଳାଏ ଉଆସ ପାଇଁ ଯୋଗ୍ୟ ହେବେ ନାହିଁ ଓ କୋଟି କୋଟି ଅନ୍ୟମାନେ ନାନା ଭାବେ ବଞ୍ଚିତ କରି ରଖିବାର ଉପେକ୍ଷା ଲାଗି ମଣ ହେବେ ନାହିଁ । ସେହି ଅନୁସାରେ ଜମିଜମାର ବ୍ୟବସ୍ଥା ମଧ୍ୟ ବଦଳିଯିବ । ସହରକୁ ଯାଇ ସାହେବ ହେବାକୁ ମନ କରୁଥିବା ମଣିଷମାନଙ୍କ ଗୋଦର ଗୋଡ଼ଟା ତଥାପି ଗାଆଁ ଉପରେ ଲଦି ହୋଇ ରହିବାର ପ୍ରଶ୍ରୟ ପାଇବ ନାହିଁ । ପ୍ରଶାସନର ଢ଼ଙ୍ଗ ଏପରି ବଦଳି ଯିବ ଯେ ଅଧିକସଂଖ୍ୟକ ମଣିଷ ସରକାରୀ ଚାକିରିଟାଏ ପାଇବାକୁ ହିଁ ଆପଣା ଜୀବନର ସର୍ବୋଚ୍ଚ ଉଦ୍ୟମ ବୋଲି କଦାପି ଗ୍ରହଣ କରିବେ ନାହିଁ । ପରିଶ୍ରମୀମାନଙ୍କ ଉପରେ ସାମନ୍ତ ବୋଲାଇ ବସିବାକୁ ଏହି ଦେଶରେ ନିଷିଦ୍ଧ ହୋଇ ରହିବ । ଶାସକମାନେ ଅଧିକ ଭଦ୍ର ହେବେ, ସେମାନେ ଆପଣାର ସିଂହାସନଗୁଡ଼ାକ ଅପେକ୍ଷା ଏହି ଦେଶର ମଣିଷମାନଙ୍କ ଉପରେ ହିଁ ଅଧିକ ନିର୍ଭରଶୀଳ ହୋଇ ରହିବେ ।

ଭାରତବର୍ଷ କାଗଜପତ୍ରରେ ଗଣତନ୍ତ୍ରକୁ ମାନି ନେଇଥିଲେ ମଧ୍ୟ ଦେଶର ଚତୁର ଓ ଦୁର୍ଦ୍ଦଣ୍ଡମାନେ ଏବେ ମଧ୍ୟ ତାହାକୁ ସେହି କାଗଜପତ୍ରରେ ସୀମାବଦ୍ଧ କରି ରଖିଛନ୍ତି ଓ

ଉପରର, ସବଳର ଅନୁଗ୍ରହରେ ତଳର ଓ ଦୁର୍ବଳର ଦୁଃଖ ଦୂର ହେବ ବୋଲି ଏକ ଭ୍ରମ ଦ୍ୱାରା ଦେଶଟାକୁ ଘାରି ରଖିଛନ୍ତି । ପୂରା ସମାଜଟା ସାମନ୍ତବାଦୀ ବହିଗୁଡ଼ାକ ଅନୁସାରେ ଚାଲିଛି । ଯାବତୀୟ ଶିକ୍ଷା ଓ ଅର୍ଥନୀତିର ବ୍ୟବସ୍ଥା ମଧ୍ୟ ସାମନ୍ତବାଦୀ ସାହେବମାନଙ୍କ ଦ୍ୱାରା ଚାଲିଛି । ଅସଲ ମୁହୂର୍ତ୍ତଟି ଏକ ଅନ୍ୟ ଭଳି ନେତୃତ୍ୱ ନିମନ୍ତେ ଅପେକ୍ଷା କରି ରହିଛି । ସେହି ଅପେକ୍ଷା କେତେଦିନ ଯାଏ କରିବାକୁ ପଡ଼ିବ, ତାହା ସବଳମାନଙ୍କର ବଦାନ୍ୟତା ଉପରେ ନିର୍ଭର କରୁନାହିଁ । ଭଗବାନଙ୍କ ଉପରେ ମଧ୍ୟ ନିର୍ଭର କରୁନାହିଁ, ତାହା ଭାରତବାସୀଙ୍କର ଅଭିଳାଷ ଉପରେ ନିର୍ଭର କରୁଛି ।

୨୨/୧୨/୯୦

## ପରିଶିଷ୍ଟ

# ସ୍ୱାଧୀନ ମନୁଷ୍ୟମାନେ କାହାନ୍ତି ?

ଖବରକାଗଜରେ ଯେତେ ମଣିଷଙ୍କର ନାଆଁ ବାହାରୁଛି, ଏମାନେ ସମସ୍ତେ କ୍ଷମତାର ମଣିଷ, କେହି ଜଣେହେଲେ ସ୍ୱାଧୀନ ମନୁଷ୍ୟ ନୁହନ୍ତି । ବଜାରରେ ଆମକୁ ଯେତେ ଯେତେ ମଣିଷଙ୍କର ଫଟୋଗୁଡ଼ାକ ଦେଖିବାକୁ ମିଳୁଛି, ଏମାନେ ସମସ୍ତେ ନାଟୁଆ, ସମସ୍ତେ ଅଭିନୟକାରୀ, ସମସ୍ତେ ନେତା, କେହି ଜଣେ ହେଲେ ଆପଣାର ମଣିଷ ନୁହନ୍ତି । ଆମ ଘରେ ଓ ଆମ ଆଗ୍ରହଗୁଡ଼ାକ ଭିତରେ ସ୍ୱାଧୀନ ମଣିଷର ଅସଲ ଭାବଟି ଯେତିକି ଯେତିକି ଅଧିକ ପୋଖତ ହୋଇଥାନ୍ତା, ନାଟଗୁଡ଼ାକ ଓ ଅଭିନୟଗୁଡ଼ାକ ଆମକୁ ସେତିକି ଭେରେଷା ବୋଲି ଲାଗିଥାନ୍ତା, ଅନାବଶ୍ୟକ ବୋଲି ମନେ ହୋଇଥାନ୍ତା । ମାତ୍ର, ଆମର ହୃଦୟ ଭିତରେ ଏଠି ଦେଶଟାଯାକ କୋଉଠି କ'ଣ ଅନ୍ୟ ଦମ୍ଭ ଆସି ପଶିଗଲା କେଜାଣି, ଏଠି କେତେଟାବର୍ଷ ଭିତରେ ଆମେ ସମସ୍ତେ ଭାରି ଚାଲାଖ ହୋଇଗଲୁ, ଭାରି ଧୂର୍ତ୍ତ ହୋଇ ଗଲୁ, ଭାରି ନିର୍ଲଜ୍ଜ ବି ହୋଇଗଲୁ ।

ବାହାରେ ଆମେ ଯେତିକି ଚାଲାଖ ହେଲୁ, ଆମ ଭିତରେ ଭୟଗୁଡ଼ାକ ସେତିକି ବେଶୀ ମଜବୁତ ହୋଇ ରହିଲା । ଏହି ଭୟଗୁଡ଼ାକ ହିଁ ଆମ ଆଦର୍ଶଗୁଡ଼ାକର ଗୋଡ଼ ଆଉ ହାତ ହୋଇ ରହିଲା, ଅବିଶ୍ୱାସ ଗୁଡ଼ାକ ହିଁ ଆମର ଠାକୁର ହୋଇ ରହିଲେ । ଆମେ ଯୁଆଡ଼କୁ ଅନାଇଲ. ସେଠାରେ କେବଳ ନିଜର କ୍ଷୁଦ୍ରତାଗୁଡ଼ିକୁ ଦେଖିଲୁ, କେବଳ ସ୍ୱାର୍ଥଗୁଡ଼ାକୁ ଦେଖିଲୁ । ତେଣୁ ଆମେ ବାହାରେ ଯେତେ ପ୍ରକାରର ଭେକ କିମ୍ବା ଯେତେ ପ୍ରକାରର ମୁକୁଟ ପିନ୍ଧିଥିଲେ ମଧ୍ୟ ଭିତରେ କେବଳ ହିଂସ୍ର ହୋଇ ରହିଲୁ । ହିଂସ୍ର ମଣିଷ କେବଳ ଆପଣାର ଶିଙ୍ଗଗୁଡ଼ାକୁ ହିଁ ଦେଖେ, – ଆପଣା ଭିତରେ ମଧ୍ୟ ସିଏ କେଉଁଠି ହେଲେ

କୌଣସି ବନ୍ଧୁର ଦର୍ଶନ କରି ପାରେନାହିଁ । ବାହାରେ ସିଏ କେଡ଼େ ବଡ଼ ହୋଇ ଦିଶୁଥାଏ, କେତେ କେତେ ଅସ୍ତ୍ରଶସ୍ତ୍ର ଦ୍ୱାରା ସଜ୍ଜିତ ହୋଇ କେଡ଼େ ଉତ୍ତେଜିତ ହୋଇ ଦିଶୁଥାଏ, – ଏବଂ ଏହି ସବୁଗୁଡ଼ାକୁ ନେଇ କେଡ଼େ ହାସ୍ୟାସ୍ପଦ ହୋଇ ଦିଶୁଥାଏ, କେଡ଼େ ଅମଣିଷ ହୋଇ ରହିଥାଏ ।

ଏଡ଼େବଡ଼ ଗୋଟାଏ ଦେଶରେ ସ୍ୱାଧୀନ ମଣିଷମାନେ କାହାନ୍ତି ? ବିଶ୍ୱବିଦ୍ୟାଳୟରେ ସ୍ୱାଧୀନ ଅଧ୍ୟାପକ ଓ ସ୍ୱାଧୀନ ଛାତ୍ରମାନେ କାହାନ୍ତି ? ରାଜଧାନୀଗୁଡ଼ାକରେ ସ୍ୱାଧୀନ ସହଯୋଗୀମାନେ କାହାନ୍ତି ? ଆମର ବାଟଗୁଡ଼ାକରେ ସ୍ୱାଧୀନ ପଥିକମାନେ କାହାନ୍ତି ? ସମ୍ବାଦ ପରେ ସମ୍ବାଦ ଯୋଗାଇଦେଇ ଆମ ଯାବତୀୟ ବିବେକର ଦ୍ୱାରଗୁଡ଼ାକୁ କେବଳ ନାନା ଅବିଶ୍ୱାସ ଦ୍ୱାରା ଭର୍ତ୍ତି କରି ରଖିଥିବା ଏହି ମର୍ତ୍ତ୍ୟ – ମଣ୍ଡଳୀଗୁଡ଼ାକ ଭିତରେ ସ୍ୱାଧୀନ ସାମ୍ବାଦିକମାନେ କାହାନ୍ତି ? ଆମ ସ୍ୱାଧୀନ ସାହିତ୍ୟିକମାନେ କାହାନ୍ତି, ସ୍ୱାଧୀନ କଳାକାରମାନେ କାହାନ୍ତି ? ଆମ ସ୍ୱାଧୀନ ଦେଶରେ ଯେତେ ପଣ୍ଡିତ ଓ ଯେତେ ଯେତେ ବିଜ୍ଞ, ଯେତେଯେତେ ଧର୍ମସ୍ଥ ଓ ଯେତେଯେତେ ଗୁରୁ, – ଏମାନେ ସମସ୍ତେ ଏପରି ଗୋଟିଏ ଗୋଟିଏ ପୋଷା ଛେଳି ପରି ଦେଖା ଯାଉଛନ୍ତି କାହିଁକି, ନିଶକୁ ଫୁଲାଇ ପୁଚ୍ଛକୁ ମେଲାଇ ସେମାନେ ଏପରି ପୁଲକିତ ଚିତ୍ତରେ ଗୋଲାମୀ ଖଟୁଛନ୍ତି କାହିଁକି ? ଏବଂ, ଏହି ଗୋଲାମୀ ଖଟିବାକୁ ହିଁ ଏମାନେ ସମସ୍ତେ ଏଯୁଗର ସବୁଠାରୁ ବଡ଼ ଚତୁରପଣିଆ ବୋଲି ଗ୍ରହଣ କରି ନେଇଛନ୍ତି କିପରି ?

ଆଗେ ଯେତେ କୋଠାଘର ଆମ ଦେଶରେ ଥିଲା, ବର୍ତ୍ତମାନ ତା'ର ହଜାର ଗୁଣ ଅଧିକ କୋଠାଘର ରହିଛି । ଆଗେ ଆମ ଦେଶରେ ଯେତେ ବହି ଥିଲା, ବର୍ତ୍ତମାନ ତା'ର ଦଶ ହଜାର ଗୁଣ ଅଧିକ ବହି ଛାପାହୋଇ ବିକା ହେଲାଣି । ଗୁରୁମାନଙ୍କର ସଂଖ୍ୟା ଚକୁଳିଆ ପଣ୍ଡାମାନଙ୍କର ସଂଖ୍ୟାକୁ ବଳି ପଡ଼ିଲାଣି । ସାନଠାରୁ ବଡ଼ଯାଏ ସମସ୍ତେ ବାବୁ ପରି ଦିଶିଲେଣି, ଖବରକାଗଜମାନଙ୍କରେ ସାନସାନ ମଣିଷମାନଙ୍କର ଫଟୋଗୁଡ଼ାକ କେଡ଼େ ବଡ଼ ବଡ଼ ହୋଇ ବାହାରି ପାରିଲାଣି । କିନ୍ତୁ ସ୍ୱାଧୀନ ମଣିଷମାନେ ଗଲେ କୁଆଡ଼େ ? ଭୟମୁକ୍ତ ମଣିଷମାନେ ଗଲେ କୁଆଡ଼େ ? ଯେଉଁମାନଙ୍କୁ ଛାତି ଦମ୍ଭ କରି ଆପଣାର ବନ୍ଧୁ ବୋଲି କହିହୁଅନ୍ତା, ସେମାନେ ସମସ୍ତେ ଗଲେ କୁଆଡ଼େ ? ଆମର ସଂସ୍କୃତିଗୁଡ଼ାକ ଆମର ଜୀବନଠାରୁ ଦୂରଛଡ଼ା ହୋଇଯାଇ ମୂଳତଃ ଏକ ବାଚାଳତାରେ ପରିଣତ ହୋଇଗଲା କିପରି, ଆମର ଅନ୍ତର୍ଗତ ସାଧୁତାଗୁଡ଼ାକ ବାହାରର ଏହି ମଣ୍ଡପଗୁଡ଼ାକରେ ଖାଲି ବାହାଦୁରୀରେ ପରିଣତ ହୋଇଗଲା କିପରି ? ଆମର ଶିକ୍ଷା ଆମକୁ ଏପରି ଫମ୍ପା ତଥାପି ଏପରି ଆତ୍ମପରିତୁଷ୍ଟ କରିଦେଇ ପାରିଲା କିପରି ?

ସର୍ବୋପରି ଆମର ରାଜନୀତିଟା ବି ଏପରି ଏକ ମାମଲତକାରିଆ ଅସାମର୍ଥକତାରେ ପରିଣତ ହୋଇଗଲା କାହିଁକି ?

ସ୍ୱାଧୀନ ଦେଶର ରାଜନୀତି ମଣିଷର ହିଁ ରାଜନୀତି ହୋଇପାରିଥାନ୍ତା । ରାଜନୀତିର ଅସଲ ଚେରଗୁଡ଼ାକ ସର୍ବଜନର ଜୀବନଭୂମିଟିକୁ ସ୍ପର୍ଶ କରି ରହି ପାରିଥାନ୍ତା । ଆମ ରାଜନୀତିରେ ବୀରପଣିଆ ଥାଆନ୍ତା, ଯଥାର୍ଥ ସ୍ୱପ୍ନଗୁଡ଼ିକ ଦେଖି ପାରିବାର ସାହସ ଥାଆନ୍ତା, ଯଥାର୍ଥ ଭବିଷ୍ୟଗୁଡ଼ିକୁ ଅନୁଭବ କରିବାର ଶ୍ରଦ୍ଧା ବି ରହିଥାନ୍ତା । ମାତ୍ର ଯେଉଁମାନେ ରାଜନୀତିକୁ କ୍ରମଶଃ ଏକ ଧନ୍ଦାରେ ପରିଣତ କରି ରଖିଲେ, ସେମାନେ ଆମ ସାମୂହିକ ଜୀବନର ଅସଲ ଚେର ଅର୍ଥାତ୍ ଅସଲ ଅନୁରାଗଗୁଡ଼ାକୁ ଆସ୍ୱୀକାର କରି ପକାଇଲେ କିପରି ?

ସ୍ୱାଧୀନତା କହିଲେ ଆମେ ଯେଉଁମାନେ ଏହି ଗଣ୍ଠି କାଟିବା ଓ ମୁଣି କାଟିବା ତାମସାଗୁଡ଼ାକୁ ଆଦୌ ନଦେଖି ତାହାକୁ ମୂଳତଃ ଏକ ସଂଗ୍ରାମ ବୋଲି ବୁଝୁଥିବା, ସ୍ୱାଧୀନତା କହିଲେ ଆମେ ଯେଉଁମାନେ ପ୍ରଧାନତଃ ସ୍ୱାଧୀନ ମଣିଷ ଲାଗି ଏକ ଅନୁକୂଳ ପରିବେଶ ସୃଷ୍ଟି କରିବାର ଅଭିଳାଷ ରଖିଥିବା, ଏକ ପାରସ୍ପରିକତାକୁ ବୁଝୁଥିବା, ସମସ୍ତ ପ୍ରକାରର ଆତସବାଜି ସତ୍ତ୍ୱେ ଆମେ ତଥାପି ବ୍ରତଚ୍ୟୁତ ହେବା ନାହିଁ । ତଥାପି ମୋହଗୁଡ଼ାକୁ ମୋହ ବୋଲି କହିବା, ନିଦ୍ରାଳୁତାକୁ ନିଦ୍ରାଳୁତା ବୋଲି କହିବା, ଅସୁନ୍ଦରତା ଗୁଡ଼ାକୁ ଅସୁନ୍ଦରତା ବୋଲି ହିଁ କହିବା । ଦୁର୍ଗତିଗୁଡ଼ାକୁ ଦୁର୍ଗତି ବୋଲି କହିବା । ଠକମାନଙ୍କୁ ଠକ ବୋଲି କହିବା, ବର୍ବରମାନଙ୍କୁ ବର୍ବର ବୋଲି କହିବା, ପଶୁମାନଙ୍କୁ ପଶୁ ବୋଲି କହିବା । ଏହି ପଶୁମାନେ ସାହିତ୍ୟରେ ଅଛନ୍ତି, ଆମ ସଂସ୍କୃତିର ଦାଣ୍ଡଗୁଡ଼ାକୁ ଏହିମାନେ ହିଁ ଅଯୋଗ୍ୟ ଓ ଅମଙ୍ଗଳ କରି ରଖିଛନ୍ତି । ଏହି ପଶୁମାନେ ଆମ ଇସ୍କୁଲ ଓ କଲେଜ ମାନଙ୍କରେ ଅଛନ୍ତି, ଆମ ଖବରକାଗଜ ଗୁଡ଼ାକ ବାହାରୁଥିବା ସିରସ୍ତାମାନଙ୍କରେ ବି ଅଛନ୍ତି । ଏମାନେ ଆମ ସଭାଗୁଡ଼ାକରେ ନିତି ଭୁକିବାରେ ଲାଗିଛନ୍ତି । ଏମାନେ ବାହାରକୁ ବ୍ରାହ୍ମଣ ପରି ଦିଶୁଛନ୍ତି, ମାତ୍ର ଭିତରେ ଶହେଟା ଆଁ ବିସ୍ତାର କରି ଆମକୁ ଗିଳି ପକାଇବାକୁ ବାହାରିଛନ୍ତି । ରଥ ଉପରେ ନିଜକୁ ହିଁ ସୁବେଶ କରି ଥାପି ଆମ ଠାକୁରମାନଙ୍କୁ ଗିଳି ପକାଇବାରେ ଲାଗିଛନ୍ତି । ତେଣୁ ଆମ ରାଜନୀତିଟା ମଧ୍ୟ ପ୍ରଧାନତଃ ପଶୁ-ଅଧ୍ୟୁଷିତ ଗୋଟାଏ ଜଙ୍ଗଲରେ ପରିଣତ ହୋଇ ରହିଛି । ସେହି ରାଜନୀତି ମଣିଷମାନଙ୍କ ପାଇଁ ଚାଲୁନାହିଁ । ମଣିଷମାନେ ହିଁ ସେହି ରାଜନୀତି ଲାଗି ଚାଲୁଛନ୍ତି ।

ଇଏ ବି ଯିବ, ଏଗୁଡ଼ାକ ବି ବଦଳିଯିବ । ନୂଆ ମଦ୍ୟର ଉତ୍ତେଜନା ଭାଙ୍ଗିଗଲେ ପୁରୁଣା ମଦଭାଣ୍ଡଗୁଡ଼ାକ ପୁଣି ଆଗପରି ରାସ୍ତା କଡ଼ରେ ଗଡ଼ଗଡ଼ାଇବାର ନିତ୍ୟଦଶା ଲାଭ

କରିବେ । ଏଗୁଡ଼ାକ କିଛି ରହିବ ନାହିଁ । କିନ୍ତୁ ସ୍ୱପ୍ନମାନେ ରହିଥିବେ, ସଙ୍କଳ୍ପମାନେ ରହିଥିବେ, ଏବଂ ଯେଉଁମାନେ ସେହି ସ୍ୱପ୍ନଗୁଡ଼ିକୁ ଚିହ୍ନି ସେହି ସଙ୍କଳ୍ପଗୁଡ଼ିକୁ ଆଦରି ନେଇ ପାରୁଥିବେ, ସେମାନେ ତରୁଣ ହୋଇ ରହିଥିବେ । ସେମାନଙ୍କର ସଂଗ୍ରାମ କେବେହେଲେ ସରି ଯିବନାହିଁ । ସଂଗ୍ରାମଟାଏ ସାରି ସେମାନେ ସଂଗ୍ରାମର ଫଳକୁ ଭୋଗ କରିବା ସକାଶେ କେବେହେଲେ ମନ କରିବେ ନାହିଁ । ଗୋଟିଏ ସଂଗ୍ରାମର ବିଜୟକୁ ସେମାନେ ପରବର୍ତ୍ତୀ ସଂଗ୍ରାମର ମୂଳଦୁଆ ଓ ମୂଳପୁଞ୍ଜି ରୂପେ ବ୍ୟବହାର କରୁଥିବେ । ସେମାନଙ୍କର ବୃତ୍ତ ବଢ଼ି ବଢ଼ି ଚାଲିଥିବ, କାରଣ ସେମାନଙ୍କର ଶ୍ରଦ୍ଧାର ବୃତ୍ତଟି ବି ବଢ଼ି ବଢ଼ି ଚାଲିଥିବ । ସେମାନେ ଜାତୀୟତାକୁ କଦାପି ଗୋଟିଏ ଠାକୁରରେ ପରିଣତ କରି ପକାଇବେ ନାହିଁ ।

୨୬/୦୧/୮୦